# ଜୀବନଚର୍ଯ୍ୟା


| | |
|---|---|
| କପିରାଇଟ | ପ୍ରଗତିବାଦୀ ପବ୍ଲିକେସନ୍ସ |
| ପ୍ରକାଶକ | ପ୍ରଦ୍ୟୁମ୍ନ ବଳ ମେମୋରିଆଲ ଟ୍ରଷ୍ଟ |
| | ୧୩, ଏକାମ୍ର ବିହାର, ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୫ |
| ପ୍ରଥମ ପ୍ରକାଶନ : | ନଭେମ୍ବର ୨୦୦୧ |
| ମୁଦ୍ରଣ | ଓରିପ୍ରିଣ୍ଟ ପ୍ରାଇଭେଟ ଲିମିଟେଡ୍ |
| | ୧୭୮-ବି, ମଞ୍ଚେଶ୍ୱର ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍, ଭୁବନେଶ୍ୱର-୧୦ |
| ମୂଲ୍ୟ | ଟ.୭୫/- (ପଞ୍ଚସ୍ତରୀ ଟଙ୍କା ମାତ୍ର) |


Digitized by srujanika@gmail.com

# ମୁଖବନ୍ଧ

ଓଡ଼ିଶାରେ ସାହିତ୍ୟ ସହିତ ସାମ୍ବାଦିକତାର ଏକ ପ୍ରକାର ରକ୍ତର ସମ୍ପର୍କ । 'ସମାଜ', 'ପ୍ରଜାତନ୍ତ୍ର' ଓ 'ମାତୃଭୂମି'ର ପ୍ରତିଷ୍ଠାତା ଯଥାକ୍ରମେ ଗୋପବନ୍ଧୁ ଦାସ, ଡକ୍ଟର ହରେକୃଷ୍ଣ ମହତାବ ଏବଂ ବାଳକୃଷ୍ଣ କର ପ୍ରଥମେ ଥିଲେ ଜଣେ ଜଣେ ସାହିତ୍ୟିକ । ଏହି ସାହିତ୍ୟିକ ପ୍ରେରଣା ହିଁ ପରେ ସେମାନଙ୍କୁ ସମ୍ବାଦପତ୍ର ପ୍ରକାଶ କରିବା ଲାଗି ଉତ୍ସାହିତ କରିଥିଲା । 'ପ୍ରଗତିବାଦୀ'ର ପ୍ରାଣପ୍ରତିଷ୍ଠାତା ପ୍ରଦ୍ୟୁମ୍ନ ବଳ ଜନ୍ମ ସ୍ୱତ୍ତ୍ୱରେ ପଲ୍ଲୀକବି ନନ୍ଦ କିଶୋରଙ୍କ ନାତି ଭାବରେ ଏହି ସାହିତ୍ୟିକ ପ୍ରତିଭାର ଅଧିକାରୀ ଥିଲେ । କେବଳ ଅଳ୍ପ କେତେକ ଗଳ୍ପ, କବିତାରେ ନୁହେଁ, 'ପ୍ରଗତିବାଦୀ' ପୃଷ୍ଠାରେ ପ୍ରକାଶିତ ତାଙ୍କର ଅଜସ୍ର ରଚନାରେ ତାଙ୍କର ସେହି ସାହିତ୍ୟିକ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ଉତ୍କୀର୍ଣ୍ଣ ହୋଇଥିଲା ।

ତାଙ୍କ ପ୍ରବନ୍ଧ, ନିବନ୍ଧ ଏବଂ ସଂକ୍ଷିପ୍ତ ଗଦ୍ୟ ରଚନାର ପ୍ରଧାନ ଆକର୍ଷଣ ହେଲା ସାହିତ୍ୟ-ପ୍ରସାଦଗୁଣଯୁକ୍ତ ଅକୃତ୍ରିମ ଭାଷା । ଭାଷା ଗୋଟିଏ ଅର୍ଥରେ ଶବ୍ଦ- ସମଷ୍ଟିକୁ ହିଁ ବୁଝାଯାଏ । କିନ୍ତୁ ଶବ୍ଦକୁ ସଜୀବ କରି ତହିଁରେ ଭାବ- ସଂଚାର କରିବାକୁ ହେଲେ ସଠିକ୍ ଶବ୍ଦ ଚୟନ, ପ୍ରକରଣ ଓ ପ୍ରୟୋଗ ପ୍ରୟୋଜନ ହୁଏ । ନିଜର ଭାବ ଓ ଭାବନାକୁ ସିଧାସଳଖ ପାଠକମାନଙ୍କ ପାଖରେ ପହଞ୍ଚାଇ ଦେବା ଲାଗି ଅବ୍ୟର୍ଥ ଶବ୍ଦ ପ୍ରୟୋଗରେ ପ୍ରଦ୍ୟୁମ୍ନ ବାବୁ ଥିଲେ ଜଣେ ସବ୍ୟସାଚୀ ପୁରୁଷ । କୌଣସି ନୂତନ ଚିନ୍ତା ବା ଭାବନାକୁ ବ୍ୟକ୍ତ କରିବା ପାଇଁ ଅନ୍ୟମାନେ ଇଂରେଜୀ ଶବ୍ଦର ହିନ୍ଦି ଅଥବା ବଙ୍ଗଳା ପ୍ରତିଶବ୍ଦର ଆଶ୍ରୟ ନେଉଥିବାବେଳେ ସେ ନିଜେ ତାର ବିକଳ୍ପ ଶବ୍ଦ ତିଆରି କରି ନେଉଥିଲେ ।

କେବଳ ଶବ୍ଦ- ନିର୍ମାଣର ଅପୂର୍ବ କାରିଗରୀ ଦକ୍ଷତା ଯୋଗୁ ନୁହେଁ, ନିଜ ଚିନ୍ତା ଓ ଚେତନାର ଆଧୁନିକତା ଯୋଗୁ ସେ ଜଣେ ପ୍ରଗତିଶୀଳ ସମ୍ପାଦକ ଭାବରେ ସମ୍ମାନିତ ହେଉଥିଲେ । ଜୀବନ ଓ ଜଗତ ପ୍ରତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ତାଙ୍କ ଭାବ ଓ ଭାବନାକୁ ପ୍ରଭାବିତ କରିଥିଲା । ମୋର ମନେ ଅଛି, ଦଶବର୍ଷ ତଳେ ସେ ମତେ 'ପ୍ରଗତିବାଦୀ' ରବିବାର ପୃଷ୍ଠାରେ ଏକ ସାପ୍ତାହିକ ସ୍ତମ୍ଭ ରଚନା ଲାଗି ପ୍ରବର୍ତ୍ତାଇବାକୁ ଆମ ଘରକୁ ଆସିଥିଲେ । କଥା ପ୍ରସଙ୍ଗରେ କହିଥିଲେ- 'ପ୍ରଗତିବାଦୀ' ଏକ ନିର୍ଭୀକ ଓ ନିରପେକ୍ଷ ଓଡ଼ିଆ ଖବର କାଗଜ ଭାବରେ ପାଠକମାନଙ୍କ ମନରେ ପ୍ରତ୍ୟୟ ସୃଷ୍ଟି କରିଛି । କିନ୍ତୁ ପ୍ରଗତିଶୀଳ ଦୈନିକୀ ହୋଇପାରି ନାହିଁ । ପ୍ରଗତିଶୀଳ ଭାବନାକୁ ବାଦ୍ ଦେଇ ନିରପେକ୍ଷତାର କିଛି ଅର୍ଥ ହୁଏ ନାହିଁ ।

ସାମାଜିକ ଓ ଅର୍ଥନୈତିକ ସ୍ଥିତାବସ୍ଥା ବଜାୟ ରଖିବା ହେଉଛି ରକ୍ଷଣଶୀଳତା । ପ୍ରଗତି ବା ପ୍ରୋଗ୍ରେସ୍ ହେଉଛି ଆଧୁନିକତା । ନିରପେକ୍ଷତା ଅର୍ଥ କୌଣସି ପକ୍ଷ ନନେବା ନୁହେଁ; ବରଂ ସାମାଜିକ

Digitized by srujanika@gmail.com

# ଜୀବନଚର୍ଯ୍ୟା

କପିରାଇଟ	ପ୍ରଗତିବାଦୀ ପବ୍ଲିକେସନ୍ସ
ପ୍ରକାଶକ	ପ୍ରଦ୍ୟୁମ୍ନ ବଳ ମେମୋରିଆଲ ଟ୍ରଷ୍ଟ
୧୩, ଏକାମ୍ର ବିହାର, ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୫
ପ୍ରଥମ ପ୍ରକାଶନ :	ନଭେମ୍ବର ୨୦୦୧
ମୁଦ୍ରଣ	ଓରିପ୍ରିଣ୍ଟ ପ୍ରାଇଭେଟ ଲିମିଟେଡ୍
୧୭୮-ବି, ମଞ୍ଚେଶ୍ୱର ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍, ଭୁବନେଶ୍ୱର-୧୦
ମୂଲ୍ୟ	ଟ.୭୫/- (ପଞ୍ଚସ୍ତରୀ ଟଙ୍କା ମାତ୍ର)

Digitized by srujanika@gmail.com

# ମୁଖବନ୍ଧ

ଓଡ଼ିଶାରେ ସାହିତ୍ୟ ସହିତ ସାମ୍ବାଦିକତାର ଏକ ପ୍ରକାର ରକ୍ତର ସମ୍ପର୍କ । 'ସମାଜ', 'ପ୍ରଜାତନ୍ତ୍ର' ଓ 'ମାତୃଭୂମି'ର ପ୍ରତିଷ୍ଠାତା ଯଥାକ୍ରମେ ଗୋପବନ୍ଧୁ ଦାସ, ଡକ୍ଟର ହରେକୃଷ୍ଣ ମହତାବ ଏବଂ ବାଳକୃଷ୍ଣ କର ପ୍ରଥମେ ଥିଲେ ଜଣେ ଜଣେ ସାହିତ୍ୟିକ । ଏହି ସାହିତ୍ୟିକ ପ୍ରେରଣା ହିଁ ପରେ ସେମାନଙ୍କୁ ସମ୍ବାଦପତ୍ର ପ୍ରକାଶ କରିବା ଲାଗି ଉତ୍ସାହିତ କରିଥିଲା । 'ପ୍ରଗତିବାଦୀ'ର ପ୍ରାଣପ୍ରତିଷ୍ଠାତା ପ୍ରଦ୍ୟୁମ୍ନ ବଳ ଜନ୍ମ ସୂତ୍ରରେ ପଲ୍ଲୀକବି ନନ୍ଦ କିଶୋରଙ୍କ ନାତି ଭାବରେ ଏହି ସାହିତ୍ୟିକ ପ୍ରତିଭାର ଅଧିକାରୀ ଥିଲେ । କେବଳ ଅଳ୍ପ କେତେକ ଗଳ୍ପ, କବିତାରେ ନୁହେଁ, 'ପ୍ରଗତିବାଦୀ' ପୃଷ୍ଠାରେ ପ୍ରକାଶିତ ତାଙ୍କର ଅଜସ୍ର ରଚନାରେ ତାଙ୍କର ସେହି ସାହିତ୍ୟିକ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ଉତ୍‌କୀର୍ଣ୍ଣ ହୋଇଥିଲା ।

ତାଙ୍କ ପ୍ରବନ୍ଧ, ନିବନ୍ଧ ଏବଂ ସଂକ୍ଷିପ୍ତ ଗଦ୍ୟ ରଚନାର ପ୍ରଧାନ ଆକର୍ଷଣ ହେଲା ସାହିତ୍ୟ-ପ୍ରସାଦଗୁଣଯୁକ୍ତ ଅକୃତ୍ରିମ ଭାଷା । ଭାଷା ଗୋଟିଏ ଅର୍ଥରେ ଶବ୍ଦ- ସମଷ୍ଟିକୁ ହିଁ ବୁଝାଯାଏ । କିନ୍ତୁ ଶବ୍ଦକୁ ସଜୀବ କରି ତହିଁରେ ଭାବ- ସଂଚାର କରିବାକୁ ହେଲେ ସଠିକ୍ ଶବ୍ଦ ଚୟନ, ପ୍ରକରଣ ଓ ପ୍ରୟୋଗ ପ୍ରୟୋଜନ ହୁଏ । ନିଜର ଭାବ ଓ ଭାବନାକୁ ସିଧାସଳଖ ପାଠକମାନଙ୍କ ପାଖରେ ପହଞ୍ଚାଇ ଦେବା ଲାଗି ଅବ୍ୟର୍ଥ ଶବ୍ଦ ପ୍ରୟୋଗରେ ପ୍ରଦ୍ୟୁମ୍ନ ବାବୁ ଥିଲେ ଜଣେ ସବ୍ୟସାଚୀ ପୁରୁଷ । କୌଣସି ନୂତନ ଚିନ୍ତା ବା ଭାବନାକୁ ବ୍ୟକ୍ତ କରିବା ପାଇଁ ଅନ୍ୟମାନେ ଇଂରେଜୀ ଶବ୍ଦର ହିନ୍ଦି ଅଥବା ବଙ୍ଗଳା ପ୍ରତିଶବ୍ଦର ଆଶ୍ରୟ ନେଉଥିବାବେଳେ ସେ ନିଜେ ତାର ବିକଳ୍ପ ଶବ୍ଦ ତିଆରି କରି ନେଉଥିଲେ ।

କେବଳ ଶବ୍ଦ- ନିର୍ମାଣର ଅପୂର୍ବ କାରିଗରୀ ଦକ୍ଷତା ଯୋଗୁ ନୁହେଁ, ନିଜ ଚିନ୍ତା ଓ ଚେତନାର ଆଧୁନିକତା ଯୋଗୁ ସେ ଜଣେ ପ୍ରଗତିଶୀଳ ସମ୍ପାଦକ ଭାବରେ ସମ୍ମାନିତ ହେଉଥିଲେ । ଜୀବନ ଓ ଜଗତ ପ୍ରତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ତାଙ୍କ ଭାବ ଓ ଭାବନାକୁ ପ୍ରଭାବିତ କରିଥିଲା । ମୋର ମନେ ଅଛି, ଦଶବର୍ଷ ତଳେ ସେ ମତେ 'ପ୍ରଗତିବାଦୀ' ରବିବାର ପୃଷ୍ଠାରେ ଏକ ସାପ୍ତାହିକ ସ୍ତମ୍ଭ ରଚନା ଲାଗି ପ୍ରବର୍ତ୍ତାଇବାକୁ ଆମ ଘରକୁ ଆସିଥିଲେ । କଥା ପ୍ରସଙ୍ଗରେ କହିଥିଲେ- 'ପ୍ରଗତିବାଦୀ' ଏକ ନିର୍ଭୀକ ଓ ନିରପେକ୍ଷ ଓଡ଼ିଆ ଖବର କାଗଜ ଭାବରେ ପାଠକମାନଙ୍କ ମନରେ ପ୍ରତ୍ୟୟ ସୃଷ୍ଟି କରିଛି । କିନ୍ତୁ ପ୍ରଗତିଶୀଳ ଦୈନିକୀ ହୋଇପାରି ନାହିଁ । ପ୍ରଗତିଶୀଳ ଭାବନାକୁ ବାଦ୍ ଦେଇ ନିରପେକ୍ଷତାର କିଛି ଅର୍ଥ ହୁଏ ନାହିଁ ।

ସାମାଜିକ ଓ ଅର୍ଥନୈତିକ ସ୍ଥିତାବସ୍ଥା ବଜାୟ ରଖିବା ହେଉଛି ରକ୍ଷଣଶୀଳତା । ପ୍ରଗତି ବା ପ୍ରୋଗ୍ରେସ୍ ହେଉଛି ଆଧୁନିକତା । ନିରପେକ୍ଷତା ଅର୍ଥ କୌଣସି ପକ୍ଷ ନନେବା ନୁହେଁ; ବରଂ ସାମାଜିକ

Digitized by srujanika@gmail.com

ଓ ଅର୍ଥନୈତିକ ସ୍ଥିତାବସ୍ଥାର ପରିବର୍ତ୍ତନ ପାଇଁ ବୈପ୍ଲବିକ କର୍ମପନ୍ଥାର ପକ୍ଷ ନେବା ହେଉଛି ପ୍ରକୃତରେ ପ୍ରଗତି । ସେଥିପାଇଁ ପ୍ରଦ୍ୟୁମ୍ନ ବାବୁ ପଛୁଆବର୍ଗ ଲୋକଙ୍କ ଲାଗି ସରକାରୀ ଚାକିରିରେ ସ୍ଥାନ ସଂରକ୍ଷଣ ହେଉ ଅଥବା ତୃତୀୟ ବିଶ୍ୱରେ ଅର୍ଥନୈତିକ ସାମ୍ରାଜ୍ୟବାଦର ବିସ୍ତାର ପାଇଁ ପଶ୍ଚିମୀ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କର ଜଗତିକରଣ- ଘରୋଇକରଣ ଯୋଜନା ହେଉ- ତାର ଘୋର ବିରୋଧୀ ଥିଲେ । ଏହି ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ଥିଲା ତାଙ୍କ ପାଇଁ ଆଧୁନିକତା । ସେ ଭାଗ୍ୟବାଦୀ ନଥିଲେ, ଅନ୍ୟ କାଗଜ ଭଳି 'ପ୍ରଗତିବାଦୀ'ରେ ରାଶୀଫଳ ଛାପିବା ସେ ପସନ୍ଦ କରୁନଥିଲେ । ସେ ନାସ୍ତିକ ନଥିଲେ କିନ୍ତୁ ସେ ଈଶ୍ୱରଙ୍କ ଅନ୍ଧ ଭକ୍ତ ନଥିଲେ ।

ତାଙ୍କର ଏହି ଆଧୁନିକ ଜୀବନ- ଦୃଷ୍ଟି 'ପ୍ରଗତିବାଦୀ'ରେ ସ୍ୱନାମରେ ଲିଖିତ ବିଭିନ୍ନ ରଚନାରେ ଯେପରି ପ୍ରକଟିତ ହୋଇଥିଲା, ସେହିପରି 'ଜୀବନଚର୍ଯ୍ୟା' ଶିରୋନାମାରେ ଶ୍ରୀ ଅନୁପମ ଛଦ୍ମନାମରେ ଛୋଟ ଛୋଟ ଗଦ୍ୟ- ରଚନା ଆକାରରେ ପ୍ରକାଶିତ ହୋଇ  ମୋ ପରି ଅନେକ ପାଠକମାନଙ୍କୁ ମୁଗ୍ଧ-ମୋହିତ କରି ରଖିଥିଲା । ଏସବୁ ଲେଖାର ବିଷୟବସ୍ତୁ 'ଗାଈର ଶାସନ' ଠାରୁ ଆରମ୍ଭ କରି 'ଷଣ୍ଢ ଲଢ଼େଇ' ପର୍ଯ୍ୟନ୍ତ ବିସ୍ତୃତ । ଯେଉଁସବୁ ଘଟଣାକୁ ତୁଚ୍ଛକରି ଆମ ଆଖି ଦେଖି ମଧ ନ ଦେଖିଲା ଭଳି ଏଡ଼ାଇଯାଏ, ପ୍ରଦ୍ୟୁମ୍ନ ବାବୁଙ୍କ ଶାଣିତ, ଜହୁରୀ ଦୃଷ୍ଟିର ଦୂର-ବୀକ୍ଷଣରେ ଧରାପଡ଼ି ସେ ସବୁ ସ୍ମରଣୀୟ ରସୋତ୍ତୀର୍ଣ୍ଣ ରଚନାରେ ରୂପାନ୍ତରିତ ହୋଇଯାଏ । ଏସବୁ ଗଦ୍ୟ ରଚନା ଆକାରରେ କ୍ଷୁଦ୍ର ହେଲେ ମଧ ଆବେଦନରେ ଗଭୀର ଓ ଗମ୍ଭୀର । ତୃଣ ମଧରେ ତରୁର ଅସ୍ତିତ୍ୱ ଆବିଷ୍କାର କରିବା ତାଙ୍କର ଏହି ବ୍ୟକ୍ତିଗତ ଗଦ୍ୟ ରଚନାର ବୈଶିଷ୍ଟ୍ୟ ।

ପ୍ରଦ୍ୟୁମ୍ନ ବଳ ମେମୋରିଆଲ ଟ୍ରଷ୍ଟ ତରଫରୁ ତାଙ୍କର ଏହିସବୁ ରଚନାର କିଛି ଅଂଶ ଗତବର୍ଷ 'ଜୀବନଚର୍ଯ୍ୟା' ନାମରେ ପ୍ରକାଶ ପାଇଥିଲା । ଏବର୍ଷ ଅବଶିଷ୍ଟ ରଚନାକୁ  'ଜୀବନଚର୍ଯ୍ୟା' (୨ୟ ଭାଗ)ରେ ଏକତ୍ର ପ୍ରକାଶ କରାଯାଉଛି । ମୋର ଦୃଢ଼ ବିଶ୍ୱାସ ତାଙ୍କର ଅନ୍ୟ ରଚନା ଭଳି ଏହି ସଂକଳନ ମଧ ତାଙ୍କର ବିଦଗ୍ଧ ପାଠକ ପାଠିକାମାନଙ୍କ ଦ୍ୱାରା ବିଶେଷ ଭାବେ ଆଦୃତ ହେବ ।

ବିଭୂତି ପଟ୍ଟନାୟକ

ତା୨୨.୧୦.୨୦୦୧

୩,ଏଚ. ଲୁଇସ୍‌ରୋଡ, ଭୁବନେଶ୍ୱର-୧୪

Digitized by srujanika@gmail.com

# ପବ୍ଲିକ ସ୍କୁଲ ଓ ବ୍ରେକ୍‌ଫାଷ୍ଟ

ଆମ ଦେଶରେ 'ପବ୍ଲିକ୍ ସ୍କୁଲ' ସବୁ ରହିଛି । ଏହି ନାମ କରଣରୁ ଜଣାଯିବ ଯେ ପବ୍ଲିକ୍ ଅର୍ଥାତ୍ ସର୍ବସାଧାରଣଙ୍କ ପିଲାମାନେ ପଢ଼ିବା ପାଇଁ ଏହି ସବୁ ସ୍କୁଲ ଉଦ୍ଦିଷ୍ଟ । କିନ୍ତୁ ପ୍ରକୃତରେ ବଡ ଲୋକଙ୍କ (ମାନ, ଥାନ ଓ ପଇସାରେ) ପିଲାମାନେ ହିଁ କେବଳ ଏସବୁ ସ୍କୁଲରେ ପଢ଼ିପାରିବେ ।

ସାଧାରଣତଃ ଖ୍ରୀଷ୍ଟିଆନ୍ ଧର୍ମ ପ୍ରଚାରକ ଓ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ତରଫରୁ ଏପରି ସ୍କୁଲମାନ ପ୍ରତିଷ୍ଠା କରାଯାଇଥାଏ । ଏବେ ଅନ୍ୟମାନେ ମଧ୍ୟ ଅର୍ଥକାରୀ ସଂସ୍ଥା ଭାବରେ ଏପରି ସ୍କୁଲସବୁ ସ୍ଥାପନା କରିଲେଣି ।

ଭୁବନେଶ୍ୱର ଓ କଟକରେ ଷ୍ଟୁଆର୍ଟ ଏବଂ କନ୍‌ଭେଣ୍ଟ ସ୍କୁଲ ପ୍ରଭୃତି ଏହି ଶ୍ରେଣୀଭୁକ୍ତ ପବ୍ଲିକ୍ ସ୍କୁଲ । ଏଠାରେ ଇଂରାଜୀ ଭାଷା ମାଧ୍ୟମରେ ହିଁ ଶିକ୍ଷା ଦିଆଯାଏ । ଯଦିଓ ଏବେ କେନ୍ଦ୍ର ଏବଂ ରାଜ୍ୟ ସରକାରଙ୍କ ଶିକ୍ଷାନୀତି ଅନୁସାରେ ନିମ୍ନମାନର ଓଡ଼ିଆ ଓ ଅନ୍ୟ ଭାରତୀୟ ଭାଷା ସବୁ ପଢ଼ିବା ପାଇଁ ଏସବୁ ସ୍କୁଲରେ ବ୍ୟବସ୍ଥା ହେଲାଣି ।

ଏସବୁ କହିବାର ଉଦ୍ଦେଶ୍ୟ ହେଲା ଯେ ଓଡ଼ିଆଙ୍କ (ସକାଳ) ଜଳଖିଆ ଓ ସାହେବଙ୍କ 'ବ୍ରେକଫାଷ୍ଟ' ମଧ୍ୟରେ ପ୍ରଭେଦ କ'ଣ ତାହା ମଧ୍ୟ ପାଠ୍ୟକ୍ରମରେ ପ୍ରତିଫଳିତ । ଏବେ ସବୁ ମଧ୍ୟମ ଧରଣର ଓଡ଼ିଆ ବାପ ମା ନିଜ ପିଲାଙ୍କୁ ଏହି ସବୁ ପବ୍ଲିକ୍ ସ୍କୁଲକୁ ପଠାଉଛନ୍ତି । ଉନ୍ନତ ଧରଣର ଶିକ୍ଷା ପାଇ ପିଲା ମଣିଷ ହେବେ ପରା ।

ଦିନେ ଜଣେ ବିଶ୍ୱବିଦ୍ୟାଳୟ ଅଧ୍ୟାପକଙ୍କ ଘରେ ବସିଥିଲି । କଥା ପଡିଥିଲା ଯେ ଇଂରାଜୀ ବହିରେ ଯାହା ଅଛି ତାହାହିଁ ପ୍ରଶ୍ନର ଉତ୍ତରରେ ଲେଖିବାକୁ ହେବ ପବ୍ଲିକ ସ୍କୁଲମାନଙ୍କରେ ।

ଦିନେ ଅଧ୍ୟାପକଙ୍କ ଝିଅର କ୍ଲାସରେ ମିସ୍ (ଅର୍ଥାତ୍ ଶିକ୍ଷୟତ୍ରୀ ପବ୍ଲିକ ସ୍କୁଲମାନଙ୍କରେ ଅଧିକାଂଶ ଶିକ୍ଷକ ମହିଳା ଏବଂ ବିବାହିତା ଅବିବାହିତା ପ୍ରାୟ ସମସ୍ତଙ୍କୁ ପିଲାମାନେ ମିସ୍ ବୋଲି ଡାକନ୍ତି) ପିଲାମାନଙ୍କୁ ପ୍ରଶ୍ନ କଲେ ''ଆଜି ସକାଳେ କ'ଣ 'ବ୍ରେକ୍‌ଫାଷ୍ଟ' ଖାଇ କରି ଆସିଛ ଲେଖି କରି ଉତ୍ତର ଦିଅ ।''

ଅଧ୍ୟାପକଙ୍କ ଝିଅ ସମେତ ଅନେକ ପ୍ରକୃତ 'ଓଡ଼ିଆ' ପିଲା ଉତ୍ତରରେ ଯିଏ ଯାହା ସତରେ ଖାଇ କରି ଆସିଥିଲେ ଲେଖିଲେ । ଉତ୍ତର ଗୁଡିକରେ 'ମୁଢ଼ି, ଚୁଡା, ଚକୁଳି , ରୁଟି ଦୁଧ, କାକରା ପିଠା, ପରଟା ଏପରିକି ପଖାଳ ଆଦିର ଉଲ୍ଲେଖ ଥିଲା । ପବ୍ଲିକ ସ୍କୁଲର ମିସ୍ ଶିକ୍ଷୟତ୍ରୀ ଏସବୁ ଖାଦ୍ୟ ପଦାର୍ଥର ନାମ ଦେଖି ଜିଭ କାମୁଡି ପକାଇଲେ । ଏସବୁ ଖାଦ୍ୟ ପଦାର୍ଥ 'ବ୍ରେକଫାଷ୍ଟ'ର ତାଲିକାରେ ଅନୁମୋଦିତ ନୁହେଁ । କାରଣ ବହିରେ ଯାହା ଲେଖାଅଛି ତାହାହିଁ କେବଳ 'ବ୍ରେକଫାଷ୍ଟ' ହୋଇପାରେ ।

'ମିସ୍' ଶିକ୍ଷୟତ୍ରୀ ଏହି ଉତ୍ତର ଗୁଡିକ ଭୁଲ୍ ବୋଲି କହି ପିଲାଙ୍କୁ ସତର୍କ କରିଦେଲେ ଯେ ପରୀକ୍ଷାରେ ମୁଢ଼ି, ଚୁଡା, ପିଠା ଓ ପଖାଳ ଆଦି 'ବ୍ରେକ୍‌ଫାଷ୍ଟ' ଖାଉଛ ବୋଲି ଲେଖିଲେ ନମ୍ବର ପାଇବାର ଆଶା ନାହିଁ । ପିଲାମାନେ କହିଲେ ''ମିସ୍ ଆମେ ତ ସକାଳେ ସ୍କୁଲକୁ ଆସିଲା ପୂର୍ବରୁ ଏଇଆ ସବୁ ଖାଉଛୁ । ଆମ ମା'ତ ଆମକୁ ବ୍ରେଡ୍, ବଟର (ଲହୁଣୀ) ପରିଜ, ଆମଲେଟ କିମ୍ବା ଫ୍ରାଏଡ ଏଗ୍‌ସ ଦେଉନାହାନ୍ତି ? ଆମେ କ'ଣ କରିବୁ ?



Digitized by srujanika@gmail.com

ତୁମେ ଯାହା ଖାଅ ପଛେ 'ବ୍ରେକ୍‌ଫାଷ୍ଟ'ରେ କ'ଣ ଖାଉଛ ବୋଲି ପ୍ରଶ୍ନ ହେଲେ ବ୍ରେଡ଼ କିମ୍ବା ଟୋଷ୍ଟ ବଟର ଆମେଲଟ, ଫ୍ରାଏଡ ଏଗ୍‌ସ, ପରିଜ କିମ୍ବା କର୍ଣ୍ଣ ଫ୍ଲେକସ ଖାଉଛ ବୋଲି ଲେଖିଲେ ଯାଇ ନମ୍ବର ପାଇବ ।''

ସେଇଦିନଠୁ ଅଧ୍ୟାପକଙ୍କ ଝିଅ ତା ମା'ଙ୍କୁ ସବୁଦିନେ ଲଗାଇଛି ଯେ, ସେ ବ୍ରେକ୍‌ଫାଷ୍ଟ ଖାଇବ । ଚୁଡା, ରୁଟି, ପିଠା, ଚକୁଳି ଆଦି ଦେଇ ମା ତାକୁ ଠକି ଦେଉଛି । ନଇଲେ ସେ ଆଉ ପବ୍ଲିକ୍ ସ୍କୁଲକୁ ଯିବ ନାହିଁ । ସେ ବରଂ ଓଡ଼ିଆ ସ୍କୁଲକୁ ଯିବ ପଖାଳ ପଛେ ଖାଇବ ।



# ପରୀକ୍ଷା ନ ଦେଇ ମଧ୍ୟ ନମ୍ବର ମିଳେ

ମୋ ସାନପୁଅ ଷଷ୍ଠ ଶ୍ରେଣୀରେ ପଢୁଛି । ଗତ ଷଡ଼ମାସିକ ପରୀକ୍ଷା ସମୟରେ ଦିନେ ତା'ର ପେଟ ଖରାପ ଲାଗିବାରୁ ସେ ପରୀକ୍ଷା ଦେଇ ପାରିଲାନି । ଘରେ ରହିଲା । ସେଦିନ ତାର ହିନ୍ଦୀ ପରୀକ୍ଷା ଥିଲା ।

ପରୀକ୍ଷା ସରିଲା ପରେ ସବୁ ବିଷୟର ଖାତା ମିଳିଲା ଛାତ୍ରମାନଙ୍କୁ । ନିଜ ନିଜ ପରୀକ୍ଷା ଖାତାରେ କେତେ ନମ୍ବର ରହିଛି ପିଲାମାନେ ଟିପି ନେଲେ ।

ହିନ୍ଦୀ ଖାତା ପିଲାମାନଙ୍କୁ ଦେଲାଦିନ ମୋ ପୁଅର ଖାତା ତ ମିଳିଲାନି । ନ ମିଳିବା ସ୍ୱଭାବିକ । ପୁଅର ସାଙ୍ଗ ଜଣେ ପଚାରିଲା ''ତୁ ତ ହିନ୍ଦୀ ପରୀକ୍ଷା ଦେଇନୁ । ତୋ ଖାତା ତ ମିଳିବନି ।''

ପୁଅ କହିଲା ''ଖାତା କୋଉଠୁ ଆଉ ଆସନ୍ତା ?''

ସାଙ୍ଗ ପିଲା କହିଲା 'ରହ ମଜା କରିବା । ତୁ କହନା ଯେ ତୁ ପରୀକ୍ଷା ଦେଇନୁ ବୋଲି । ସାର କ'ଣ କହୁଛନ୍ତି ଦେଖିବା ।'

ସାର ସମସ୍ତଙ୍କର ଖାତା ଦେଲେ । ମୋ ପୁଅର ଖାତା ତ ନାହିଁ । ସାର ପଚାରିଲେ, ''ମହେଶ ତୁମ ଖାତା କାହିଁ ?''

ମହେଶ ମହାଚତୁର । ସେ ପରୀକ୍ଷା ଦେଇନି ବୋଲି ନ କହି କହିଲା, ''ସାର ମୁଁ ଜାଣିନି ।''

ସାର କହିଲେ ''ହଉ ଦେଖିବା ତୋ ଖାତା କୁଆଡ଼େ ଗଲା ।''

ଶିକ୍ଷକ ନିଶ୍ଚୟ ଭାବିଲେ ଯେ ଖାତା ତାଙ୍କ ପାଖରେ କେଉଁଠି ଥିବ କିମ୍ବା ହଜି ଯାଇଛି । ଏଇଥିରୁ ଜଣାପଡ଼ିବ ଯେ ଶିକ୍ଷା, ଶିକ୍ଷକ ଏବଂ ଶିକ୍ଷାଳୟମାନଙ୍କର ଅବସ୍ଥା କ'ଣ ?

ପିଲାମାନେ ଡେସ୍କ ଉପରେ ମୁହଁ ଚାପି ଚାପି ହସୁଥିଲେ ।

ତା'ପରଦିନ ସାର ଆସି କହିଲେ, 'ମହେଶ ତୁ ୨୯ ନମ୍ବର ପାଇଛୁ ହିନ୍ଦୀରେ ।'

ମହେଶ ବଡ଼ ଗମ୍ଭୀର ଭାବରେ କହିଲା 'ସାର ମୋ ଖାତା ?'

ସାର କହିଲେ 'ତୋ ଖାତା ମୁଁ ଆଣିବାକୁ ଭୁଲିଗଲି । ତୁ ତ ତୋର ନମ୍ବର ଜାଣିଲୁ । ଖାତା ତୋର କଣ ହେବ ?'

୧୫.୪.୮୭





Digitized by srujanika@gmail.com

# ଭାରତୀୟ ବିମାନ ଯାତ୍ରୀର ଯାତ୍ରୀ ସନ୍ତୋଷ

ଇଣ୍ଡିଆନ୍ ଏୟାର ଲାଇନ୍ସ ଦେଶ ଭିତରେ ବେସାମରିକ ବିମାନ ଯାତ୍ରୀଙ୍କୁ ନବା ଆଣିବା କରି ଗତବର୍ଷ କେତେକୋଟି ଟଙ୍କା ଲାଭ କରିଛନ୍ତି । ଚଳିତ ବର୍ଷ ଆହୁରି ଅଧିକ କୋଟି ଟଙ୍କା ଲାଭ କରିବେ ବୋଲି ଘୋଷଣା ହୋଇସାରିଲାଣି । ଗତ ଅଢ଼େଇ ବର୍ଷ ଭିତରେ ବିମାନ ଯାତ୍ରୀ ଭଡ଼ା ଦୁଇ ଗୁଣ୍ଣରୁ ଅଧିକ ହେଲାଣି । ବିମାନ ଭଡା ବଢ଼ିଲେ ଶତକଡା ୨୦ରୁ ୩୦ ପର୍ଯ୍ୟନ୍ତ ବଢ଼େ ।

ବିମାନଭଡ଼ା ବଢ଼ିବା ସାଙ୍ଗେ ସାଙ୍ଗେ ଯାତ୍ରୀ ସନ୍ତୋଷ ବଢ଼ିବା ପାଇଁ ସୁବିଧା ସୁଯୋଗ ମଧ ବଢ଼ାଇ ଦିଆଯାଏ । କିନ୍ତୁ ଇଣ୍ଡିଆନ୍ ଏୟାର ଲାଇନ୍ସ ଭାରତ ସରକାରଙ୍କର ବ୍ୟବସାୟୀ ସଂସ୍ଥାରେ ଏବେ ମାରଓ୍ୱାରି ଆଭିମୁଖ୍ୟ ପ୍ରଦର୍ଶନ କଲେଣି ।

ବିମାନ ଯାତ୍ରୀଙ୍କୁ ଯେଉଁ ସୁବାସିତ କାଗଜ ପ୍ରେସନର ଦିଆଯାଉଥିଲା ତାହା ଗତ ତିନିବର୍ଷରୁ ଊର୍ଦ୍ଧ୍ୱ ହେବ ବନ୍ଦ କରିଦିଆଗଲାଣି । ଆଗେ ମଧାହ୍ନ ଓ ରାତ୍ରି ଭୋଜନରେ ଯେଉଁ ପ୍ରକାର ଭଲ ଭାରତୀୟ ଖାଦ୍ୟ ଦିଆ ଯାଉଥିଲା ତାହା ବନ୍ଦ କରି ପାଶ୍ଚାତ୍ୟ ଢ଼ାଞ୍ଚାର ଲଂଚ ଡିନ୍‌ର ଏବେ ଦିଆଯାଉଛି । ଓଡ଼ିଶାରେ ରେଳଗାଡ଼ି କିମ୍ବା ବସ୍ ଇତ୍ୟାଦି ଡେରିହେଲେ ତାହା ତାଳଚେର (ରେଳ) ଗାଡି ସହିତ ତୁଳନା କରାଯାଉଥିଲା । କାରଣ ତାଳଚେର ପୁରୀ ଲୋକାଲ ପାସେଞ୍ଜର ରେଳଗାଡ଼ି ଆରମ୍ଭ ହେଲା ଦିନୁ ଆଜିପର୍ଯ୍ୟନ୍ତ ବିଳମ୍ବରେ ଚାଲିବା ଏକ ଦେହସୁଆ କଥା । କିନ୍ତୁ ଇଣ୍ଡିଆନ୍ ଏୟାର ଲାଇନ୍ସ ବିମାନ ଗୁଡିକ ଏବେ ତାଳଚେର ଗାଡ଼ି ପରି ଚାଲୁଛି ବୋଲି ଯାତ୍ରୀମାନେ ପରିହାସ କରି କଥାବାର୍ତ୍ତା କରୁଛନ୍ତି ।

ଏବେ ଦିନେ ଦିଲ୍ଲୀ ଭୁବନେଶ୍ୱର ଡାଇରେକ୍ଟ ବୋଇଙ୍ଗ ଫ୍ଲାଇଟ ଯାନ୍ତ୍ରିକ ତ୍ରୁଟି ଯୋଗୁଁ ଭୁବନେଶ୍ୱର ପହଂଚି ନପାରି ସେଠାରେ ଅଟକି ରହିଲା । ଦିଲ୍ଲୀରୁ ବାହାରିବାରେ ଏତେ ଡେରି ହେଲା ଯେ, ଯେଉଁ ଯାତ୍ରୀମାନେ ବିମାନରେ ବ୍ରେକ୍ ଫାଷ୍ଟ ଖାଇବେ ବୋଲି ଘରୁ କିଛି ନଖାଇ କରି ବାହାରିଥିଲେ ସେମାନେ ଦିଲ୍ଲୀ ବିମାନ ବନ୍ଦରରେ ଉପାସରେ ବସି ରହିଲେ । ଯେଉଁ ଖାଦ୍ୟ ବିମାନରେ ବ୍ରେକଫାଷ୍ଟ ଭାବରେ ଦିଆଯାଇଥାନ୍ତା ତାହା ଲଂଚ ଭାବରେ ଦିଆଗଲା । ଭୁବନେଶ୍ୱର ବିମାନ ବନ୍ଦରରେ ଯାତ୍ରୀମାନଙ୍କୁ ଆଣିବାକୁ ଯାଇଥିବା ଲୋକ ତିନିଘଣ୍ଟା ଅପେକ୍ଷା କଲାପରେ ରାଞ୍ଚିରୁ ବିମାନ ଆସିବ ନାହିଁ ବୋଲି କୁହାଗଲା ।

ଭୁବନେଶ୍ୱରକୁ ଆସୁଥିବା ଯାତ୍ରୀମାନଙ୍କ ମଧରେ ଅନ୍ୟମାନଙ୍କ ସହିତ ଥିଲେ ମୁଖ୍ୟମନ୍ତ୍ରୀଙ୍କ ପତ୍ନୀ ପାର୍ଲାମେଣ୍ଟ ସଦସ୍ୟା ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଓ ଲୋକଦଳ ନେତା ଶ୍ରୀ ରବି ରାୟ । ଆହୁରି ଅନେକ ଉଚ୍ଚପଦସ୍ଥ ଅଫିସର ମଧ ଥିଲେ । ସେମାନେ ରାଞ୍ଚିଠାରୁ ଭାରତ ସରକାରଙ୍କ ଏକ ବଡ ଉଦ୍ୟୋଗ ତରଫରୁ ପ୍ରେରିତ ଦୁଇଟି କାରରେ ଭୁବନେଶ୍ୱର ଆସିଲେ । ଡକାୟତମାନେ କାଳେ ବାଟରେ ସେମାନଙ୍କୁ ଲୁଟିନେବେ ସେଥିପାଇଁ ଗୋଟିଏ ବନ୍ଧୁକଧାରୀ ପୋଲିସ ନିରାପତ୍ତା ବାହିନୀ ଜିପ୍ ମଧ ସାଙ୍ଗରେ ଆସି ସେମାନଙ୍କୁ ଏଠାରେ ଛାଡିଲା ।

ଆଉ ସାଧାରଣ ଯାତ୍ରୀ ଯେଉଁମାନେ ଥିଲେ ସେମାନେ କିଏ କେଉଁବାଟେ ଆସିଥିବେ କେଜାଣି ?





Digitized by srujanika@gmail.com

# ଆଳୁ ସାର୍‌ଙ୍କ ଟିଉସନ କ୍ଲାସ୍‌ରେ ସିଟ୍ ମିଳୁନି

ଦିନେ ଜଣେ ବନ୍ଧୁଙ୍କ ଘରେ ବସିଥିଲି । ତାଙ୍କ ପୁଅ ବାହାରୁ ଆସି କହିଲା 'ନାହିଁ ବାପା- ହେବନି ।'

'ହେଲାନି ? କ'ଣ ତେବେ ହବ ? ବନ୍ଧୁ ଟିକିଏ ବିରକ୍ତ ଓ ବିବ୍ରତ ହୋଇ ପଚାରିଲେ ।

ବନ୍ଧୁଙ୍କ ପତ୍ନୀ ସେତେବେଳକୁ ପାଖ ଘରୁ ଆସି ଡ୍ରଇଁ ରୁମ୍ କବାଟକୁ ଧରି ଠିଆ ହୋଇଗଲେଣି ।

ଗୃହକର୍ତ୍ରୀ ବନ୍ଧୁଙ୍କ ପ୍ରତି ଲକ୍ଷ୍ୟ କରି କହିଲେ 'ତମକୁ ତ ପୁଅ କହିଲା ଟିକେ ଇନଫ୍ଲୁଏନ୍ସ ଦରକାର । ତମେ ଜଣ ଟିକେ ଡିପିଆଇ ନଇଲେ ଏଡୁକେସନ ଡେପୁଟି ସେକ୍ରେଟେରୀଙ୍କୁ କହିଥିଲେ ପିଲାଟା କ୍ଲାସ୍‌ରେ ଯାଗା ପାଇନଥାନ୍ତା ? ତମେ ତ ଅନେଷ୍ଟି ଦେଖେଇ ହବ ।'

ବନ୍ଧୁ ରାଗି ଆସିଲେଣି । କହିଲେ 'ସେମିତି କଥାବାର୍ତ୍ତା କରନା । ଅନେଷ୍ଟି ଦେଖେଇ ହଉଚି କ'ଣ କହୁଚ । ମୁଁ କ'ଣ ଅନେଷ୍ଟ ନୁହେଁ ? ମୁଁ ଏ କଥୋପକଥନରୁ ଯାହା ବୁଝିଲି ବନ୍ଧୁଙ୍କ ପୁଅ ବୋଧେ କୋଉ ସ୍କୁଲ କଲେଜରେ ଆଡ୍‌ମିସନ ନେବାକୁ ଚେଷ୍ଟା କରୁଛି, ପାଉନାହିଁ ।

ବନ୍ଧୁଙ୍କ ଆଡେ ପ୍ରଶ୍ନବାଚୀ ଦୃଷ୍ଟିରେ ଅନେଇଲାରୁ ସେ କହିଲେ 'ଯାପ ସ୍କୁଲରେ ତ ଆଡମିଶନ ପାଇବା କଷ୍ଟ । ଏବେ ସ୍କୁଲରେ ପଢ଼ା ପଢ଼ି ହେଉନି ବୋଲି ଟିଉସନ ମାଷ୍ଟରଙ୍କ କ୍ଲାସରେ ବି ଆଡ୍‌ମିସନ ପାଇବା କଷ୍ଟକର ।

ପଚାରିଲି 'କଣ ହେଲା ?'

ବନ୍ଧୁ ପୁଅ ଆଡକୁ ଅନେକ କହିଲେ 'ଏଇ ମୋ ମଝିଆଁ ପୁଅ ବୁନୁ । ଏବର୍ଷ ଟେନ୍‌ଥ କ୍ଲାସକୁ ଗଲା । ତାଙ୍କ ସ୍କୁଲରେ କିଏ ଆଳୁସାର ଅଛନ୍ତି । ସେ ବେଶୀ ଭଲ ପଢ଼ାନ୍ତି ବୋଲି ତାଙ୍କ ପାଖରେ ବେଶୀ ଭିଡ । ଇଏ ଚାହିଁଥିଲା ଶେଷବର୍ଷଟା ତାଙ୍କ ପାଖରେ ଟିଉସନ ହେବାକୁ । ସେ ଅଷ୍ଟମ ଶ୍ରେଣୀରୁ ଯାହାଙ୍କୁ ସବୁ ଟିଉସନ ଧରିଛନ୍ତି ସେମାନଙ୍କୁ ଛାଡି ପାରିବେ ନାହିଁ । ତେଣୁ ଅଧିକା ପିଲା ନେବାକୁ ତାଙ୍କ ପାଖରେ ଆଉ ସିଟ୍ ନାହିଁ । ବୁନୁ ତିନିଚାରିଥର ତାଙ୍କ ପାଖକୁ ଦଉଡିଲାଣି । ଆଜି ମୋର ଜଣେ ବନ୍ଧୁଙ୍କ ସହିତ ଅଳୁସାର୍‌ଙ୍କ ପାଖକୁ ପଠାଇ ଥିଲି । ବନ୍ଧୁଙ୍କ ପୁଅ ତାଙ୍କ ପାଖରେ ଦି ବର୍ଷ ହେଲା ପଢୁଛି । ତେଣୁ ସେ କହିଲେ କାଳେ ନେଇଯାଇଥାନ୍ତେ କିନ୍ତୁ ହେଲା ନାହିଁ ।' ବନ୍ଧୁପତ୍ନୀ ବିରକ୍ତ ହୋଇ କହିଲେ 'ନାହିଁ ଆଜ୍ଞା ଆମ ବାବୁଙ୍କର ବଡ ହେଳାଦନ୍ତିଆ କଥା । ଆଳୁସାର ଆଉ ପାଞ୍ଚ ଛ'ଜଣ ନୂଆ ପିଲାଙ୍କୁ ଏବର୍ଷ ନେଲେ । ସେମାନେ ସବୁମନ୍ତ୍ରୀଙ୍କ ସେକ୍ରେଟେରୀଙ୍କ ପୁଅ । ଇଏ କି ଡେପୁଟି ସେକ୍ରେଟେରୀ ହୋଇଛନ୍ତି କେଜାଣି । ଯାଙ୍କ ଦ୍ୱାରା ତ ଖଡା ସିଝବନି । ମୁଁ କହିଲି ଏଡୁକେସନ ଡେପୁଟି ସେକ୍ରେଟେରୀ କି ଡିପିଆଇଙ୍କୁ ଟିକେ କହିଦିଅ । ସେମାନଙ୍କ ଭିତରୁ କିଏ ସେ ମାଷ୍ଟରଙ୍କୁ କହି ଦେଇଥିଲେ କ'ଣ ସେ ମନା କରିପାରିଥାନ୍ତା ?

ଏତେବେଳେ ମୁଁ ବୁଝିଲି ଯେ, ପିଲାଙ୍କ ପାଠପଢ଼ା ପ୍ରକୃତରେ କେଉଁଠି ହେଉଛି । ତଥାପି ପଚାରିଲି ଏ ଅଳୁସାର୍ ପୁଣି କ'ଣ ? ସେ ସାର୍‌ଙ୍କ ନାଁ କ'ଣ ଆଳୁ ?

ବନ୍ଧୁ ପତ୍ନୀ କହିଲେ 'ଆଜ୍ଞା- ମାଷ୍ଟ୍ରମାନଙ୍କୁ ଏ ପିଲାମାନେ ଆଳ, ସାରୁ, ବାଇଗଣ, କଖାରୁ ଆଉ କଣ ସବୁ ପରିବା ନାଁ ଦେଇଛନ୍ତି । ସବୁଠୁ ଭଲ ସାର୍‌ଙ୍କ ନାଁ ଆଳୁ ଦିଆହୋଇଛି । ଏ ବିଷୟରେ ପାଠକ ମାନେ ହସିବେ ନା ଗମ୍ଭୀର ହୋଇ ଚିନ୍ତା କରିବେ ଭାବନ୍ତୁ ।

(ତା୦୨.୦୮.୧୯୮୨ରିଖ)





Digitized by srujanika@gmail.com

# ସିଂହଦ୍ୱାରରେ ଷଣ୍ଢ ସେବା

ଜଗନ୍ନାଥଙ୍କ ଅନୁଗ୍ରହରୁ ଏ ଦେଶରେ ଲୋକଙ୍କର ପଶୁପ୍ରାଣୀଙ୍କ ପ୍ରତି ମଧ୍ୟ କି ସ୍ନେହ ଆଦର ଓ ଚର୍ଚ୍ଚା ?

ସେଦିନ ସକାଳୁ ଆମେ ଦୁହେଁ ଗାଧୁଆ ପାଧୁଆ ସାରି ତର ତରରେ ଠାକୁରଙ୍କ ଦର୍ଶନ ପାଇଁ ସିଂହଦ୍ୱାରରେ ପହଂଚିଲା ବେଳକୁ ଅରୁଣସ୍ତମ୍ଭ ପଛପଟେ ହାତୀଟାଏ ଠିଆ ହୋଇ ଯାତ୍ରୀମାନଙ୍କ ଠାରୁ ଭୋଜନ ଦକ୍ଷିଣା ଗ୍ରହଣ କରୁଛି । ଜଣେ କେହି ପଶ୍ଚିମା ଯାତ୍ରୀ ଦଶପଇସାଟିଏ ସହିତ ଗୋଟାଏ କାଗଜ ଠୁଙ୍ଗାରେ ଚାଉଳ ହାତୀ ଶୁଣ୍ଢରେ ଥୋଇଦେଲା । ହାତୀ ଦଶପଇସିକୁ ଛିଙ୍କି ବାହାର କରିଦେଲା । ଚାଉଳ ଶୁଣ୍ଢରେ ଟେକି ମୁହଁରେ ଭର୍ତ୍ତିକଲା । ଯାତ୍ରୀ ପୁଣି ଦଶପଇସିଟିକୁ ବଢ଼େଇଲା । ହାତୀ ଦକ୍ଷିଣା ନେଇ ମାହୁନ୍ତ ହାତରେ ଟେକିଦେଲା ।

ଅରୁଣସ୍ତମ୍ଭ କଡ଼ରେ ଦେହରେ ଚିତ୍ର ବିଚିତ୍ର ହୋଇ ଗୋଟାଏ ଷଣ୍ଢ ମଧ୍ୟ ଆଉ ଜଣେ ଯାତ୍ରୀଙ୍କ ଠାରୁ ଠୁଙ୍ଗାଏ ଚାଉଳ ଖାଉଥିଲା । ଯିବା ଆସିବା ଯାତ୍ରୀମାନେ ଷଣ୍ଢ ଦେହରେ ହାତବୁଲାଇ ମୁଣ୍ଡରେ ମାରୁଥିଲେ । ମହାଦେବଙ୍କ ବାହନ ତ ।

ଆମେ ଦର୍ଶନସାରି ଖୁସିରେ ବାହାରକୁ ଆସିଲା ବେଳକୁ ଏକ ମନମୁଗ୍ଧକର ଦୃଶ୍ୟ ଦେଖିଲୁ । ଷଣ୍ଢଟି ଶୋଇଛି । ଜଣେ ଡେଙ୍ଗାଚଉଡା ଗୋଲାପୀ ରଙ୍ଗର ଚଉଡା କୁମ୍ଭପକା ଧଡ଼ିର ଧୋତିପିନ୍ଧା ହୃଷ୍ଟପୁଷ୍ଟ ଲୋକ ଷଣ୍ଢକୁ ମୋଡୁଛନ୍ତି । ଥାପଡ଼ମାରି ମାଲିସ କରୁଛନ୍ତି । ମୁଣ୍ଡରେ ତିଳକଚିତା, ବେକରେ ରୁଦ୍ରାକ୍ଷ ମାଳା, ବାହୁରେ ନାଲି ସୂତାରେ ବନ୍ଧା ଚଉଡା ତାବିଜ, ଆଙ୍ଗୁଠି ତିନିଚାରିଟାରେ ରଙ୍ଗ ପଥରର ମୁଦି, ଗୋଡ଼ରେ ଡେଙ୍ଗା ଖଡ଼ମ, କାନ୍ଧରେ ଓଦା ପୁରୀଆ ଗାମୁଛା । ତଳକୁ ଲମ୍ୱି ଆସିଛି ନ' ଖିଅ ପଇତା, ଛାତିରେ ଘଂଚ କଳାଧଳା ବାଳ । କାନ୍ଧ ଉପରେ ଓ କାନରେ ମଧ୍ୟ କେରାଏ ଲେଖା ବାଳ ।

ଷଣ୍ଢ ବଡ ଆରାମରେ ଆଗଗୋଡ଼ ଟେକିଦେଉଛି ମୋଡା ଖାଇବା ପାଇଁ । ପୁଣି ବେକ ଷଣ୍ଢାକୁ ଟେକି ଦେଉଛି ଘଷା ଖାଇବା ପାଇଁ । କେତେବେଳେ ପଛଗୋଡ ଟେକୁଛି, ପୁଣି ପିଠି କଡେଇ ଦେଉଛି । କଡ ନେଉଟାଇ ଆରପଟ ଦେଖାଇ ଦେଉଛି । ଯେମିତି ମଣିଷ ମୋଡାଘଷା ଖାଇଲେ ଆରାମରେ ଏପଟ ସେପଟ ଦେଖାଇ ଦିଅନ୍ତି । ଷଣ୍ଢର ମୁହଁରେ ଆନନ୍ଦ ଆଉ ସନ୍ତୋଷର ଝଲକ ।

ଷଣ୍ଢ ସେବକ ଆଗପଟ ମୋଡା ଶେଷ କରି ପିଠି ଆଡକୁ ଗଲେ । ଷଣ୍ଢ ପିଠିପଟେ ମୋଡା ଘଷା ଖାଇବାକୁ ନିଜକୁ ପ୍ରସ୍ତୁତ କରି ନେଇଥାଏ । ସେବକ ମଧ୍ୟ ଅତି ଆଦରରେ ଷଣ୍ଢର ବିଭିନ୍ନ ଅଙ୍ଗକୁ ଘଷୁଥାନ୍ତି । ତାଙ୍କ ମନରେ ଯେଉଁ ସନ୍ତୋଷ ତାହା ମୁହଁରେ ଫୁଟି ଉଠୁଥାଏ ।

ଆମେ ଉତ୍ସୁକ ଦୃଷ୍ଟିରେ ଦେଖୁଥାଉ । ଆମ ମନର ପ୍ରଶ୍ନ ବୁଝିପାରି ସେଠାରେ ଠିଆ ହୋଇଥିବା ଜଣେ ନିତିଦିନିଆ ପଣ୍ଡା କହିଲେ କାଳିଆ (ଅର୍ଥାତ ଷଣ୍ଢ) ନିତି ପଟାଏ ଘଷା ନ ଖାଇଲେ ଛାଡିବନି । ଭାଇନା (ଅର୍ଥାତ୍ ଷଣ୍ଢ ସେବକ) ଦର୍ଶନରୁ ଫେରିଲା ବେଳେ କାଳିଆ ଏଇଠି ରାହା ଦେଖୁଥିବ । ଘଷା ନ ଖାଇଲେ ଭାଇନାକୁ ଘେରିବ । ଭାଇନା ଠିଆ ହେଲା ମାତ୍ରେ ଘଷି ହୋଇ ଗେହ୍ଲେଇ ହେବ । ମଣିଷ ପରି ଏମିତି ଶୋଇପଡିବ ଦେଖୁଚତ ।

ଜଣେ ଶ୍ୱେତଙ୍ଗୀ ରମଣୀ ତାଙ୍କ ସହଯାତ୍ରୀଙ୍କ ସହିତ ଏକଥା ହସମୁଖା ହୋଇ ଦେଖୁଥିଲେ । ଷଣ୍ଢ ଓ ସେବକଙ୍କ ଫଟୋ ନେବା ପାଇଁ କ୍ୟାମେରା ସଜାଡୁଥିଲେ । ଏହି ଫଟୋଟି ହୁଏତ କେଉଁ ଆନ୍ତର୍ଜାତିକ ପ୍ରତିଯୋଗିତାରେ ପୁରସ୍କୃତ ବି ହେବ ।

(ତା୨୫.୦୭.୧୯୮୨ରିଖ)





Digitized by srujanika@gmail.com

# ଖାନସାମା ସାହେବ

ଥରେ ଛୁଟିରେ ପରିବାରର ସମସ୍ତେ ଆମେ କୋଣାର୍କ ଇନିସ୍‌ପେକ୍‌ସନ ବଙ୍ଗଳୋ ଓରଫ ଡାକବଙ୍ଗଳାରେ ଛୁଟିକାଟିବାର ସୁଯୋଗ ପାଇଥିଲୁ । ଦିନବେଳା ଯାଇ ଗୋଟାଏ ହୋଟେଲରେ ସାତ ଜଣ ତିରିଶ ଟଙ୍କା ଦେଇ ବଡ ଅସନ୍ତୋଷଜନକ ଖାଦ୍ୟ ଖାଇ ଫେରିଲୁ ।

ଭାରତ ସରକାରଙ୍କ ଅଶୋକ ହୋଟେଲର 'ଟ୍ରାଭେଲ୍ସ' ଇନ୍ କିମ୍ବା ଓଡ଼ିଶା ସରକାରଙ୍କ ଓଟିଡିସି ପରିଚାଳିତ 'ପାନ୍ଥ ନିବାସ'ରେ ଖାଇବାକୁ ଛାତି ପତେଇହେଲାନି । କାରଣ ଆମ ଅଣ୍ଟିରେ ଜୋର୍ କମ୍ ଏବଂ ଖାଇବା ଯେ ବଢ଼ିଆ ହେବ ସେ ଗ୍ୟାରେଣ୍ଟି କିଏ ଦେବ ?

ଭାବିଲୁ ଡାକବଙ୍ଗଳାରେ ରାତିକୁ ବରାଦ କରି ରୋଷେଇ କରାଇ ଖାଇବା । ବୁଝିଲୁ ଯେ ଡାକବଙ୍ଗଳାରେ 'ଖାନସାମା'କୁ ପଇସା ଦେଲେ ସେ ଜିନିଷପତ୍ର କିଣି ରୋଷେଇ କରିଦେବ । ପ୍ରାୟ ଚାରିଟା ବେଳକୁ 'ଖାନସାମା'କୁ ଖବର ଦେଲୁ । ଶୁଣିଲୁ ସେ ବଜାରକୁ ଯାଉଛି । ପ୍ରତି ପନ୍ଦର ମିନିଟରେ ଥରେ ଆମ ପୁଅ ଯାଇ ତାକୁ ଖୋଜନ୍ତି । ସେ ବଜାରରୁ ଫେରି ନଥାଏ । ସଂଧ୍ୟା ବେଶୀ ହେଲେ କାଳେ ଅସୁବିଧା ହେବ । ପୁଣି ଉପାସ ରହିବାକୁ ହେବ ।

ସଂଧ୍ୟା ପ୍ରାୟ ଛ'ଟା ବେଳକୁ ଖାନସାମା ଆସିଲା । ବୟସ୍କ । ପ୍ୟାଣ୍ଟ ସାର୍ଟ ଘଡ଼ି ପିନ୍ଧା ଖାନସାମା । ମନେହେଲା ବୋଧେ କଲିକତା କି ବମ୍ବେର କୌଣସି ହୋଟେଲରେ ଆଗରୁ ହୁଏତ ଚାକିରି କରିଥିବେ ।

ଚାଉଳିଆ ଭାତ ଖାଇ କାହାରି ପେଟରେ ବେଶୀ ଭୋକ ନଥିଲା । ଗୃହିଣୀ କହିଲେ 'ରୁଟି ସନ୍ତୁଳା କରିଦେଲେ ଚଳିବ ।' ପିଲାମାନଙ୍କର ଆଇଁଷ ପ୍ରତି ଆଶା ଥିବ ଭାବି ମୁଁ କହିଲି ଅଣ୍ଡା ତରକାରୀ ଆଉ ପରଟା କରିଦେଲେ ବରଂ ଭଲ ହେବ । ଏଠି ବିଲାଇ ରୁଟି କାଳେ କରିପାରିବେନି ।

ଗୃହିଣୀ କୋଡ଼ିଏ ଟଙ୍କା ଖାନସାମାଙ୍କ ହାତକୁ ଦେଲେ । ଖାନସାମା ପଚାରିଲେ 'କଣ ସବୁ ହେବ ?'

'ଖାଲି ପରଟା ଅଣ୍ଡା ତରକାରୀ ହେବ । ଜଣକା ଗୋଟାଏ ଲେଖାଏ ଅଣ୍ଡା ଜଣକୁ ତିନିଖଣ୍ଡ ପରଟା ହେଲେ ହୋଇଯିବବ । ମୁଁ କହିଲି ଅର୍ଥାତ୍ ସାତଟା ଅଣ୍ଡା ଏବଂ କିଛି ଆଳୁ ଓ ପ୍ରାୟ ଏକୋଇଶି ଖଣ୍ଡ ପରଟା ପାଇଁ ଅଟା ସହିତ ଆଉ ଯାହା ତେଲ, ମସଲା, ଜାଳ ଇତ୍ୟାଦି ଦରକାର । ଖାନସାମାଙ୍କୁ ମିଶାଇଲେ ଆଉ ଜଣେ ହେବେ ଭାବି ମୁଁ କହିଲି ଆଠଟା ଅଣ୍ଡା ଆଣ ।

ଖାନସାମା କୋଡ଼ିଏ ଟଙ୍କିଆ ନୋଟଟାକୁ ଧରି ଆମ ଆଡେ ବଡ଼ ତାଚ୍ଛଲ୍ୟ ଦୃଷ୍ଟିରେ ଚାହିଁଲେ । ମୁଁ ପଚାରିଲି କ'ଣ ଦରକାର ?

'ଆଜ୍ଞା ସତୁରୀ ଅଶୀ ଟଙ୍କା ଖର୍ଚ୍ଚ ହେବ' ଖାନସାମା ଉତ୍ତର ଦେଲେ ।

ଖାନସାମା ଶବ୍ଦରୁ ସେ ଜଣେ ମୁସଲମାନ ହେବ ବୋଲି ମୁଁ ଭାବିଲି । କିନ୍ତୁ ସତୁରୀ ଅଶୀ ଟଙ୍କା ଖର୍ଚ୍ଚର ବରାଦ ଶୁଣି ତାଙ୍କ ଆଡକୁ ଅନେଇଲି । ସେତେବେଳେ ତାଙ୍କ ବୁସ୍‌ସାର୍ଟ କଲାର ତଳୁ କେରାଏ ମୋଟା ପଇତା ଉଙ୍କି ମାରୁଥିବାର ଦେଖି ଭାବିଲି ବ୍ରାହ୍ମଣ ହେବେ ପରା ।

ଆମ ପରିବାରର ସମସ୍ତେ ତାଟଙ୍ଗା ହୋଇ ଖାନସାମାଙ୍କୁ ଦେଖୁଛନ୍ତି । ତିନିଟା ପରଟା ଓ



Digitized by srujanika@gmail.com

ଗୋଟାଏ ଅଣ୍ଡାର ତରକାରୀକୁ ମୁଣ୍ଡପିଛା ଦଶଟଙ୍କା ଖର୍ଚ୍ଚ ହେବା ଶୁଣି ସମସ୍ତଙ୍କ ମୁଣ୍ଡ ଖରାପ ।

ପଚାରିଲି 'ଅଣ୍ଡ ଗୋଟାକ ଦାମ୍ ଏଠି କେତେ କି ?'

'ପଁଷଠି ପଇସା ।'

ଆଉ ଅଟା ?

ଦି ଟଙ୍କା ଅଶୀ ପଇସା କିଲୋ ।

ଘିଅ କେତେ ଦରକାର ହେବ ?

ସାତ'ଶ ପଚାଶ (ଗ୍ରାମ୍)

'କାଠ କେତେ ଲାଗିବ ?'

ପଚିଶ କିଲୋ । କ୍ୱିଣ୍ଟାଲ ଏଠି ଚବିଶ ଟଙ୍କା ।

ମୋ ସ୍ତ୍ରୀ ଆଉ ଧୈର୍ଯ୍ୟ ନ ଧରି ପାରି କହିଲେ, 'ଆମେ ହୋଟେଲରେ ବରଂ ଖାଇବା । କମ୍ ଖର୍ଚ୍ଚ ହେବ ।

ଖାନସାମା ତତ୍କ୍ଷଣାତ୍ ଯୋଗ କଲେ 'ହଁ ଆଜ୍ଞା ଏଠି ଡିଲକ୍ସ ହୋଟେଲରେ ଭଲ ଖାଇବା ହୁଏ । କହିଲେ ମୁଁ ଆଣିଦେବି ।

ନାହିଁ ଆମେ ଯାଇ ଖାଇଆସିବୁ । ତୁମେ ଯାଅ । ତୁମର ରୋଷେଇ କରିବାର ଇଚ୍ଛା ନାହିଁ କହି ମୁଁ କୋଡ଼ିଏ ଟଙ୍କିଆଟି ଖାନସାମାଙ୍କ ହାତରୁ ନେଲି ।

କୋଣାର୍କ ଡାକବଙ୍ଗଳାରେ ଯେଉଁପରି ଲୋକ ରହନ୍ତି ଯେଉଁ ପ୍ରକାର ଭୋଜିଭାତ ସେଠି ହୁଏ ସେଥିରେ ଆମପରି ଲୋକଙ୍କ ପ୍ରତି ଖାନସାମାଙ୍କର କି ଧାରଣା ହୋଇଥିବ କେଜାଣି ।

ବାଚ୍ଛେ, ଛୋଟଲୋକ କଞ୍ଜୁସ ଗୁଡାକ ବୋଲି ସେ ଭାବିଲେ କିଛି ଭୁଲ ନାହିଁ ।

(ତା୩୦.୧୦.୧୯୮୨ରିଖ)





Digitized by srujanika@gmail.com

# ଧର୍ମପତ୍ନୀଙ୍କ ବିଶ୍ୱାସଘାତକତା

ଆମେ ସେତେବେଳେ ବମ୍ବେରେ ଥାଉ । ମୋର ଜଣେ ସାଙ୍ଗ ୩ ବର୍ଷ ପାଇଁ ଇଂଲଣ୍ଡ ଯାଇଥିଲେ ଉଚ୍ଚଶିକ୍ଷା ପାଇଁ । ଡକ୍ଟରେଟ୍ କରିସାରି ଫେରିଲା ପୂର୍ବରୁ ଛ'ମାସ ପାଇଁ ନିଜ ସ୍ତ୍ରୀଙ୍କୁ ବିଲାତ ଦେଖିବା ପାଇଁ ଡାକି ନେଇଥିଲେ । ଫେରିଲା ବେଳେ ଉଭୟ ବନ୍ଧୁ ଓ ବନ୍ଧୁପତ୍ନୀ ଫେରିଲେ ।

ବନ୍ଧୁ ମୋର ବିଲାତରୁ ଚିଠି ଲେଖିଥିଲେ ବମ୍ବେ ବିମାନ ବନ୍ଦରରୁ ତାଙ୍କୁ ଘରକୁ ନେଇ ଆସିବାକୁ । ବମ୍ବେର ଶାନ୍ତାକ୍ରୁଜ ବିମାନ ବନ୍ଦରରେ ମୁଁ ଓ ମୋର ସ୍ତ୍ରୀ ସେମାନଙ୍କୁ ଆମ ଘରକୁ ନେଇ ଆସିଲୁ । ବିମାନ ବନ୍ଦରରୁ ଘରକୁ ଆସିବା ବାଟରେ ଟାକ୍ସିରେ ବନ୍ଧୁ ଗପ କରୁଥାନ୍ତି । ବନ୍ଧୁ ପତ୍ନୀ ଏକଦମ୍ ନୀରବ । ମୋ ସ୍ତ୍ରୀ ତାଙ୍କ ସହିତ କଥାବାର୍ତ୍ତା କରୁଥାନ୍ତି କିନ୍ତୁ ସେ ବେଶୀ କିଛି ଉତ୍ତର ଦେଉନଥାନ୍ତି ।

ରାତିରେ ଶୋଇଲା ବେଳେ ମୋ ସ୍ତ୍ରୀ କହିଲେ 'ଶୁଣିଲନା ! ମନୋରଂଜନ ବାବୁ ତାଙ୍କୁ କୁଆଡେ ବାଟରେ ତାଗିଦ କରି କହିଥିଲେ ଯେ ବେଶୀ କଥାବାର୍ତ୍ତା ନ କରିବାକୁ । ମନୋରଂଜନ ବାବୁଙ୍କର କହିବା ହେଲା ଯେ ତାଙ୍କ ସ୍ତ୍ରୀ ତ କଥାବାର୍ତ୍ତା କରି ଜାଣନ୍ତି ନାହିଁ । ତେଣୁ କ'ଣ ନାଇଁ କ'ଣ ଗପିବେ । ବରଂ କଥା ନ କହିବା ହିଁ ଭଲ ।

ମୁଁ କହିଲି ମନୋରଂଜନର ସ୍ତ୍ରୀ ସେ କଥା କିନ୍ତୁ ତୁମ ଆଗରେ କହି ପକେଇଲେ । ସେ ଯେଉଁପାଇଁ ଡରୁଥିଲା ତା' ସ୍ତ୍ରୀ ତାକୁ ସେହି କଥାରେ ପକାଇଲା । କହୁଛି ମୁଁ ତାକୁ କାଲି ସକାଳୁ ... ।

ମୋ ସ୍ତ୍ରୀ ମତେ ଚପାଗଳାରେ ତାଗିଦା କରି କହିଲେ - ତମେ ବଡ଼ ଅବୁଝା ଲୋକ ! ସେ ମତେ କହିଲା ବିଶ୍ୱାସରେ ମୁଁ ତୁମକୁ ବିଶ୍ୱାସରେ କହିଲି । ତମେ ତା'କୁ ଧରା ପକେଇବ । ନାଇଁ ନାଇଁ ମୋ କଥା ମୁଁ ଫେରେଇ ନେଉଛି ।

ମୁଁ କହିଲି 'ଆଚ୍ଛା ମନୋରଞ୍ଜନ ତ ବିଶ୍ୱାସରେ ତା' ସ୍ତ୍ରୀକୁ କଥା ନ କହିବାକୁ କହିଥିଲା । ସେ କଥା ଆଉ କ'ଣ କହିଥାନ୍ତା ବା ନ କହିଥାନ୍ତା । ମନୋରଞ୍ଜନ ସାଙ୍ଗରେ ବିଶ୍ୱାସଘାତକତା କଲା କେମିତି ?

ମୋ ସ୍ତ୍ରୀ ବିରକ୍ତ ହୋଇ କହିଲେ 'ତମେ କୋଉ ବିଶ୍ୱାସୀ ଲୋକ । ତମେ ତ ମତେ ଧରା ପକେଇବାକୁ ବସିଲଣି ।'

ତାହେଲେ କ'ଣ କରାଯିବ କୁହ ? ମୁଁ ଚାହିଁଲି ।

ମୋ ସ୍ତ୍ରୀ କହିଲେ- 'ମନୋରଞ୍ଜନ ବାବୁଙ୍କ ସ୍ତ୍ରୀ କହିଲେ 'ଯେ ମତେ ବାରମ୍ବାର କହିଥିଲେ କଥା ନ କହିବାକୁ । ମୁଁ କାଳେ କ'ଣ ଅଗଲଟପିଆ କଥା ତମ ଆଗରେ କହି ପକେଇବି । କିନ୍ତୁ ଦେଖୁଛି ତମେ ଭାରି ଭଲ ମଣିଷ । ତମ ସାଙ୍ଗରେ ଯାହା ପାରେ ତାହା କଥା କହିଲେ ଚଳିବ । ସେଇଥିପାଇଁ ତମକୁ କହିଦେଉଛି ।

ମୁଁ ମଝିରେ କହିଲି 'ତମକୁ କ'ଣ ସେ କହିଥିଲା 'ମୋ ଆଗରେ ଏସବୁ କହିବାକୁ ?'

ସ୍ତ୍ରୀ କହିଲେ ନାଁ ।

'ତେବେ ମୁଁ ମୋ ବନ୍ଧୁ ଆଗରେ ମୋ ମନକଥା ସବୁ କାହିଁକି କହିବନି । ମୁଁ ପ୍ରଶ୍ନ କଲି ।

ତମକୁ ମୋ ରାଣ । ତମେ ଏକଥା ମନୋରଞ୍ଜନ ବାବୁଙ୍କୁ କହିବନି ସ୍ତ୍ରୀ ମୋର ଅନୁରୋଧ କଲେ ।

ହଉ ତେବେ କ'ଣ କରାଯିବ ଆଉ ? ମୁଁ ପ୍ରତିଶ୍ରୁତି ଦେଲି ।

(ତା୧୭.୧୦.୧୯୮୨ରିଖ)





Digitized by srujanika@gmail.com

# ପତି ଓ ପତ୍ନୀ ମଧ୍ୟରେ ଦୂରତ୍ୱ

ଦିନେ ଜଣେ ସମ୍ପର୍କୀୟଙ୍କ ଘରକୁ ଯାଇଥିଲି । ଭଦ୍ରଲୋକ ନଥିଲେ । ପତ୍ନୀ ଥିଲେ । ସେ ତାଙ୍କ ଝିଅ ସହିତ ବସି କେତେଗୁଡ଼ିଏ ନୂଆ ଶାଢ଼ୀ ତନଖି କରୁଥିଲେ । ପଚାରିଲି କ'ଣ, ଏସବୁ କିଣା ହେଲା କି ? ଉତ୍ତର ମିଳିଲା, 'କାଲି କଟକ ଯାଇଥିଲି । ଶାଢୀ କେତେ ଖଣ୍ଡି ଆଣିଛି । ଦେଖିଲ କେମିତି ହୋଇଛି ।' ଯେଉଁ ଶାଢୀ ମତେ ଯେତିକି ଭଲ ଲାଗିଲା ସେହି ଅନୁମତେ ମତ ଦେଲି । ଦୁଇଟି ସମାନ ଦାମ୍‌ର ଶାଢୀ ଦେଖାଇ ଭଦ୍ରମହିଳା ପଚାରିଲେ 'ଏହା ଭିତରୁ କୋଉଟା ବେଶୀ ଭଲ ହୋଇଛି କହିଲ ?' ଭାବିଲି ଏଥିରେ କିଛି ଅଡୁଆ କଥା ଥିବ । ମୁଁ କାହିଁକି ଗୋଟିକୁ ଅନ୍ୟଟିଠାରୁ ଭଲ କରି କହିବି । କିନ୍ତୁ ଉଭୟ ଶାଢୀ ଭଲ ଲାଗୁଥାଏ । ଗୋଟିଏ ନାଲି ଏବଂ ଅନ୍ୟଟି ନୀଳ ରଙ୍ଗର ଛିଟ ଧଳାଦେହରେ । କହିଲି ଏଇ ଦୁଇଟାଯାକ ଭଲ ହୋଇଛି ।'

ଭଦ୍ର ମହିଳା ନଛୋଡ଼ବନ୍ଧା । କହିଲେ 'ନାହିଁ କୁହ କୋଉଟା ତମକୁ ବେଶୀ ଭଲ ଲାଗୁଛି ? ମୁଁ ତାହାହେଲେ ପଚାରୁଛି କାହିଁକି ? ସାପ ଅଛି କି ବେଙ୍ଗ ଅଛି ନଜାଣି ସାପ ଗାତରେ ହାତ ପୂରାଇବା ଭଳି ବାଧ ହୋଇ ନାଲି ରଙ୍ଗ ଛିଟ ଶାଢୀଟା ବେଶୀ ଭଲ ଲାଗୁଛି ବୋଲି ମୋର ମତ ଜଣାଇଲି । ଭଦ୍ର ମହିଳା ଖୁବ୍ ଖୁସି ହୋଇ କହିଲେ ସେଇଟା ମୋର ଚଏସ୍ । ମୋ ପାଇଁ ଆଣିଛି । ଆର ଶାଢୀଟା କାହାର ଭାବି ତାଙ୍କ ମୁହଁକୁ ଅନାଇବାରୁ ସେ କହିଲେ ମୋର ଜଣେ ସାଙ୍ଗ । ସ୍କୁଲରେ ଟିଚର । ମୋ ସହିତ ଯାଇଥିଲେ । ସେ ତାଙ୍କ ପାଇଁ ଆଣିଛନ୍ତି ।

'ତମ ଘରେ କାହିଁକି ଏ ଶାଢୀଟା ତେବେ ରହିଲା ।'

'ସେ ପରେ ନେବେ । ଏବେ ରଜରେ ଶାଢୀ କିଣିଥିଲେ । ପୁଣି ଶାଢୀ କିଣିଲେ ସ୍ୱାମୀ ଟିକେ ଚିଡିବେ ।' ଉତ୍ତର ଦେଲେ ସେ ।

'ଯେଉଁଦିନ ତ ପିନ୍ଧିବେ ସ୍ୱାମୀ ଜାଣିବେ । ଲାଭ କ'ଣ ?'

'କିଛି ଦିନ ପରେ ଶାଢୀ ବାହାର କରି ସେ କହିବେ ଯେ ଶାଢୀଟା କେତେଦିନରୁ ଥିଲା ତାଙ୍କ ପାଖରେ ।'

'କାହିଁକି ? ତାଙ୍କ ସ୍ୱାମୀ କ'ଣ ଭାରି କଞ୍ଜୁସ ? ମୁଁ ପଚାରିଲି ।'

'ନାଇଁ କଞ୍ଜୁସ ସେମିତି ନୁହଁନ୍ତି ଯେ, ବିଜିନେସ କରନ୍ତି । ତଥାପି ...'

'କିଏ ସେ ଭଦ୍ରଲୋକ ? ପଚାରିଲି '।

ମୋ ସମ୍ପର୍କୀୟ ଭଦ୍ରଲୋକଙ୍କ ନାଁ କହିଲେ । ମୁଁ ତାଙ୍କୁ ଅନେକ ଦିନରୁ ଜାଣେ । ଭଦ୍ରଲୋକ ଭଲ ରୋଜଗାର କରନ୍ତି । ଦୋଷ ଭିତରେ ଟିକେ ଅଧିକ ମଦପାନ କରନ୍ତି । ସ୍ତ୍ରୀକୁ ଲୁଚାନ୍ତି ମଦ୍ୟପାନର ଆସର ସମ୍ପର୍କରେ । ଥରେ କଲିକତାରେ ଦେଖା ହୋଇଥିଲେ । ରସଗ୍ରାହୀ ଭଦ୍ର ଲୋକ ରାତି ନ'ଟା ବେଳେ ବାହାରୁଥିଲେ ରଙ୍ଗୀନ ରାତ୍ରିଜୀବନ ଉଦ୍ଦେଶ୍ୟରେ । ମୁଁ ତାଙ୍କୁ ଥଟ୍ଟାରେ ଡରାଇବାକୁ କହିଲି '..... ବାବୁ, ଏଥର ଘରେ କହିଦେବି କିମ୍ବା ବେନାମୀ ଚିଠି ପକେଇଦେବି । ଯେ ସବୁ ଭଲ କଥା ହଉନି । ଏଭଳିଆ ସ୍ତ୍ରୀ ପାଇ ଆପଣ ବାହାରେ କଣ ପାଉଛନ୍ତି ?' ଅବଶ୍ୟ ମୁଁ ଟିକିଏ ଗୁରୁତ୍ୱର ସହିତ କହୁଥିଲି ବୋଲି ଭଦ୍ରଲୋକ ମୋ ପାଖକୁ ଲାଗି ଆସି ଚପାଗଳାରେ କହିଲେ ''ଆପଣ ଏସବୁ କିଛି ବୁଝିପାରିବେନି ।



Digitized by srujanika@gmail.com

ସବୁଦିନେ ରସଗୋଲା କି ରାବିଡି ଖାଇଲେ କ'ଣ ଭଲ ଲାଗିବ ? ବରାପିଆଜୀ ଦେହ ପାଇଁ ଭଲ ନହେଲେ ପାଟିକୁ ସୁଆଦ ।'' ଏତକ କହି ଭଦ୍ରଲୋକ ଚାଲିଗଲେ ।

ମୁଁ ଜୀବନର ଏ ବିଚିତ୍ରଗତି ସମ୍ପର୍କରେ ଭାବି ମନରେ ବିରକ୍ତ ହେଉଥିଲି । ସେହି ଭଦ୍ରଲୋକଙ୍କ ପତ୍ନୀ ସ୍ୱାମୀଙ୍କୁ ଲୁଚାଇ ଶାଢୀ କିଣୁଛନ୍ତି । ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ପ୍ରତ୍ୟୟର ଏତେ ଅଭାବ ? ଏତେ ଦୂରତ୍ୱ ? କିନ୍ତୁ ତାହା ହିଁ ବୋଧେ ଜୀବନ ।

(ତା୦୨.୦୭.୧୯୮୫ରିଖ)



# ଷଣ୍ଢ ଲଢ଼େଇ

କଟକରେ ଦିନେ ରିକ୍ସାରେ ଯାଉଥିବା ସମୟରେ ରାସ୍ତାରେ ଗୋଟିଏ ସ୍ଥାନରେ ଯାନବାହନ ଚଳାଚଳ ବନ୍ଦ ହୋଇଯାଇଥିବାରୁ ରିକ୍ସାଟି ଅଟକିଗଲା । ମୁଁ ରିକ୍ସାରୁ ଓହ୍ଲାଇ କଣ ଘଟିଛି ବୋଲି ପଚାରିବାକୁ ଗଲାରୁ ଜାଣିବାକୁ ପାଇଲି ଯେ, ଷଣ୍ଢ ଲଢ଼େଇ ଚାଲିଛି । ରାସ୍ତା ମଝିରେ ଦିନଟାରେ ଷଣ୍ଢ ଲଢ଼େଇ । ଦୁଇ ପାର୍ଶ୍ୱରେ ଗାଡ଼ିମଟର ଓ ରିକ୍ସା ସବୁ ଛିଡ଼ା ହୋଇଛନ୍ତି ।

ବହୁ ଲୋକ ରାସ୍ତାର ଦୁଇ ପାର୍ଶ୍ୱରେ ଥିବା ଦୋକାନ ବାରଣ୍ଡାରେ ଛିଡ଼ା ହୋଇ ଷଣ୍ଢ ଲଢ଼େଇ ଉପଭୋଗ କରିବା ସଂଗେ ସଂଗେ ତାହାକୁ ଉତ୍ସାହିତ ମଧ୍ୟ କରୁଛନ୍ତି । ଟ୍ରାଫିକ ପୋଲିସ ମଧ୍ୟ କିଛି ଦୂରରେ ଥିବା ଛକରେ ଛିଡ଼ା ହୋଇଛି ।

ଷଣ୍ଢ ଲଢ଼େଇ ଭାଙ୍ଗି ଦେବାକୁ କେହି ଉଦ୍ୟମ କରୁ ନାହାନ୍ତି । ସମସ୍ତେ ଭୟ କରୁଛନ୍ତି । ଏହି ସମୟରେ ଗୋଟିଏ ପରିବା ଦୋକାନୀ ସାହସ କରି ପାଣି ବାଲଟିଟିଏ ଗୋଟିଏ ଷଣ୍ଢ ଉପରକୁ ଫିଙ୍ଗି ଦେଲା । ଷଣ୍ଢଟି ତତ୍‌କ୍ଷଣାତ ରାଗି ଯାଇ ବୁଲି ପଡ଼ିଲାବେଳକୁ ଦୋକାନୀ ଦୌଡ଼ି ଚାଲି ଆସିବା ସମୟରେ ବାରଣ୍ଡା ନିକଟରେ ପଡ଼ିଗଲେ । ହେଲେ ଷଣ୍ଢ ସିଆଡ଼କୁ ଆସିଲା ନାହିଁ । ଅନ୍ୟମାନେ ପାଟିତୁଣ୍ଡ କଲେ । ଷଣ୍ଢ ଲଢ଼େଇ ଭାଙ୍ଗିଲା । ରାସ୍ତା ସଫା ହେଲା ।

ଏତେ ଲୋକ ଛିଡ଼ା ହୋଇ ଷଣ୍ଢ ଲଢ଼େଇ ଦେଖୁଛନ୍ତି । ରାସ୍ତା ବନ୍ଦ । ଅଥଚ କେହି ଯାଇ ଷଣ୍ଢ ଦୁଇଟାକୁ ବାଡ଼େଇବାର ଉଦ୍ୟମ କରୁ ନାହାନ୍ତି । ଅଦ୍ଭୁତ ଏହି ଚରିତ୍ର । ବିଚାରା ଦୋକାନୀଟି ପାଣି ବାଲିଟିଏ ପକାଇ କଚଡ଼ାଟିଏ ଖାଇଲା ।

ମୁଁ ମନେ ମନେ ଭାବିଲି ଦେଶରେ ଷଣ୍ଢ ଲଢ଼େଇ ଉପଭୋଗ କଲା ଲୋକଙ୍କ ସଂଖ୍ୟା ବେଶୀ । ଅନେକ ଭୟରେ ପାଖକୁ ଯାଉ ନାହାନ୍ତି ଓ ଆଉ କେତେକ ମଜା ଦେଖିବାରେ ବ୍ୟସ୍ତ ।

ଦେଶରେ ଏବେ ଯେଉଁସବୁ ନିର୍ବାଚନ ଓ କ୍ଷମତା ଲଢ଼େଇ ଚାଲିଛି, ତାହା ଠିକ୍ ଏହି ଲଢ଼େଇ ପରି । କ୍ଷମତା ଲଢ଼େଇରେ ଦେଶର ସବୁ କାର୍ଯ୍ୟ ବନ୍ଦ ଓ ବ୍ୟାହତ ହେଉଛି । ଅଥଚ ସାଧାରଣ ଲୋକଙ୍କର ଏଥିରେ ଆଗ୍ରହ କେବଳ ଷଣ୍ଢ ଲଢ଼େଇ ଦେଖିବା ପରି । ଷଣ୍ଢଗୁଡ଼ାକୁ ବାଡ଼େଇବା ତ ଦୂରର କଥା ପାଣିବାଲଟିଏ ପକାଇବାକୁ ମଧ୍ୟ କାହାର ସାହାସ ନାହିଁ ।

ଉଚ୍ଚ ବାରଣ୍ଡା ଉପରେ ଛିଡ଼ା ହୋଇ ଷଣ୍ଢ ଲଢ଼େଇ ଉପଭୋଗ କରିବାରେ ଆମ୍ଭେମାନେ ଅଭ୍ୟସ୍ତ ।

(ତା୦୧.୦୫.୧୯୮୭ରିଖ)





Digitized by srujanika@gmail.com

# ମନ୍ତ୍ରୀଙ୍କ ଗୋଡ଼ରୁ ପୁଣ୍ୟ ଅର୍ଜନ

ଏକଦା ତତ୍କାଳୀନ ସ୍ୱାସ୍ଥ୍ୟ ମନ୍ତ୍ରୀଙ୍କର ଗୋଡ ଭାଙ୍ଗିଗଲା ଏକ ରାସ୍ତା ଦୁର୍ଘଟଣାରେ । ଖୁବ୍ ବେଶି ଗୁରୁତର ନହେଲେ ମଧ ମନ୍ତ୍ରୀଙ୍କର ଗୋଡ ହୋଇଥିବାରୁ ଏବଂ ଏ ପ୍ରକାର ଗୋଡ ଉପରେ ରାଜ୍ୟ ଛିଡ଼ା ହୋଇଥିବାରୁ ଡାକ୍ତରମାନଙ୍କର ଚିନ୍ତାର ବିଷୟ ହେଲା । ଜଣାଗଲା ଯେପରି ରାଜ୍ୟର ଗୋଡ଼ଟି ଭାଙ୍ଗିଯାଇଛି !

ମନ୍ତ୍ରୀଙ୍କର ସହଯୋଗୀ ମନ୍ତ୍ରୀ, ଅନୁରାଗୀ ଏମ୍.ଏଲ୍.ଏ. ଅନୁଯୋଗୀ ସମର୍ଥକ, ପ୍ରଶଂସକ, ପ୍ରଶାସକ, ବଟୀପେଲା ଓ ଚାମଚାଙ୍କ ସହିତ ବ୍ୟବସାୟୀ ମାନଙ୍କର ଭିଡ଼ ଜମିଲା ମନ୍ତ୍ରୀଙ୍କ ଗୋଡ଼ଟାକୁ ଦେଖିବାକୁ । ଏ ଭିଡ଼ରେ ସାଧାରଣ ଲୋକ ଅନ୍ଦର ମହଲ ପର୍ଯ୍ୟନ୍ତ ପହଞ୍ଚିଲେ ସେ ଗୋଡ଼ଟି ଦର୍ଶନ କରି ନେତ୍ର ପବିତ୍ର କରିବାକୁ ।

ଡାକ୍ତରମାନଙ୍କ ପାଇଁ ବିଶେଷ କରି ଭୁବନେଶ୍ୱରରେ ବସା ବାନ୍ଧି ଅନୁଗ୍ରହ ଭୋଗ କରୁଥିବା ଡାକ୍ତର ଓ କଟକ ମେଡ଼ିକାଲ କଲେଜର ବଡ଼, ମଝିଆଁ ଓ ସାନ ଡାକ୍ତରମାନଙ୍କର କପାଳ ଫିଟିଗଲା । ବିନା କାରଣରେ ଆପଏଣ୍ଟମେଣ୍ଟ ନଥାଇ ମନ୍ତ୍ରୀ ପୁଣି ସ୍ୱାସ୍ଥ୍ୟମନ୍ତ୍ରୀଙ୍କ (ଯାହାଙ୍କ ଅନୁଗ୍ରହ ଏକାନ୍ତ ଅପରିହାର୍ଯ୍ୟ) ଘର ଭିତରକୁ ଯାଇ ବିନା ବାଧାରେ ସେହି ଅମୂଲ୍ୟ ଗୋଡ଼ଟିର ଦର୍ଶନ, ସ୍ପର୍ଶ ସାଙ୍ଗକୁ ସୁବିଧା କରି ଗୋଡ଼ଟି ଧରିବା, ତା' ଉପରେ ହାତ ବୁଲେଇବା ଓ ଦରକାର ହେଲେ ଟେକିବାର ଏକ ଅପୂର୍ବ ସୁଯୋଗ ମିଳିଲା ।

ହଲିଉଡ୍‌ର ଚିତ୍ରତାରକା ସ୍ୱର୍ଗତା ମାରିଲିନ ମନରୋଙ୍କ ଗୋଡର ଭଣ୍ଡା ଦୁଇଟି ସେତେବେଳର ଶସ୍ତା କାଳରେ କୁଆଡେ ପନ୍ଦର କି କୋଡ଼ିଏ ନିୟୁତ ଡଲାର ମୂଲ୍ୟରେ ଇନସୁରାନ୍ସ ହୋଇଥିଲା । ନିୟୁତ ମାନେ ଦଶ ଲକ୍ଷ । କୋଡ଼ିଏ ନିୟୁତ ହେଲା ଦୁଇଶ ଲକ୍ଷ । ଅର୍ଥାତ୍ ଦୁଇ କୋଟି । ସେତେବେଳେ ଡଲାରର ଆନୁପାତିକ ମୂଲ୍ୟ ଥିଲା ପ୍ରାୟ ପାଞ୍ଚଟଙ୍କା । ତେଣୁ ଗୋଡ ଦୁଇଟିର ମୂଲ୍ୟ ଥିଲା ଦଶ କୋଟି ଟଙ୍କା । ଆଜିର ଡଲାର ମୂଲ୍ୟ ଅନୁସାରେ ହେବ ୨୫ କୋଟି ଟଙ୍କାରୁ ଊର୍ଦ୍ଧ୍ୱ । ଯଦି ଜଣେ ଚିତ୍ର ଅଭିନେତ୍ରୀଙ୍କ ଗୋଡର କେବଳ ଭଣ୍ଡା ଦୁଇଟିର ଦାମ ପଚିଶ କୋଟି ଟଙ୍କା ହୁଏ ତେବେ ଆଜିର ମନ୍ତ୍ରୀଙ୍କର ମୂଲ୍ୟବାନ ଗୋଡଟିର ଦାମ୍ କେତେ ହୋଇପାରେ ସାଧାରଣ ପାଠକ ବିଚାର କରନ୍ତୁ ଓ ହିସାବ କରନ୍ତୁ ।

ହଁ ଡାକ୍ତରମାନଙ୍କର ମନ୍ତ୍ରୀଙ୍କ ଗୋଡ ନେଇ ଏ ଯେଉଁ ପ୍ରତିଯୋଗିତା ଚାଲିଲା ତାହା କ୍ରମେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତାରେ ପରିଣତ ହୋଇଗଲା । ସେ ଗୋଡ଼ଟି ପୁଣି ପ୍ଲାଷ୍ଟର ଦିଆ ହୋଇ ବନ୍ଧା ହୋଇଛି । କିଏ କେତେଥର ସେ ଗୋଡ଼ଟିକୁ ସ୍ପର୍ଶ କରିପାରିବ, କିଏ କେତେଥର ଟେକିପାରିବ ଓ କିଏ କେତେଥର ସାଉଁଳେଇ ପାରିବ ତାହା ଉପରେ ବଦଳି ଓ କ୍ୟାରିଅର ଇତ୍ୟାଦିର ଭବିଷ୍ୟତ ଗଢ଼ା ହେବାର ଯୋଜନା ।

ଧଳା ପ୍ଲାଷ୍ଟରଟି ଡାକ୍ତରମାନଙ୍କ ସଫା ହାତ ବାଜି ବାଜି ମଇଳା ଦେଖାଗଲା ଯେମିତି କି କେତେବର୍ଷ ହେଲା ସେ ପ୍ଲାଷ୍ଟରଟା ମନ୍ତ୍ରୀଙ୍କ ଗୋଡ ଅଳଙ୍କୃତ କରିରହିଛି । ଡାକ୍ତରମାନେ ନିଜର ପିଲାପିଲିଙ୍କୁ (ଅର୍ଥାତ୍ ପତ୍ନୀ) ଧରି ମନ୍ତ୍ରୀଙ୍କୁ ଦେଖିବାକୁ ଆସିଲେ । ଡାକ୍ତରାଣି ମନ୍ତ୍ରୀଙ୍କ ଅନ୍ଦର ମହଲରେ ପଶି ମ୍ୟାଡାମ୍‌ଙ୍କ ସହିତ ଦେଖା କରିବା, ଚିହ୍ନା ପରିଚୟ କରିନେବାର ଏପରି ସୁଯୋଗ କ'ଣ ସହଜରେ ଆଉ ଆସିବ ?



Digitized by srujanika@gmail.com

କଚ୍ଚନା-ଜଚ୍ଚନା, ଯୋଜନା ବିଚାର, ଷଡଯନ୍ତ୍ର, ଫୁସଲା ଫୁସଲି ବି ଆରମ୍ଭ ହୋଇଗଲା ମନ୍ତ୍ରୀଙ୍କ ପ୍ଲାଷ୍ଟର କେଉଁଦିନ ଖୋଲା ହେବ । ବଡ଼ ଡାକ୍ତର ବିଶେଷ କରି ହାଡଭଙ୍ଗା ଡାକ୍ତରମାନଙ୍କର ଯୋଗାଡ ଗୋପନରେ ଓ ପ୍ରକାଶରେ ମନ୍ତ୍ରୀଙ୍କ ପି.ଏ., ପି.ଏସ୍., ଓ ପାଖ ଲୋକଙ୍କ ଚାରିପଟେ ଚାଲିଲା । କିଏ ମନ୍ତ୍ରୀଙ୍କ ପ୍ଲାଷ୍ଟର ଖୋଲିବ ? କେଉଁଦିନ ପ୍ଲାଷ୍ଟର ଖୋଲାଯିବ ? ଯେମିତି କି ପୋଲ, ପାଇଖାନା, ବନ୍ଧ, କଲଭର୍ଟ, କୋଠାବାଡି ଉଦ୍‌ଘାଟନ ହୁଏ ସେହିପରି ପ୍ଲାଷ୍ଟର ଖୋଲାଯାଇ ଗୋଡ ଉଦ୍‌ଘାଟନ ହେବ ।

ସମସ୍ତଙ୍କର ଯୋଜନା ମନ୍ତ୍ରଣା ଯେ ସେ କିପରି ପ୍ଲାଷ୍ଟରକଟା ଉତ୍ସବରେ ପ୍ରତ୍ୟୁଷରୁ ଅନ୍ୟମାନଙ୍କୁ ପଛରେ ପକାଇ ମନ୍ତ୍ରୀଙ୍କ ଗୋଡ ପାଖରେ ପହଂଚିପାରିବେ । ଅନେକ ଡାକ୍ତର ସଠିକ୍ ଖବର ପାଇ ପାରିଲେନି ଅସଲ ଦିନର । ତଥାପି ପ୍ଲାଷ୍ଟରକଟା ଦିନ ମନ୍ତ୍ରୀଙ୍କ ବାରଣ୍ଡା, ପୋର୍ଟିକୋ, ଅଫିସ କୋଠରୀ ଆଦି ଅନ୍ଦିକନ୍ଦିରେ ଅତି ଭୋରଟାରୁ ଗହଳି ହୋଇଗଲା । ଯେମିତି କାର୍ତ୍ତିକ ପୂର୍ଣ୍ଣମୀ ପରଦିନ ଛାଡ଼ଖାଇ ପାଇଁ ମିଆଁର ମାଂସକଟା ପାଖରେ, ନିର୍ବାଚନ ପୂର୍ବରୁ ଟିକେଟ ବଣ୍ଟା ହେଲା ବେଳେ ଯେମିତି ଶାସକ ଦଳ ଅଫିସରେ କି ମୁଖ୍ୟମନ୍ତ୍ରୀଙ୍କ ପାଖରେ ଭିଡ଼ ଜମେ ସେମିତିଆ ଭିଡ଼ ।

ଡାକ୍ତରଙ୍କ ହାତରେ କତୁରୀ (କଟୁରୀ ନୁହେଁ) ଓ ସାଙ୍ଗରେ ଛୋଟ ଡାକ୍ତର ଓ ମେଲ ନର୍ସ । ଶେଷରେ ଯେତେବେଳେ ସମୟ ଆସିଲା ଡାକ୍ତରଙ୍କ ଗୋଡ ପାଖରେ ନିମିଷକେ କେତେଟା ହାତପଶିଗଲା ଠିକଣା ନାହିଁ । ଏତେ ଭିଡ ଯେ କିଏ ପ୍ଲାଷ୍ଟର କାଟିଲା ଜାଣିବା ମୁସ୍କିଲ୍ । ମନ୍ତ୍ରୀ ନିଜେ ମଧ୍ୟ ଜାଣିପାରିଲେନି । ଡାକ୍ତରମାନେ ବି ନିଜେ ଜାଣିପାରିଲେନି । ପ୍ଲାଷ୍ଟର ଖୋଳପାଟା ବି ଟଣା ଭିଡାରେ ବିଦୀର୍ଣ୍ଣ ହୋଇଗଲା । ଯାହା ହାତରେ ବଡ଼ ପ୍ଲାଷ୍ଟର ଖଣ୍ଡିଏ ରହିବ ସେ ସାବାସୀ ନେବ । ସମସ୍ତଙ୍କର ପୁଣ୍ୟ ଅର୍ଜନ ହେଲା ।

(ତା୦୫.୧୧.୧୯୮୭ରିଖ)





Digitized by srujanika@gmail.com

# ହିନ୍ଦି ମେ ବୋଲୋ

ଜଣେ ଭଦ୍ରଲୋକ ମାଟ୍ରିକ୍ ପାସ କଲା ପରେ ଉତ୍ତର ପ୍ରଦେଶର କୌଣସି ଏକ ବଡ଼ ସହରରେ ବହୁଦିନ ରହି ଏଠାକୁ ଫେରିଆସି ବସବାସ କରୁଛନ୍ତି । ହିନ୍ଦିଭାଷୀ ଅଞ୍ଚଳରେ ସେ ଏମ୍‌ଏ ପର୍ଯ୍ୟନ୍ତ ପଢ଼ିଲା ପରେ ସେଠାରେ ଅନେକ ବର୍ଷ ବ୍ୟବସାୟ କରୁଥିଲେ । କଥାବାର୍ତ୍ତାରେ ତେଣୁ ଏବେ ଓଡ଼ିଆ ଅଂଶ ଶତକଡ଼ା ୪୦ ଏବଂ ହିନ୍ଦି ୬୦ । ଅନେକ ସମୟରେ ଓଡ଼ିଆରେ କୌଣସି କଥାକୁ ପ୍ରକାଶ କରିବାରେ ଅସୁବିଧା ହେଲେ ପୁରା ବାକ୍ୟଟି ହିନ୍ଦିରେ କହିପକାନ୍ତି ଅଜାଣତରେ ।

କିନ୍ତୁ ଏଠାରେ ଚଳିବାରେ ତାଙ୍କର ଆମ ଓଡ଼ିଆମାନଙ୍କଠୁ ସୁବିଧା ବେଶୀ ହେଉଛି । ଆପଣ ହୁଏତ ଆଶ୍ଚର୍ଯ୍ୟ ହେବେ, କିନ୍ତୁ କଥାଟା ସତ ।

କେବଳ ଗୋଟିଏ ଦିନର କଥା ଶୁଣନ୍ତୁ । ତାଙ୍କର ରେଡ଼ିଓଟି ଖରାପ ହୋଇଗଲା । ତାଙ୍କ ବ୍ୟବସାୟ ପ୍ରତିଷ୍ଠାନରେ କାମ କରୁଥିବା ଜଣେ କର୍ମଚାରୀ ହାତରେ ରେଡ଼ିଓଟି ମରାମତ କରିବାକୁ ପଠାଇଲେ । କର୍ମଚାରୀଙ୍କୁ ରେଡ଼ିଓ ଦୋକାନୀ ମରାମତ ବାବଦରେ ୪୦ ଟଙ୍କା ଖର୍ଚ୍ଚ ହେବ ବୋଲି କହିବାରୁ ସେ ଫେରି ଆସିଲେ ।

ଭଦ୍ରଲୋକ ପରେ ରେଡ଼ିଓଟି ନିଜେ ନେଇ ସେହି ରେଡ଼ିଓ ଦୋକାନକୁ ଗଲେ ଏବଂ ହିନ୍ଦିରେ କଥାବାର୍ତ୍ତା କଲେ । ଆପଣ ବିଶ୍ୱାସ କରି ନପାରନ୍ତି । ମାତ୍ର ୫ଟି ଟଙ୍କାରେ ରେଡ଼ିଓ ମରାମତି ହୋଇଗଲା ।

ଅନେକ ସମୟରେ ଏହି ହିନ୍ଦିଭାଷୀ ଓଡ଼ିଆ ଲୋକ ବଜାରରେ ଦୋକାନରେ ଆମ ଖାସ ଓଡ଼ିଆ ଭାଷୀ ଲୋକଙ୍କ ଠାରୁ ଅଗ୍ରାଧିକାର ପାଉଛନ୍ତି । ଯେ କୌଣସି ଦୋକାନରେ (ଓଡ଼ିଆ କିମ୍ୱା ଅଣଓଡ଼ିଆ ଉଭୟ ମାଲିକାନାର ଦୋକାନରେ) ଓଡ଼ିଆମାନେ କିଣା କିଣି କରିବାକୁ ପଶିଥିବେ । ଗୋଳମାଳ ଭିତରେ ଦୋକାନୀ କିମ୍ୱା ଦୋକାନ କର୍ମଚାରୀମାନେ ଓଡ଼ିଆଭାଷୀଙ୍କୁ ଏତେ ବେଶୀ ଗୁରୁତ୍ୱ ଦେଇ ଆଟେଣ୍ଡ କରୁନଥିବେ । ଏ ଭଦ୍ରଲୋକ ପହଞ୍ଚି ଓଡ଼ିଆ କିମ୍ୱା ହିନ୍ଦି ମିଶା ଓଡ଼ିଆ କିମ୍ୱା ଓଡ଼ିଆ ମିଶା ହିନ୍ଦି କିମ୍ୱା କେବଳ ହିନ୍ଦିରେ ଜିନିଷ ମାଗିଲେ ଚଟକିନା ଦୋକାନୀ ଯା'ଙ୍କ ଆଡ଼କୁ ମୁହାଁଉଛନ୍ତି ।

ଦୋକାନୀମାନଙ୍କର ଧାରଣା ଯେ ଏ ଭଦ୍ରଲୋକ ହିନ୍ଦିଭାଷୀ ଅଞ୍ଚଳର ଲୋକ । ଓଡ଼ିଶାରେ ରହିଲେଣି । ତେଣୁ ସେ ବାହାରର ଦରଦାମ୍ ବିଷୟ ଜାଣିଛନ୍ତି । ତାଙ୍କୁ ବେଶୀ ଦାମ୍‌ରେ ଜିନିଷ ବିକି ହେବନି । ତା'ଛଡ଼ା ଗୋରା ଲୋକଙ୍କୁ 'ସାହେବ'ଟାଏ ଭାବି ଆମେ ଯେମିତି ବଲ ବଲ କରି ଚାହୁଁ ଏବଂ ମନେ ମନେ ଅଜାଣତରେ ସମ୍ମାନ କରି ପକାଉ ସେମିତି ଜଣେ ହିନ୍ଦି ଭାଷୀ (ଓଡ଼ିଆ ହେଲେ ବି) ଲୋକଙ୍କୁ ଆପଣା ଆପେ ସୁବିଧା ମିଳିଯାଉଛି ।

ପାର୍ଲିଆମେଣ୍ଟରେ ହିନ୍ଦି ଭାଷୀ ଅଞ୍ଚଳର ସଭ୍ୟମାନେ ଅନେକ ସମୟରେ ଅଣ ହିନ୍ଦି ଭାଷୀମାନଙ୍କୁ 'ହିନ୍ଦି ମେ ବୋଲୋ' ବୋଲି କହୁଥିବା କଥାର ତାତ୍ପର୍ଯ୍ୟ ଅଛି ନିଶ୍ଚୟ ।

(ତା୧୫.୧୧.୧୯୮୨ରିଖ)





Digitized by srujanika@gmail.com

# ପ୍ରଫେସରଙ୍କ ଚଷମା ଓ ବଙ୍କା ଟେବୁଲ

ପ୍ରଫେସର ଜୈନ ଅଫିସରୁ ଘରକୁ ଆସିଲେ ମଧ୍ୟାହ୍ନ ଭୋଜନ ପାଇଁ । ପ୍ରତିଦିନ ଯେମିତି ଆସନ୍ତି, ସେମିତି । ହଠାତ୍ ଡାଇନିଂ ଟେବୁଲ୍ ଉପରେ ଆଖିପଡ଼ିଲା । ଟେବୁଲ ଉପରଟା ବଙ୍କା ହୋଇ ଲେପେଟେଇ ପଡ଼ିଛି । ଟେବୁଲ୍‌ର ଗୋଟାଏ ଗୋଡ଼ ଯେମିତି ଭାଙ୍ଗିଯାଇଛି କିମ୍ବା ଟେବୁଲ୍ ଉପର ପଟାଗୁଡ଼ାକ ଯେପରି ଚେପ୍‌ଟା ହୋଇ ଦବି ଯାଇଛି ।

ବିରକ୍ତ ହେଲେ ପ୍ରଫେସର ଜୈନ । 'ଟେବୁଲ୍‌ଟାକୁ ଏମିତି ବଙ୍କା କଲା କିଏ' ? ଟାଣ ଗଳାରେ ପଚାରିଲେ ସେ ।

ପତ୍ନୀ ଆସି ଟେବୁଲ୍‌ଟିକୁ ଅନେଇ ଦେଖିଲେ ଠିକ୍ ଅଛି । କହିଲେ 'ଟେବୁଲ୍‌ଟା ବଙ୍କା କୋଇଠି ହୋଇଛି' ?

ପ୍ରଫେସର ବିରକ୍ତ ହୋଇ କହିଲେ 'ତମ ଆଖିକୁ ତ କିଛି ଦେଖାଯାଏନା' ଖାଇବା ଟେବୁଲ୍‌ଟା ଏମିତି ବଙ୍କା କଲା କିଏ ?

ଶ୍ରୀମତୀ ଜୈନ ପୁଣି ନିରେଖି  କରି ଦେଖିଲେ ଟେବୁଲ୍‌ଟାକୁ ନଇଁପଡ଼ି ତଳପଟେ ଅନେଇ ଦେଖିଲେ । ତାଙ୍କୁ ଟେବୁଲ୍‌ଟା ମୋଟେ ବଙ୍କା ଦିଶୁନାହିଁ । ସେ ଆବା କାବା ହୋଇ ସ୍ୱାମୀଙ୍କ ମୁହଁକୁ ଅନାଇଲେ ।

ଖାଇବା ବେଳ । ପିଲାମାନେ ମଧ ଖାଇବା ଟେବୁଲ୍ ପାଖରେ ଜମା ହେଲେଣି । ରୋଷେୟା ପିଠାମ୍ବର ମଧ ଟେବୁଲ୍ ତଳେ ପଶି ବଙ୍କାର କାରଣ ଅନୁସନ୍ଧାନ କରୁଛି । କିନ୍ତୁ ପ୍ରଫେସରଙ୍କ ଛଡ଼ା ଆଉ କେହି ଟେବୁଲ୍‌ର ବଙ୍କାପଣ ଦେଖିପାରୁ ନାହାନ୍ତି ।

ଖାଇବା ବଢ଼ା ହେଲା ପ୍ରଫେସର ଚଷମା କାଢ଼ି ଟେବୁଲ୍‌ରେ ଖାଇଲେ । ହଠାତ୍ ଦେଖିଲେ ଯେ ଟେବୁଲ୍‌ଟା ସିଧା ହୋଇଗଲାଣି । ଆଶ୍ଚର୍ଯ୍ୟ କଥା । କ'ଣ କିଛି ଯାଦୁ ହେଉଛି ନା କ'ଣ ? କହିଲେ, ନାହିଁତ, ଟେବୁଲ୍‌ଟା ତ ଠିକ୍ ଅଛି ? କ'ଣ ତା'ହେଲେ ...?

ପତ୍ନୀଙ୍କୁ କଥାଟା ବୁଝିଲା ବୋଧେ । କହିଲେ ତମ ନୂଆ ଚଷମାଟା ଖରାପ ଅଛି କି ? ଦେଖିଲ ଆଖିରେ ଦେଇ-

ପ୍ରଫେସର ଚଷମା ଲଗେଇ ଦେଖିଲେ ଟେବୁଲ୍‌ଟା ପୁଣି ବଙ୍କା ହୋଇଗଲାଣି । ଚଷମା କାଢ଼ି ଦେଖିଲେ ଟେବୁଲ୍ ଠିକ୍ ଅଛି ।

ପ୍ରଫେସର ବିସ୍ମୟରେ ଅନ୍ୟମାନଙ୍କୁ ଚାହିଁଲେ । କହିଲେ ହଁ ଚଷମାଟା ଖରାପ ହେଇଛି ।

ସଂଧ୍ୟାବେଳେ ଚଷମା ଦୋକାନକୁ ଗଲେ ପ୍ରଫେସର ଜୈନ ଓ ଶ୍ରୀମତୀ ଜୈନ । ଚଷମା ଦୋକାନୀ କିନ୍ତୁ ତାଙ୍କ ଚଷମା ଖରାପ ଅଛି ବୋଲି ମାନିବାକୁ ନାରାଜ । ତା'ର ମତହେଲା ଆଖି ଡାକ୍ତର ପରୀକ୍ଷା କଲାବେଳେ ଭୁଲ୍ କାଚ ଲେଖିଛନ୍ତି ।

ପୁଣି ଗଲେ ପ୍ରଫେସର ଆଖି ଡାକ୍ତରଙ୍କ ପାଖକୁ । ପ୍ରସିଦ୍ଧ ଚକ୍ଷୁ ଚିକିତ୍ସକ ପ୍ରଫେସର ଜୈନଙ୍କ ଠାରୁ ସବୁ କଥା ଶୁଣି କହିଲେ- ହଉ, ଆଣନ୍ତୁ ଚଷମାଟା । ପରୀକ୍ଷା କରି ଦେଖିବା ମୋ ଡାକ୍ତରୀ ବିଦ୍ୟା ଭୁଲ୍ ନା ଦୋକାନୀର କାଚ ଭୁଲ୍ ।



Digitized by srujanika@gmail.com

ପରୀକ୍ଷା କରି ଡାକ୍ତର ନିଶ୍ଚିତ ଗଳାରେ କହିଲେ 'ଆଜ୍ଞା ଏ କାଚ ଏକଦମ୍ ସବ୍‌ଷ୍ଟାଣ୍ଡାର୍ଡ଼' । ତାଙ୍କୁ କହନ୍ତୁ କାଚ ବଦଳାଇ ଠିକ୍ କାଚ ଦେବ । ନଚେତ୍ ତା' ଦୋକାନ ବ୍ଲାକ୍ ଲିଷ୍ଟେଡ୍ ହେବ' ।

ଦୋକାନୀ ସବୁକଥା ଶୁଣି ଚଷମା ରଖିଲା । ତା' ପରଦିନ ପୁଣି ନୂଆ ଚଷମା ଆସିଲା । ଏଥର କିନ୍ତୁ ଟେବୁଲ ବଙ୍କା ଦିଶିଲାନି ।

(ତା୯.୫.୧୯୮୨ରିଖ)



# ଆତିଥ୍ୟରେ ସାବଧାନତା

ସାଧାରଣତଃ ଘରକୁ କେହି ଅତିଥି ଆସିଲେ ତାଂକୁ ଚାହା ଜଳଖିଆ କିମ୍ବା ଖରାଦିନେ ସରବତ ଦିଆଯାଏ । ଅତିଥିଙ୍କୁ ଆପ୍ୟାୟିତ କଲାବେଳେ ତାଂକୁ ଗାଡିରେ ଆଣିଥିବା ଡ୍ରାଇଭର କଥା ଆତିଥ୍ୟ ପାଇଁ ମନେପଡେ ନାହିଁ । ବାବୁ କମ୍ବା ସାହେବ ଦୁଇତିନି ଘଣ୍ଟା ଭିତରେ ବସିଲେବି ଡ୍ରାଇଭର କଥା ମନକୁ ଆସେ ନାହିଁ । ଆସିଲେ ବି ସମ୍ମାନ ଦୃଷ୍ଟିରୁ ଅନେକ ଘରେ ଡ୍ରାଇଭରକୁ ଆତିଥ୍ୟ ଅନ୍ତର୍ଭୁକ୍ତ କରିବା କଥା ଉଚିତ ମନେ କରନ୍ତି ନାହିଁ ।

ଆମରତ ସମାଜବାଦୀ ଘର । ତେଣୁ ଆମର ଚେଷ୍ଟା ଘରେ ପିଲାମାନେ ଓ ଆମେ ଯାହା ଖାଇବୁ ତାହା ଆମ ଚାକର ମଧ ଖାଇବ । ବେଳେ ବେଳେ ଚାକର ଭାଗରେ ବରଂ ବେଶୀ ପଡେ ।

ଏହି ଦର୍ଶନରେ ଅଧିକାଂଶ ସମୟରେ (ସବୁ ସମୟରେ ଅମନଯୋଗିତା କାରଣରୁ ହୋଇପାରେନା) ଆମ ଘରକୁ ଆସିଥିବା ବାବୁଙ୍କ ଡ୍ରାଇଭରକୁ ଚା' ନିଶ୍ଚୟ ଦିଆଯାଏ । ସମ୍ଭାବନା ଥିଲେ ଜଳଖିଆବି ।

ସେ ଦିନ ସେମିତି ଜଣେ ଆସିଥିଲେ । ଡ୍ରାଇଭରକୁ ମଧ ଚା' ଦିଆଗଲା । ଗପସପ ସରିଲା ଅତିଥିଙ୍କୁ ବଳେଇ ଦେବାକୁ ଗଲୁ । ସାଧାରଣତଃ ଡ୍ରାଇଭରମାନେ ଚା' ଖାଇସାରି କପ୍‌ପ୍ଲେଟ କିମ୍ବା ଜଗ ବାହାର ପୋର୍ଟିକୋରେ ଥିବା ସିମେଣ୍ଟ ବେଞ୍ଚ ଉପରେ ରଖିଦିଅନ୍ତି । ସେ ଦିନ କିନ୍ତୁ ଚା' କପଟି ସେଠାରେ ଦୃଶ୍ୟ ହେଲା ନାହିଁ । ଇଚ୍ଛା ହେଉଥିଲା ଡ୍ରାଇଭରକୁ ପଚାରିବାକୁ ଯେ ଚା' କପ୍‌ଟି ସେ କେଉଁଠି ରଖିଲା । କିନ୍ତୁ ସମ୍ମାନ ଦୃଷ୍ଟିରୁ ହେଉ ବା ଲଜ୍ଜା ହେତୁ ହେଉ ପଚାରି ହେଲାନି । ତେଣୁ ଡ୍ରାଇଭର ଜଣକ ଚା' କପଟିକୁ ନେଇ ଚାଲିଗଲା । ହୁଏତ ଅସାବଧନାତାରୁ ସେ ଏହା କଲା । ନା ଜାଣିଶୁଣି ?

ଆମ ଘରେ ଆଲୋଚନା ହେଲା । ଏଥର ଆଉ ଡ୍ରାଇଭର ମାନଙ୍କୁ ଚା' ଦିଆଯିବ ନାହିଁ । ନାଁ - ସେଇଟା ଭୁଲ ହେବ । ବରଂ ଚାକରକୁ ତାଗିଦ କରି ଚା' କପଟି ଫେରାଇ ଆଣିବାକୁ ସେ ସେଠାରେ ଠିଆ ହୋଇ ରହିବ । ଜଣେ ଡ୍ରାଇଭରର ଭୁଲ ପାଇଁ ସମସ୍ତେ କାହିଁକି ବଂଚିତ ହେବେ ?

କାଲି ଖରାବେଳେ ସେମିତି ଆତିଥ୍ୟ ସହାରରେ ସରବତ ଗ୍ଲାସେ ଡ୍ରାଇଭର ପାଖକୁ ଗଲା । ମୁଁ ଅତିଥିଙ୍କ ଶୁଣାତରେ କହିଲି ଚାକର ଉଦ୍ଦେଶ୍ୟରେ 'ଆରେ ଗ୍ଲାସ୍‌ଟି ଫେରେଇ ଆଣିବୁ ।''

(ତା୨୧.୦୫.୧୯୮୨ରିଖ)





Digitized by srujanika@gmail.com

# ରେଣୁକା ହୋଟେଲ୍ ଜିନ୍ଦାବାଦ୍

ଏହି ସ୍ତମ୍ଭରେ କେତେଦିନ ତଳେ କୋଣାର୍କର ସରକାରୀ ଡାକବଙ୍ଗଳାର ଖାନସାମା ସାହେବଙ୍କ ପଇସା ବରବାଦ୍ କଥା ଲେଖିଥିଲି । ସେଦିନ ସଂଧ୍ୟାବେଳେ ଡାକବଙ୍ଗଳାରେ ରୋଷେଇ କରି ଖାଇବାକୁ ଅସମର୍ଥ ହେବା ପରେ ବାହାରକୁ ବାହାରିଲା ବେଳକୁ ଖାନସାମା ପରାମର୍ଶ ଦେଲେ ଯେ, 'ଆଜ୍ଞା ସାମ୍ନା ରାସ୍ତାରେ ଅନେକ ହୋଟେଲ୍ ଅଛି । କିନ୍ତୁ ରାତି ପାଇଁ ବରାଦ ନଦେଲେ ଅସୁବିଧା ହେବ । ଦିନରେ ଟୁରିଷ୍ଟମାନେ ଆସି ଫେରିଗଲେ ହୋଟେଲ୍ ବାଲା ବିନା ବରାଦରେ ଆଉ ରୋଷେଇ କରନ୍ତି ନାହିଁ ।

କେତେସବୁ ହୋଟେଲ ଆମେ ଦିନରେ ଦେଖିଗଲୁ । ଓଡ଼ିଶା ସରକାରଙ୍କ 'ପାନ୍ଥ ନିବାସ' ଓ ଭାରତ ସରକାରଙ୍କ 'ଟ୍ରାଭେଲର୍ସ ଲଜ୍' ଆଦି ମଧ ରହିଛି । ଖାଇବାର ସ୍ୱାଦ ଯାହା ହେଉ ପଛେ ଦାମ୍ ବେଶୀ । ଆମର କୌଣସି ଛୋଟ ହୋଟେଲ୍ ଯାହାର ଆଜିକାଲି ନାମ 'ଝୋପଡ଼ି ହୋଟେଲ୍' ଦିଆଯାଇଛି ସେପରି କୋଉଠି ଖାଇବାକୁ ଇଚ୍ଛା । କିନ୍ତୁ ଦିନରେ ଏହିପରି ଏକ ହୋଟେଲ୍‌ରେ ତିରିଶ ଟଙ୍କା ଦେଇ ବାଜେ ଖାଦ୍ୟ ଖାଇଥିଲୁ । ସେଥିପାଇଁ ମନରେ ଶଙ୍କା ।

ଚାଲୁ ଚାଲୁ ଓଡ଼ିଶା ସରକାରଙ୍କ 'ପାନ୍ଥ ନିବାସ'ର ଗେଟ୍‌ର ଠିକ୍ ସାମ୍ନାରେ ଦେଖିଲୁ 'ରେଣୁକା ହୋଟେଲ୍' । ଛେନାଗଜା ତିଆରି ହେଉଛି । ପଚାରିଲୁ କ'ଣ ଖାଲି ଜଳଖିଆ ମିଳେ ନା ମିଲ୍ ମଧ ହୁଏ । ଉତ୍ତର ମିଳିଲା 'ବରାଦ ଦେଲେ ମିଲ୍ ମଧ ମିଳିବ' ।

'ଆମର ରୁଟି ଆଉ ସନ୍ତୁଳା ଦରକାର' ମୁଁ କହିଲି । 'ମିଳିବ' ?

'ହଁ ମିଳିବ । ଆଳୁ ପୋଟଳ କଷା ହୋଇପାରିବ' ।

ଦର କଷାକଷି ହେଲା । ରୁଟି ଖଣ୍ଡକୁ କୋଡ଼ିଏ ପଇସା । ତରକାରୀ ପ୍ଲେଟକୁ ଟଙ୍କାଏ କୋଡ଼ିଏ ପଇସା । ଆମେ ଦିନବେଳା ତରକାରୀ ପ୍ଲେଟ ଟଙ୍କାକରେ ଖାଇଥିଲୁ । କିନ୍ତୁ ହୋଟେଲ୍ ମାଲିକ ଟଙ୍କାକରେ ତରକାରୀ ପ୍ଲେଟ ଦେବାକୁ ଅନିଚ୍ଛୁକ । ତେଣୁ ଆମେ ରାଜି ହେଲୁ । କିନ୍ତୁ କଥା ହେଲା ଯେ, ସେ ରାଗ ନଦେଇ ଆଳୁ, କଖାରୁ, ଜହ୍ନି ଓ ବାଇଗଣ, ସାରୁ ଆଦି ମିଶାଇ କାଦୁଅ କାଦୁଅ ସନ୍ତୁଳା କରିବେ । ଯେମିତି ଘରେ ହୁଏ । ରୁଟି ପାଇଁ ଅଟା ଦଳି ରଖିଥିବେ । ଆମେ ଆସିଲେ ଗରମ ରୁଟି ସେକି ଦେବେ । ଯେମିତି ଆମ ଘରେ ଖାଉ । ହୋଟେଲ୍ ମାଲିକ ରାଜି । ଆଡ଼ଭାନ୍ସ ଦେବା କଥା କହିଲି । ହୋଟେଲ୍ ମାଲିକ ମନାକଲେ ।

ଆମେ ରାତି ଆଠଟା ବେଳକୁ ପହଞ୍ଚିଲୁ । ଗରମ ରୁଟି ତିଆରି ହେଲା । କଦଳି ପତ୍ରରେ ଗରମ ଗରମ ସନ୍ତୁଳା ବଢ଼ାହେଲା । ଆମେ ଖାଇଲୁ । ଏମିତିଆ ସନ୍ତୁଳା ମୋ ଜୀବନରେ ମୁଁ ଆଉ ଦି'ଚାରିଥର ଖାଇଥିବି । ସମସ୍ତେ ଖୁସି । ଆମେ ସାତଜଣ ମିଶି ଖାଇଲୁ ସତେଇଶଟି ରୁଟି । ସାତ ପ୍ଲେଟ ତରକାରୀ ହିସାବରେ ହେଲା କିନ୍ତୁ ଦ୍ୱିତୀୟ ଥର ମଧ ତରକାରୀ ମିଳିଲା । ଯେମିତି ଘରେ ମିଳେ । ମୋଟ ବିଲ୍ ହେଲା ତେରଟଙ୍କା ଅଶିପଇସା । ଅଶିପଇସା କାଟିଦେଇ ମାଲିକ ନେଲେ ମାତ୍ର ତେରଟଙ୍କା । ଆମ ମନରେ ଅପାର ସନ୍ତୋଷ ।



Digitized by srujanika@gmail.com

ତହିଁ ପରଦିନ ସକାଳେ ପୁରୀ ତରକାରୀ । ସେମିତି ଗରମ ସୁଆଦିଆ ଦିନ ବେଳା ପୁଣି ଭାତ, କୋଳଥ ଡ଼ାଲି (ଆମ ବରାଦ ଅନୁଯାୟୀ) ତରକାରୀ, କଦଳୀ ଭଜା, ବାଇଗଣ ଭଜା, ଖଟା, ଶାଗ, ହରଡ଼ ଡ଼ାଲି ଯିଏ ଯାହା ଚାହିଁଲା । ଆଳୁ ପୋଟଳ ତରକାରୀ ଅରୁଆ କିମ୍ବା ଉସୁନା ଭାତ ଯିଏ ଯାହା ଚାହିଁଲା । ମନଭରି ଯାହା ଖାଇଲୁ ପଛରେ ମାଗି ଚାହିଁଲୁ ଖାଇଲୁ । ରାତି, ସକାଳ ଦିନର ତିନିବଖତ ଭୋଜନରେ ଆମ ସାତଜଣଙ୍କ ପାଇଁ ଖର୍ଚ୍ଚ ହେଲା ମୋଟରେ ଏକଷଠୀ ଟଙ୍କା । ଭଲ ବ୍ୟବହାର ।

ମାଲିକଙ୍କ ସହିତ ଆଳାପ ହେଲା । ଗୁଣନିଧି ନାୟକ । କଲିକତାରେ କୋଡ଼ିଏ ବର୍ଷ ଥିଲେ । ଘରୁଆ ରୋଷେଇ । ବନ୍ଧୁ ବାନ୍ଧବ କି ନିଜ ଘରଲୋକଙ୍କ ପରି ସେମିତି ସ୍ନେହ, ସେମିତିଆ କଥାବାର୍ତ୍ତା ।

ଯିଏ କୋଣାର୍କ ଯିବେ ସିଏ ଘରପରି ଅଳ୍ପ ପଇସାରେ ଭଲ ଖାଇବାକୁ ଚାହିଁଲେ ରେଣୁକା ହୋଟେଲ୍‌କୁ ଯାଆନ୍ତୁ ବୋଲି ମୁଁ ତ' ନିଶ୍ଚୟ ସୁପାରିଶ୍ କରିବି ।

(ତା୦୮.୧୧.୧୯୮୨ରିଖ)





Digitized by srujanika@gmail.com

# ନିଳି କେମିତି କିରଣ ହେଲା

କଟକ ବଡ ଡାକ୍ତରଖାନା ପରିସରରେ ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲି । ମୁଁ ପହଞ୍ଚିଲା ବେଳକୁ ବନ୍ଧୁଙ୍କ ଘରେ କେତେଜଣ ଅତିଥି ମହଜୁଦ ଥିଲେ । ଡ୍ରଇଂ ରୁମରେ ବନ୍ଧୁଙ୍କର ବନ୍ଧୁ ଜଣେ ଓ ତାଂକ ସାଙ୍ଗରେ ଆଉ ତିନିଜଣ ସହଯାତ୍ରୀ । କଟକ ବାହାରୁ ଆସିଛନ୍ତି ।

ମତେ ଭିତର ଘରକୁ ଡାକିନେଲେ । ସେଠାରେ ଦେଖିଲି ବନ୍ଧୁଙ୍କର ଏକ ସମ୍ପର୍କୀୟ ଦମ୍ପତ୍ତି । ମୋର ବି ଏ ରକମ ସଂପର୍କୀୟ ସେମାନେ । ବନ୍ଧୁଙ୍କ ପତ୍ନୀ ତିନି ଖେପାରେ ଏତେ ଗୁଡିଏ ଅତିଥିଙ୍କ ଚର୍ଚ୍ଚା କରିବାରେ ଅସହାୟତା ଦେଖି ହେଉଥିଲା । ବନ୍ଧୁ ଡ୍ରଇଂ ରୁମ୍‌ରେ । ବନ୍ଧୁପତ୍ନୀ ଆମ ପାଖରେ ଟିକେ ବସୁଛନ୍ତି ପୁଣି ଭିତରକୁ ଦଉଡୁଛନ୍ତି । ମୋ ପୂର୍ବରୁ ଆସିଥିବା ଦମ୍ପତ୍ତିଙ୍କ ପାଇଁ ବିସ୍କୁଟ ଓ କଦଳୀ ଥୁଆହୋଇଛି । ଆଗନ୍ତୁକ ମହିଳା ବିସ୍କୁଟ ଓ କଦଳୀ 'ପିଲାଙ୍କ ଖାଦ୍ୟ' ବୋଲି କହିବାରୁ ତାଂକୁ ଦହି ସରବତ ଦେଇଛନ୍ତି । ସରବତ୍ ଶେଷ ପ୍ରାୟ । ଏତିକିବେଳେ ମୋର ପ୍ରବେଶ । ଆହୁରି ହଇରାଣ ଗୃହପତ୍ନୀ ।

ପୁଅକୁ ଗୋଟାଏ କଣକୁ ଡାକି ବ୍ୟାଗଟିଏ ଦେଇ ଗୋଟାଏ ଦଶ ଟଙ୍କିଆ ନୋଟ ତା' ହାତରେ ଗେଞ୍ଜି କ'ଣ ଆଣିବାକୁ ବରାଦ ଦେଇ ପଠାଇଲେ ବଜାରକୁ । ମୁଁ ଏ ଅବସ୍ଥା ଦେଖି କହିଲି 'ମୋର କିଛି ଦରକାର ନାହିଁ । ମୋ ପାଇଁ କିଛି ଆଣିବା ଦରକାର ନାହିଁ ।'

ବନ୍ଧୁପତ୍ନୀ କହିଲେ 'ଦହି ସରବତ୍ ଟିକିଏ ? କିଛି କ୍ଷତି କରିବନି ଆପଣଙ୍କର ।

'ନାଇଁ, ମୋ ପାଇଁ କିଛି ନୁହେଁ ।' ବନ୍ଧୁପତ୍ନୀ ଇତସ୍ତତଃ ହୋଇ କହିଲେ, ୟା'ଙ୍କର ଜଣେ ପିଲାଦିନର ବନ୍ଧୁ ହଠାତ୍ ଆସି ପହଞ୍ଚିଛନ୍ତି ଯେ...'

ମୁଁ କହିଲି 'ତାଂକର ଚର୍ଚ୍ଚା କର । ଆମେ ତ ସବୁଦିନିଆ ।'

ବନ୍ଧୁପତ୍ନୀ ପୁଣି ଦଉଡିଲେ ଭିତରକୁ । ମୁଁ ପଚାରିଲି 'ତମେ କାହିଁକି ଏତେ ଦଉଡ ଧାପଡ କରୁଛ ? ତମ ଘରେ ଯେଉଁ ଝିଅଟି ଥିଲା ସେ କାହିଁ ?'

ବନ୍ଧୁପତ୍ନୀ କହିଲେ 'କିଏ ନିଳି ନା ! କୁହନ୍ତୁ ନାହିଁ ତା କଥା । ସେ ବାହାରି ଗଲାଣି । ମୁଁ ତା'କୁ ବାହାର କରିଦେଲି ।'

'କାହିଁକି ? କ'ଣ ହେଲା ?' ପ୍ରଶ୍ନ କଲି ମୁଁ ।

'କ'ଣ କହିବି ସେ କଥା ।'

ଗୃହପତ୍ନୀ ଆରମ୍ଭ କଲେ

''ଆମେ ତ ଦି' ଜଣଯାକ କାମରେ ବାହାରି ଯାଉ । ପିଲାମାନେ ସ୍କୁଲ ଯାଆନ୍ତି । ଦିନ ଦଶଟାରୁ ସଂଧ୍ୟା ୪ଟା/୫ଟା ଯାଏ ସେ ଏ ଘରର ମାଲିକାଣୀ । କ୍ଷୀର ଖାଇବ । ମିଠା ଖାଇବ । ଯାହା ଇଚ୍ଛା ତାହା କରିବ । ଘର ମେଲା କରିଦେଇ ପଡ଼ିଶା ଘରେ ବସିଥିବ କି ବୁଲୁଥିବ । ଏମିତିକି ତାଲା ଦେଇ ଘଣ୍ଟା ଘଣ୍ଟା ଧରି କୁଆଡେ ଚାଲିଯାଏ । କିନ୍ତୁ ସେ ଯାହାହେଉ- ଆମର ତ କାମ ଅଚଳ । ଆମେ ସେ ସବୁ ସହି ଯାଉଥିଲୁ ।' କହି ଯାଉଥିଲେ ବନ୍ଧୁ ପତ୍ନୀ ।



Digitized by srujanika@gmail.com

"ପୁଣି କଅଣ ହେଲା ତାକୁ ବାହାର କରିବା କାହିଁକି ଦରକାର ପଡ଼ିଲା ?" ମୁଁ ପଚାରିଲି ।

'କହୁଚି ସେ କଥା । ଗତ ଦି' ମାସ ଭିତରେ ତିନିଟା ଘରପିନ୍ଧା ଶାଢ଼ୀ, ଦି'ଟା ବିଛଣା ଚାଦର ଆଉ ଦି'ଟା ଭଲ ଦାମିକା ସିଲ୍କ ଶାଢ଼ୀ ମିଳିଲାନି । ଦି'ନେ ମୁଁ କାମରୁ ଫେରିଲା ବେଳକୁ ଦେଖିଲି ତଳ ପାହାଚ ପାଖରେ ଗୋଟାଏ ରିକ୍ସା ବାଲା ଠିଆ ହୋଇ ଅଙ୍ଗ ଫଙ୍ଗ ହେଉଛି । ପଚାରିଲାରୁ କହିଲା 'ନାଇଁ ମା କିରଣ ଅଛି କି' ? ମୁଁ ପଚାରିଲି କୋଉ କିରଣ ? ସେ କହିଲା ଆପଣଙ୍କ ଘରେ ଯେଉଁ ଝିଅ ଅଛି କିରଣ । ମୁଁ କହିଲି "ତା ନା'ତ କିରଣ ନୁହେଁ । ତା ନା'ନିଲି ।" ରିକ୍ସାବାଲା କହିଲା, 'ସେତ କିରଣ ବୋଲି ଆମକୁ କହିଛି ।' ମୁଁ ପଚାରିଲି ତା ସାଙ୍ଗରେ ତମର କାମ କ'ଣ ? ରିକ୍ସାବାଲା ପୁଣି ଇତସ୍ତତଃ ହେବା ଦେଖି ମୁଁ ଯୋରଦେଇ କହିଲି "କ'ଣ- କଥା କ'ଣ ?"

ରିକ୍ସାବାଲା ଛେପ ଢ଼ୋକି କହିଲା କିରଣ ମତେ ବା' ହେବା ପାଇଁ କହିଛି । ଆଉ କେତେଦିନ ହେଲା ଧରାଛୁଆଁ ଦେଉନି । ଆଉ ଦି'ଜଣ ରିକ୍ସାବାଲା ଓ ଜଣେ ପାନ ଦୋକାନୀକୁ ବି ସେମିତି କହି ଠକୁଛି ।'

ଗୃହପତ୍ନୀ ଟିକେ ଦମ ନେଇ କହିଲେ ମୋର ରାଗ ପଞ୍ଚମକୁ ଉଠିଲା । ମୁଁ ରିକ୍ସାବାଲାକୁ କହିଲି "ତୁ କ'ଣ ଦେଇଛୁ ତା'କୁ । 'ନାଇଁ ଆଜ୍ଞା ବେଶୀ କିଛି ନାହିଁ । ହେଲେ ଚପଲ କିଣିଲା । ଦିଥର ସିନେମା ଦେଖେଇ ନେଇଛି । ଆଉ ଥରେ ତିନିଟା ଟଙ୍କା ଦେଇଛି ।'

ଏହା ପରେ ନିଲି ଓରଫ କିରଣ ବନ୍ଧୁଙ୍କ ଘରୁ ବିଦାୟ ନେଇଛି ।

(ତା୧୪.୦୫.୧୯୮୨)





Digitized by srujanika@gmail.com

# 'ରାଜୁ' ଓ ଲାଙ୍ଗୁଳହଲା ଟିକେଟ

ଦିଲ୍ଲୀରେ ସେଦିନ ଏକ ଅଜବ ଦୃଶ୍ୟ ଦେଖିବାକୁ ମିଳିଲା । ଗୋଟିଏ ବସ୍‌ଷ୍ଟାଣ୍ଡରେ ଜଣେ ଯାତ୍ରୀ ଗୋଟିଏ କୁକୁର ଧରି ପଶିଲେ । ଲୋକଟି ବେଶ ଲମ୍ବା ଚଉଡା । ଚରଣ ସିଂଙ୍କ ଜାତି ଜାଠ୍ । ମୁଣ୍ଡରେ ଠେକା । ସେ ଯେମିତି ଉପରକୁ ଚଢ଼ି ଆସିଲେ କୁକୁରଟି ମଧ୍ୟ ଦି'ଖେପାରେ ପାହାଡ ଡେଇଁ ବସ୍ ଭିତରେ ।

ବସ୍ କଣ୍ଡକ୍ଟର ପାଟି କଲେ । "ଏ କଣ ? କୁକୁର କେମିତି ବସ୍‌ରେ ଯିବ । ତଳକୁ ଓହ୍ଲାଅ । ଓହ୍ଲାଅ ତଳକୁ ।"

ଜାଠଯୁବକ ଉତ୍ତର ଦେଲେ "ମୁଁ ଟିକେଟ ନେବି ରାଜୁ ପାଇଁ । ଟିକେଟ କାଟିଲେ କାହିଁକି ନବନି ।"

"ଟିକେଟ କାଟିଲେ ବି ନେବିନି । ତା ଛଡା କୁକୁର ପାଇଁ ଟିକେଟ କାଟିବିନି ।"

"ଅଲବତ ଟିକେଟ କାଟିବ । ଡବଲ ପଇସା ନେଇକରି ଟିକେଟ କାଟ । ମୁଁ ବସ୍‌ରେ ଯିବି । ରାଜୁ ଯିବନି ?"

କୁକୁର ମାଲିକ ରାଜୁର ବେକ ମୂଳେ ହାତ ସାଉଁଳେଇ ଗେହ୍ଲା କରି ଦେଉଥାନ୍ତି । ରାଜୁ ବି ଆଗ ଗୋଡ ଦି'ଟା ଉଠେଇ ମାଲିକର ଅଣ୍ଟା ପର୍ଯ୍ୟନ୍ତ ଲଗାଇ ଦେଉଥାଏ ।

ଅନ୍ୟ ଯାତ୍ରୀମାନେ ବିରୋଧ କଲେ । କୁକୁର ବସ୍‌ରେ ଯାଇ ପାରିବନି ।

ବାଧ ହୋଇ କୁକୁର ମାଲିକ 'ରାଜୁ'କୁ ତଳକୁ ଓହ୍ଲାଇ ଦେଇ କହିଲେ "ଆଚ୍ଛା ହଉ ।"

କୁକୁରକୁ ହାତ ହଲାଇ ଇଙ୍ଗିତ ଦେଲେ 'ରାଜୁ'କୁ ବସ୍ ସାଙ୍ଗରେ ଦଉଡିବାକୁ । ଦିଲ୍ଲୀରେ ବସ୍‌ଗୁଡାକ ବେଶ ଜୋରରେ ଚଳେ । କିନ୍ତୁ 'ରାଜୁ' ବସ୍ ସାଙ୍ଗରେ ଦଉଡିଲା । ହଟିଲାନି । ଯେଉଁଠି ବସ୍ ରହୁଥାଏ କୁଦ ମାରି ରାଜୁ ଭିତରକୁ ଚାଲି ଆସେ । ପୁଣି ବସ୍ ଚାଲିଲେ ଦଉଡେ ।

ପ୍ରାୟ ଦୁଇ ତିନି ମାଇଲ ଦଉଡିଲା ପରେ କେତେକ ଯାତ୍ରୀ 'ରାଜୁ'ର ମାଲିକଙ୍କୁ ସହାନୁଭୂତି ଦୃଷ୍ଟିରେ ଅନେଇ "ରାଜୁ"କୁ ଗାଡିରେ ନେବାକୁ କହିଲେ । ମାଲିକ କଣ୍ଡକ୍ଟରଙ୍କୁ ଚାହିଁ କହିଲେ । "କଣ କଣ୍ଡକ୍ଟର ସାହେବ ଦେବେ 'ରାଜୁ'କୁ ଟିକେଟ ?"

କଣ୍ଡକ୍ଟରର ସେତେବେଳକୁ 'ରାଜୁ' ପ୍ରତି ଦରଦ ହୋଇଗଲାଣି । ସେ କହିଲା "ବିନା ଟିକେଟରେ ନେଇଯିବି ।"

ମାଲିକ କହିଲେ ବିନା ଟିକେଟରେ 'ରାଜୁ' ଯିବନି । ଟିକଟ କାଟ ସେ ଯିବ । ଯାତ୍ରୀମାନେ ମଧ୍ୟ ଚାପ ଦେଲେ "କାଟି ଦିଅ ଟିକେଟ ଗୋଟାଏ । ଜାଟ ପୁଅ ବିନା ଟିକଟରେ ଯିବନି ।"

ଜାଟ ମାଲିକ କହିଲେ "ଠିକ୍ କହିଚ ମୁଁ ଜାଟ । ମୋ ରାଜୁ ବି ଜାଟ । ଆମର ଦମ ଅଛି ଦଉଡିବାକୁ । ଲଢ଼ିବାକୁ ।" ରାଜୁ ଭିତରେ ଗଲା । ଟିକେଟ ହେଲା ।

ରାଜନୀତିରେ ଲୋକ କେବଳ ଲାଙ୍ଗୁଡ ହଲେଇ ହଲେଇ ଟିକେଟ ନେଇ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ଏମ୍‌ଏଲ୍‌ଏ, ଏମ୍.ପି. ହେଉଛନ୍ତି । ରାଜୁପରି ଦଉଡିବାକୁ ପଡ଼ିଲେ ଅନେକ ଲୋକ ଟିକେଟ ଆଶା ଛାଡି ଦିଅନ୍ତେ ।

(ତା୨୭.୧୨.୧୯୮୦ରିଖ)





Digitized by srujanika@gmail.com

# ବଦଳି ଓ ପ୍ରମୋଶନରେ ପତ୍ନୀ ବନାମ ପତ୍ନୀ

କେଇଦିନ ତଳେ ଜଣେ ବନ୍ଧୁ ଆସି ତାଙ୍କ ପତ୍ନୀଙ୍କ ବଦଳି ପ୍ରମୋଶନ କଥା ବୟାନ କରୁଥିଲେ । ତିରିଶ ବର୍ଷର ବନ୍ଧୁ । ସରଳ ସଚ୍ଚୋଟ ବୋଲି ଉପରକୁ ଉଠିପାରିନାହାଁନ୍ତି । ତାଙ୍କ ସାତତଳ ଲୋକ ତାଙ୍କୁ ଟପି କେତେ ପାହାଚ ଉପରକୁ ଉଠି ଗଲେଣି । ସତେଇଶି ବର୍ଷର ଚାକିରୀ ଭିତରେ ନିଜେ ଡାଇରେକ୍ଟରେଟର ଜିଲ୍ଲାସ୍ତରୀୟ ପଦବୀରେ ପହଞ୍ଚିବା ସମ୍ଭବ ହୋଇନାହିଁ । ଅବସର ନେଲା ବେଳକୁ ଯଦି ସରକାର ଦୟା କରନ୍ତି ତେବେ ଡେପୁଟି ଡାଇରେକ୍ଟର ହୋଇ କ୍ଲାସ ୱାନ ହୁଏତ ମିଳିପାରେ ।

ତେବେ ନିଜ ପାଇଁ ଯେତେ ଦୁଃଖ ନାହିଁ ପତ୍ନୀଙ୍କ ପାଇଁ ସେତେ ଗ୍ଲାନି, ବିବାହ କରିବେ ନାହିଁ ବୋଲି ଭାବିଥିଲେ । ଅନ୍ୟମାନଙ୍କ ଭଳି ବିଭିନ୍ନ ଚାପରେପଡି ଡେରିରେ ବାହା ହେଲେ । ତାଙ୍କ ପାଇଁ ବି ଜଣେ ଡାକ୍ତରାଣୀ ଅର୍ଥାତ ମହିଳା ଡାକ୍ତର ମିଳିଲେ । କିନ୍ତୁ ପତ୍ନୀଙ୍କର ଅଠର ବର୍ଷ ପରେ ଏବେ ପ୍ରମୋଶନ ମିଳିଛି । ଅଧିକ ଦିନ ବୁର୍ଲାରେ କଟିଲା । ପ୍ରଭାବ ନାହିଁ । ବ୍ୟାକିଂ ନାହିଁ । ଜଣେ ସମ୍ପର୍କୀୟ ଭାଇନା ପାଖାପାଖି ଅତିରିକ୍ତ ମୁଖ୍ୟ ଶାସନ ସଚିବ ପର୍ଯ୍ୟନ୍ତ ଯାଇ ଅବସର ଗ୍ରହଣ କଲେ । ତାଙ୍କ ଦ୍ୱାରା କିଛି ହେଲାନାହିଁ । ଗତ କେତେବର୍ଷ ହେଲା ଜଣେ ଦୂର ସମ୍ପର୍କୀୟ ଭାଇନା ମନ୍ତ୍ରୀ ରହିଛନ୍ତି । ତାଙ୍କ ଦରବାରକୁ ଦଉଡି ଦଉଡି ଥକିଲେ । ପଇସା ନଦେଲେ କାମ ହେଉନାହିଁ ବୋଲି ଶେଷରେ ପିଅନ କହିବାରୁ ସେ ଆଶ୍ରା ଛାଡିଲେ ।

ପତ୍ନୀଥିଲେ ବୁର୍ଲାରେ ୧୩ ବର୍ଷ । ତାଙ୍କୁ କଟକ ଆଣିବାକୁ 'ଚେଷ୍ଟା' କଲେ କାରଣ ସେ ନିଜେ ୧୪ ବର୍ଷ ପରେ କଟକରେ ଅବସ୍ଥାପିତ ହେଲେ ଦକ୍ଷିଣ ଓଡିଶାରୁ । ପିଲାମାନେ ବଡ ହେଲେଣି । ପାଠ ପଢାରେ ବ୍ୟାଘାତ ଘଟିବା ଉଚିତ ନୁହେଁ । କେତେ ଲୋକ କହିଲେ ତିନି ପାଞ୍ଚ ହଜାର ଖର୍ଚ୍ଚ ନକଲେ ବୁର୍ଲାରୁ କଟକ ଅଣାଯିବା ସମ୍ଭବ ନୁହେଁ । ବନ୍ଧୁ ଆମର ନିରଳ ସଚ୍ଚୋଟ । କହିଲେ ଏକ ପଇସା କାହାକୁ ଦେବିନାହିଁ । କୋଉଠୁ ଆଣିବି ? କାହିଁକି ଦେବି ? କଟକ, ଭୁବନେଶ୍ୱର ଓ ବୁର୍ଲା ମଧ୍ୟରେ ଏ ୧୧ ମାସ ନିୟମିତ ଦଉଡ ଧାପଡ କଲେ । ଛୁଟି ନେବାକୁ ପଡେ । ଭାଗ୍ୟକୁ ବହୁତ ଗୁଡାଏ ଛୁଟି ବାକୀଥିଲା ଖର୍ଚ୍ଚ କରିବାକୁ । ଅନୁରୋଧ, ବିନୟ, ଖୋସାମତ, ନେହୁରା ଆଦି ସହିତ ଦରଖାସ୍ତ ଯାହାକୁ ରିପ୍ରେଜେଣ୍ଟେସନ କହନ୍ତି ସବୁକଲେ । ନିଜ ଡାଇରେକ୍ଟରଙ୍କୁ ଅନୁରୋଧକରି ତାଙ୍କ ଜରିଆରେ ପତ୍ନୀଙ୍କ ଡାଇରେକ୍ଟର ଓ ସେକ୍ରେଟରୀଙ୍କୁ କୁହାଇଲେ । ଶେଷରେ ବଦଳି ହେଲା ।

କିନ୍ତୁ କଟକରେ ଯାହାଙ୍କ ଯାଗାକୁ ତାଙ୍କୁ ଅଣାଗଲା ସେ ଡାକ୍ତର ଏଠାରୁ ଯିବାକୁ ନାରାଜ । ସେ ରିପ୍ରେଜେଣ୍ଟେସନ କଲେ । ତାଙ୍କର ଏଠାରେ ମାତ୍ର ୨୨ ବର୍ଷ ହେଉଛି । ତାଙ୍କ ବାପାଙ୍କର ହୃଦ୍‌ରୋଗ । ମା'ଙ୍କର ପାରାଲିସିସ । ସ୍ତ୍ରୀଙ୍କର ନେଫ୍ରାଇଟିସ୍ । ପିଲାର କ୍ଲାସଟେନ ଇତ୍ୟାଦି ଇତ୍ୟାଦି । ସେ ଭୁବନେଶ୍ୱର ଦଉଡିବା ଆରମ୍ଭ କଲେ । ଏ ଲଢେଇ ପାଇଁ ଆମ ବନ୍ଧୁ ପ୍ରସ୍ତୁତ ହୋଇନଥିଲେ । ସେ ଲମ୍ବା ଚଉଡା ଲଢେଇ । ଶେଷରେ ଗୋଟିଏ ଷଡିଲିଭ ଭ୍ୟାକାନ୍‌ସିରେ ତାଙ୍କ ପତ୍ନୀ କଟକ ଆସିଲେ । ବନ୍ଧୁଙ୍କର ରିକ୍ସା, ବସ, ହୋଟେଲ ଖର୍ଚ୍ଚ ଆଦି ବାବଦରେ ୧୧ ମାସରେ ଖର୍ଚ୍ଚ ହେଲା ଅନ୍ୟୁନ ୮ ହଜାର ଟଙ୍କା । ସେତେବେଳେ ଭାବିଲେ ମୋ ସାଙ୍ଗରେ ଲୋକ ତିନିହଜାର ଟଙ୍କାଦେଇ ଦି'ଥର ଭୁବନେଶ୍ୱର ଯାଇ ବଦଳି କରାଇଆଣିଲେ ।



Digitized by srujanika@gmail.com

ମୁଁ କ'ଣ ପାଇଁ ତା' ହେଲେ ଏତେ ଦଉଡିଲି ?

ଦେଢବର୍ଷ ହେଲା ବନ୍ଧୁ ପରିବାର କଟକରେ ଅଛନ୍ତି । ସରକାରୀ ଘର ତାଙ୍କୁ କିମ୍ୱା ତାଙ୍କ ପତ୍ନୀଙ୍କୁ ମିଳିନି । ଏବେ ପ୍ରମୋଶନ ଲିଷ୍ଟରେ ପତ୍ନୀଙ୍କର ନାମ ରହିଛି । ଅହଲ୍ୟା ଉଦ୍ଧାର ହେଲା । କିନ୍ତୁ ପୋଷ୍ଟିଂ ହୋଇନି । ବର୍ତ୍ତମାନ ଆଶଙ୍କା ହେଲାଣି ଯେ, ପ୍ରମୋଶନ ପରେ ପୁଣି ବୁର୍ଲା କିମ୍ୱା ବ୍ରହ୍ମପୁରକୁ ବଦଳି ହେବ । କ'ଣ କରିବେ ? କଟକରେ ଗୋଟାଏ ପୋଷ୍ଟଖାଲି । ପ୍ରାର୍ଥୀ ଏଇଠି ୪ ଜଣ । ସବୁ ବଳୁଆ ପ୍ରାର୍ଥୀ । ମତେ ପଚାରୁଥିଲେ ଯେ, ମୁଁ କିଛି କହିପାରିବି କି ? ପ୍ରମୋଶନଠାରୁ ବଦଳି ଆହୁରି ଭୟଙ୍କର । ବଦଳି ହେଲେ ପ୍ରମୋଶନଟା ଦଣ୍ଡରେ ପରିଣତ ହୋଇଯାଉଛି ।

ମୁଁ ତାଙ୍କୁ କହିଲି 'ଚଳିତ ପରିସ୍ଥିତିରେ ଆପଣ ବିଭାଗୀୟ କର୍ତ୍ତା, ମନ୍ତ୍ରୀ କିମ୍ୱା ମୁଖ୍ୟମନ୍ତ୍ରୀଙ୍କୁ ନଧରି ଆଉ ଜଣେ 'ପତ୍ନୀ'ଙ୍କୁ ଧରନ୍ତୁ ।

'କିଏ ସେ ?' ବନ୍ଧୁ ଜଣକ ପ୍ରଶ୍ନ କଲେ ।

'ମୁଖ୍ୟମନ୍ତ୍ରୀଙ୍କ ପତ୍ନୀ, ଏବେ ସେ ସବୁରି ଉପରେ, ମୁଁ ତାଙ୍କୁ ସୂଚନା ଦେଲି ।

ବନ୍ଧୁ ହତବୁଦ୍ଧି ହୋଇ ଦୀର୍ଘ ନିଶ୍ୱାସ ପକାଇଲେ ।

(ତା୦୮.୦୭.୧୯୮୪)





Digitized by srujanika@gmail.com

# ସମସ୍ତଙ୍କ ଉପରେ ମାଲିକ ସେ

ଦରମା ବୃଦ୍ଧି ଓ ଦର ବୃଦ୍ଧି ଗଣତାନ୍ତ୍ରିକ ଦେଶମାନଙ୍କର ଅର୍ଥନୀତିରେ ସ୍ୱୀକୃତ । ଦର ବୃଦ୍ଧି ଅବଶ୍ୟମ୍ଭାବୀ । ଦରମା ବୃଦ୍ଧି ଡେରିରେ ଆସେ । ସେଥିପାଇଁ ଲଢେଇ ଭିଡେଇ କରିବାକୁ ପଡେ । ଦରମା ବଢ଼ିଲା ବେଳକୁ ସେହି ଅନୁପାତରେ ଦର ବଢ଼ିଥାଏ ତା'ର କେତେଗୁଣ । ଫଳରେ ଦରମା ବଢ଼ିବାରେ ବିଶେଷ କିଛି ଉପକାର ମିଳେନି । ମନବୋଧ କରିବା ମାତ୍ର ସାର ।

ଏବେ ବାହାଘର ବହୁତ ହେବାରୁ ମାଛର ଦର ନିତିଦିନିଆ ଖାଉଟି ପାଇଁ ହଠାତ ଖୁବ୍ ବଢ଼ିଗଲା । ମୁଖ୍ୟମନ୍ତ୍ରୀ କୁଆଡେ ଆଦେଶ ଦେଲେ ମାଛ ଦର କମାଇବାକୁ । ସାଧାରଣ ଓ ଗରିବ ଲୋକଙ୍କ ପାଇଁ ଅତ୍ୟାବଶ୍ୟକୀୟ ଦ୍ରବ୍ୟ କି ନା ! ଯୋଗାଣ ମନ୍ତ୍ରୀ ହୁକୁମ୍ ତାମିଲ କରି ମାଛ ମାର୍କେଟରେ ଆସି ତାଗଦା କରିଗଲେ ଏବଂ ବିଭିନ୍ନ କିସମର ମାଛ ପାଇଁ ଉପରେ ଚଢିଥିବା ଦରଗୁଡାକୁ ଟାଣି ତଳକୁ କରିଦେଲେ । ଦର ଏଣିକି କମିଗଲା ବୋଲି ଧରିନେଇ ଆରାମରେ ନିଜ ବଙ୍ଗଳାକୁ ଫେରିଗଲେ । ସେ ଯେତେବେଳେ ମନ୍ତ୍ରୀ, ବେପାରୀଗୁଡାକ ତାଙ୍କର କଥା ମାନିବାକୁ ବାଧ ବୋଲି ବୋଧେ ତାଙ୍କର ଧାରଣା । ଦର ଖସିଲାନି । ଯେଉଁଠି ସେଇଠି ।

ତିନୋଟି ପ୍ରକାର ଦ୍ରବ୍ୟ ସବୁବେଳେ ଊର୍ଦ୍ଧ୍ୱମୁଖୀ । ସେମାନେ କେବଳ ଉପରକୁ ଉଠିବାକୁ ଚାହାଁନ୍ତି । ଉପରକୁ ଗଲେ ଆଉ କୌଣସି ଭାବରେ ତଳକୁ ଖସିବାକୁ ଇଚ୍ଛାକରନ୍ତି ନାହିଁ । ତାଙ୍କୁ ଟାଣି ଘୋଷାରି, ଓଟାରି ତଳକୁ ନ ଆଣିଲେ ସେ ଆସିବେନି । ଟାଣି ତଳେ ପକେଇ ଦେଲେ ମଧ ସାଙ୍ଗେ ସାଙ୍ଗେ ଉପରକୁ ଚଢ଼ିବାକୁ ତିଆର । ସେମାନେ ହେଲେ ଦରମା ପାଉଥିବା କର୍ମଚାରୀ, ରାଜନୀତିବାଲା ଓ ଦର ।

ଏଥି ମଧ୍ୟରୁ ଦରମାବାଲା କର୍ମଚାରୀ ସବୁବେଳେ ପ୍ରଶାସନ ପାଇଁ ତିଆର । ଖୋସାମତିରେ ହେଉ, ଉପର ହାକିମଙ୍କ ଲୁଆକାଖେଇ ହେଉ ବା ଆଉ ଯେମିତି ହେଉ ସେମାନେ ସବୁବେଳେ ଉପରକୁ ଉଠିବାକୁ ଚେଷ୍ଟିତ । ଶହେ ଯୋଗ୍ୟଲୋକଙ୍କୁ ସୁପରସିଡ କରିଲେ ମଧ ମନରେ ଟିକିଏ ଗ୍ଲାନି ନଥାଏ । କିନ୍ତୁ ଆପଣ ଚାହିଁଲେ ତାଙ୍କର ଏଫିସିଏନସି ବାର ଟପେଇ ନଦେଇ କିମ୍ବା ସିସିଆର ଖରାପ କରି କିମ୍ବା ଆଉ କ'ଣ ମାରପେଞ୍ଚ କରି ସେମାନଙ୍କୁ ତଳେ ରଖିଦେଇ ଚପେଇ ଦେଇ ହେବ ।

ସେହିପରି ରାଜନୀତିଜ୍ଞମାନଙ୍କର ନେତା ହାଇକମାଣ୍ଡ ଆଦି ବହୁ ଲୋକ ଅଛନ୍ତି ଯେଉଁମାନେ ଚାହିଁଲେ ସେମାନଙ୍କୁ ଟିକେଟ ଦେବେ ନାହିଁ କିମ୍ବା ଉପରକୁ ଉଠେଇ ଦେବେ ନାହିଁ । କ୍ଷମତାରୁ ଖସେଇ ଦେବେ । ଦରକାର ପଡିଲେ ଦଳରୁ ସସପେଣ୍ଡ କିମ୍ବା ବହିଷ୍କାର କରି ଦେଇ ହେବ । କିଛି ନହେଲେ ଭୋଟ ବେଳେ ଲୋକେ ଆକାଶରୁ ରସାତଳକୁ ପକେଇ ଦେବେ ।

କିନ୍ତୁ ଦର ନାମକ ଦ୍ରବ୍ୟକୁ ତଳକୁ ଆଣିବା ଏକାନ୍ତ କଷ୍ଟ । ସମସ୍ତେ କହନ୍ତି । ଆହ୍ୱାନ ଦିଅନ୍ତି । ପ୍ରତିଶ୍ରୁତି ଦିଅନ୍ତି । କିନ୍ତୁ ଦର ଉପରକୁ ଯାଉଥାଏ ସମସ୍ତଙ୍କୁ ତଳେ ପକେଇ । ସମସ୍ତେ ମୁଣ୍ଡ ନୁଆଁନ୍ତି ଦରବୃଦ୍ଧି ପାଖରେ ।

କେବଳ ମାର୍କ୍ସବାଦୀ ଅର୍ଥନୀତିରେ ଦର ତଳେଇ କରି ରଖାଯାଇପାରେ । ଦରକୁ ନିୟନ୍ତ୍ରଣ କରାଯାଇ ପାରେ । କିନ୍ତୁ ଗଣତନ୍ତ୍ର ଓ ମିଶ୍ରିତ ଅର୍ଥନୀତିର ଦରବୃଦ୍ଧି ପାଖରେ ଆଉ ସମସ୍ତେ ନୌକର ।



Digitized by srujanika@gmail.com

ପ୍ରଧାନମନ୍ତ୍ରୀ, ସୁପ୍ରିମକୋର୍ଟ ଜଜ, ପୋଲିସ ଡିଜି ଓ ଆଇଜି, କଲେକ୍ଟର, କମିଶନର, ମୁଖ୍ୟମନ୍ତ୍ରୀ କାହାରି 'ହୁକୁମ' ଖଟେନା । କେବଳ ବ୍ୟବସାୟୀ ତାର ମାଲିକ । ମୂଳ କଥାକୁ ଫେରିଯିବା । ଦରବୃଦ୍ଧି ଘଟିବା ସଂଗେ ସଂଗେ ପରସେଣ୍ଟେଜ ହାର ମଧ୍ୟ ବଢ଼ୁଛି । ଆଗେ ଯେମିତି ପାଉଣା ଦେଉଥିଲେ ହେଉଥିଲା ଏବେ ଆଉ ସେଥିରେ ଚଳୁନି । ବିଶେଷ କରି ବ୍ୟବସାୟୀ ଗୋଷ୍ଠୀ ଏଥିରେ ବଡ ବେଶି ଆକ୍ରାନ୍ତ । କଣ୍ଟ୍ରାକ୍ଟରଙ୍କୁ ଏବେ ଓ୍ୱାର୍କ ସରକାର, ଓଭରସିଅର, ଏକଜିକ୍ୟୁଟିଭ ଇଞ୍ଜିନିୟର, ଚିଫ୍ ଇଞ୍ଜିନିୟରରୁ ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ ସବୁଯାଗାରେ ଅଧିକ ପରସେଣ୍ଟେଜ ଦେବାକୁ ପଡୁଛି । ଅନ୍ୟ ବ୍ୟବସାୟୀମାନଙ୍କୁ ସେମିତି ଅନେକ ଯାଗାରେ ବର୍ଦ୍ଧିତ ହାରରେ ଚାନ୍ଦା ଦେବାକୁ ପଡୁଛି । ସାଧାରଣ ଲୋକ ତହସିଲ ଅଫିସର, କଚେରୀରେ ରିସପତ ହାର ବୃଦ୍ଧିରେ ଅତିଷ୍ଠ । ଏହାକୁ କମାଇବ କିଏ ?

(ତା୧୬.୦୭.୧୯୮୪)





Digitized by srujanika@gmail.com

# ଗୋବର୍ଦ୍ଧନର ସ୍ତ୍ରୀ ସାଂଘାତିକ

ଆଗେ ଏ ଦେଶରେ ଟେଲିଗ୍ରାମର ଏତେ ଚଳନୀ ନଥିଲା । ଗାଁ ଗଣ୍ଡାରେ ଟେଲିଗ୍ରାମର ବ୍ୟବସ୍ଥା ନଥିଲା । ଗାଁରୁ ଲୋକେ ନିକଟବର୍ତ୍ତୀ ରେଳଷ୍ଟେସନକୁ ଆସି ଟେଲିଗ୍ରାମ କରୁଥିଲେ । ବାହାରୁ ଗାଁମାନଙ୍କୁ ଟେଲିଗ୍ରାମ ପଠାଇବାର ବିଶେଷ କିଛି ମୂଲ୍ୟ ନଥିଲା କାରଣ ବହୁତ ଡେରି ହେଉଥିଲା ଟେଲିଗ୍ରାମ ପହଞ୍ଚିବାକୁ ।

ଏବେ କଥାକଥାକେ ଟେଲିଗ୍ରାମ । ଟେଲିଗ୍ରାମ, ଟେଲେକ୍ସ ଓ ବଡ କମ୍ପାନୀ କିମ୍ବା ବଡ ଲୋକଙ୍କର ଟେଲିପ୍ରିଣ୍ଟର ଲାଇନ ସବୁ ବସିଛି ଖବର ଦବାନବା ପାଇଁ । ଯଦିଓ ଟେଲିଗ୍ରାମର ପ୍ରଚଳନ ଓ ଟେଲିଗ୍ରାଫ ଅଫିସ ଚଢିବା ସଂଗେ ସଂଗେ ଏବେ ଟେଲିଗ୍ରାମ ସବୁ ମିଳିବାରେ ଡେରି ହେବା କିମ୍ବା ଆଦୌ ନମିଳିବା ମଧ ଦେଖାଯାଉଛି । (ଅବଶ୍ୟ କର୍ମଚାରୀମାନଙ୍କର ନିଷ୍ଠାର ଅଭାବ ଓ ଅବହେଳା ଏହାର କାରଣ) ତଥାପି ବହୁ ପ୍ରକାରର ଟେଲିଗ୍ରାମ ଏବେ ଯାତାୟତ କରୁଛି ।

ଆଗକାଳରେ କିନ୍ତୁ ଟେଲିଗ୍ରାମଟାଏ ଆସିଲେ ଛାତି ଦମ୍‌କିନା ପଡୁଥିଲା ଉଠୁଥିଲା । କାରଣ ଟେଲିଗ୍ରାମ ବିରଳ ହେଲେ ମଧ ଯେତେବେଳେ ଆସୁଥିଲା ଅଧିକାଂଶ କ୍ଷେତ୍ରରେ ତାହା ଦୁଃଖଦ ବାର୍ତ୍ତା ବହନ କରି ଆଣୁଥିଲା । ସାଧାରଣତଃ କେହି ସାଂଘାତିକ ଭାବରେ ବେମାର ହେଲେ କିମ୍ବା ମରିଗଲେ ଟେଲିଗ୍ରାମ କରାଯାଉଥିଲା । ସେଥିପାଇଁ ମରିବାର ଆଶଙ୍କା ନଥିଲେ ବେମାର ରୋଗୀ ସମ୍ପର୍କରେ ଟେଲିଗ୍ରାମ ନକରି ବରଂ ଚିଠି ପଠାଯାଉଥିଲା ଛାଟିକୁଟୁମ୍ବଙ୍କୁ । ସାଂଘାତିକ ବେମାର ସମ୍ପର୍କରେ ଟେଲିଗ୍ରାମର ସାଧାରଣ ଭାଷାଥିଲା ଅମୁକ(ରୋଗୀ ବାପା, ମା' ବା ଅନ୍ୟ ଯେକେହି ହେଉ) ସିରିଅସ କମ୍ ସୁନ୍' ଅର୍ଥାତ ବାପା, ମା' ଭାଇ କିମ୍ବା ସ୍ତ୍ରୀ ସାଂଘାତିକ ଶୀଘ୍ର ଆସ ।

ଏସବୁ କଥା ବର୍ଣ୍ଣନା କରିବାର ମୂଳ ହେଲା ଯେ ଗାଁରେ ଅଶିକ୍ଷିତ ଲୋକେ ଗାଁ ପୋଷ୍ଟମାଷ୍ଟର, ରେଳ ଷ୍ଟେସନ ମାଷ୍ଟର କିମ୍ବା ଅନ୍ୟ ଶିକ୍ଷିତ ଲୋକହାତରେ ଟେଲିଗ୍ରାମ ଇଂରାଜୀରେ ଲେଖାଉଥିଲେ । ସେହିପ୍ରକାର ଲେଖା କିପରି ଆଜିଯାଏ ଓଲଟା ଅର୍ଥରେ ମଧ ଗାଁ ଗଣ୍ଡାରେ ବ୍ୟବହୃତ ହେଉଛି ତାହାର ଏକ ଦୃଷ୍ଟାନ୍ତ ଶୁଣନ୍ତୁ ।

ଆମ ଅଫିସର ଜଣେ ପିଅନର ଘର ଚାନ୍ଦବାଲି ଅଞ୍ଚଳରେ । ସେ ଗତ ଦଶହରା ଛୁଟିରେ ଘରକୁ ଯାଇ ବହୁତ ବେଶୀଦିନ ଘରେ ରହିଲା । କଲିକତାରେ କାମକରୁଥିବା ଓଡିଆମାନେ ସାଧାରଣତଃ ଦେଶକୁ ଆସିଲେ ଏଇଆ କରିଥାନ୍ତି । ବେଶୀ ଦିନ ଘରେ ରହିଲା ପରେ ଆମ ପିଅନ ଭାବିଲା ଯେ, ଆମ ଅଫିସକୁ ଗୋଟିଏ ଟେଲିଗ୍ରାମ କରି ତା'ର ସ୍ତ୍ରୀର ଦେହ ଅସୁସ୍ଥ ଥିବାରୁ ସେ ଡେରିରେ ଫେରିବ ବୋଲି ଜଣାଇଦେବ । ଗାଁର ବୁଢା ପୋଷ୍ଟ ମାଷ୍ଟରଙ୍କୁ ଟେଲିଗ୍ରାମ ଫର୍ମରେ ସ୍ତ୍ରୀ ସାଂଘାତିକ ଓ ସ୍ତ୍ରୀ ଭଲ ହେବା ମାତ୍ରେ ସେ ଶୀଘ୍ର ଅଫିସକୁ ଫେରିବ ବୋଲି ଜଣାଇଦେବାକୁ ଲେଖି ଦେବା ପାଇଁ ଅନୁରୋଧ କଲା ।

ଆମେ ଦିନେ ଅଫିସରେ ଟେଲିଗ୍ରାମ ପାଇଲୁ, 'ୱାଇଫ୍ ସିରିଅସ୍ କମ୍‌ସୁନ ।'

ଗୋବର୍ଦ୍ଧନର ସ୍ତ୍ରୀ ଆରୋଗ୍ୟ ହେଲା । ସେ ପ୍ରାୟ ମାସେ ପରେ ଆସି ଅଫିସରେ ଯୋଗଦେଲା ।

(ତା୧୫.୦୭.୧୯୮୨)





Digitized by srujanika@gmail.com

# ଫାଶିକୁ ଯିବ କାହିଁକି ?

ଏବେ ତିନିଜଣ ଭଦ୍ରଲୋକ ଜଣେ ସମ୍ବାଦପତ୍ର ସମ୍ପାଦକଙ୍କ ପାଖରେ ଆସି ପହଞ୍ଚିଲେ । ସେମାନଙ୍କ ହାତରେ ଗୋଟିଏ ତିନିପୃଷ୍ଠାର ହାତଲେଖା ସମ୍ବାଦ ।

ଘଟଣା ହେଲା ଏଇଆ । ପୁରୀ ଜିଲ୍ଲାର ଏକ ଅଞ୍ଚଳରେ ସ୍ଥାନୀୟ ଥାନାଠାରୁ ମାତ୍ର ଦୁଇ ମାଇଲ ଦୂର ଏକ ଗ୍ରାମରେ ରାତି ଅଧରେ ୮ ଜଣ ଡକାୟତ ପଶି ଘରଭାଙ୍ଗି, ଚାଳ ଡେଇଁ, ମାଡ ମାରି, ଛୁରୀ କେଞ୍ଚି ଘରୁ ଲୁଟ୍‌ପାଟ୍ କଲେ । ଗହଣାଗାଣ୍ଠି, ଲୁଗାପଟା, ବାସନକୁସନ ନେଲେ । କେତେ ଲୋକଙ୍କ ଘର ଡକାୟତମାନେ ଲୁଟ୍ କଲେ । ପାଟିଗୋଳ ଶୁଣି ଲୋକେ ଉଠି ଜମାହେଲେ । କିନ୍ତୁ ଡକାୟତମାନେ ଧମକ ଦେଲେ ଯେ, ଯିଏ ତାଙ୍କ କାମରେ ବାଧା ଦେବ ତାକୁ ହାଣିଦେବେ । ଘରଗୁଡାକରେ ନିଆଁ ଲଗାଇଦେବେ ।

ଗାଁର ଜଣେ ପଡିଶା ଗାଁକୁ ଭୋଜି ଖାଇ ଯାଇଥିଲେ । ରାତିରେ ଫେରିଲା ବେଳକୁ ଡକାୟତମାନେ ତାଙ୍କୁ ଘେରିଗଲେ । ସେ ନିଜକୁ ଅନ୍ୟଗ୍ରାମର ଲୋକ ବୋଲି କହି ଡକାୟତଙ୍କୁ କହିଲେ ଯେ, ସେ ନିଜ ଗାଁକୁ ଯାଉଛନ୍ତି । ସେଠାରୁ ଖସିଯାଇ ସଂପୃକ୍ତ ପୋଲିସ ଥାନାରେ ଏ ବିଷୟ ଖବର ଦେଲେ । ପୋଲିସ ବେଶ୍ ଡେରିରେ ଆସିଲେ । ଡକାୟତମାନେ ସେତେବେଳକୁ ଗଲେଣି ।

ସମ୍ପାଦକ ପଚାରିଲେ ଯେ, ସେ କ'ଣ କରିପାରିବେ ଏ ଦିଗରେ ଏବଂ ପୋଲିସ ପାଖକୁ ନଯାଇ ସେମାନେ ଖବରକାଗଜ ଅଫିସକୁ କାହିଁକି ଆସିଛନ୍ତି । ସେମାନଙ୍କର ଉତ୍ତର ହେଲା ଯେ, ସ୍ଥାନୀୟ ପୋଲିସ ଏ ସମ୍ପର୍କରେ ଉପଯୁକ୍ତ ପଦକ୍ଷେପ ନେଉନାହାଁନ୍ତି । ବରଂ ଆଠ ଜଣ ଡକାୟତ ଗ୍ରାମକୁ ଆସିଥିବା କଥା ଗାଁଲୋକେ ଦେଖିଥିଲା ବେଳେ ପୋଲିସ ସେମାନଙ୍କୁ ବାଧ କରି ଚାରିଜଣ ଡକାୟତ ଆସିଥିଲେ ବିବୃତି ଲେଖାଇ ନେଇଛନ୍ତି । ପାଞ୍ଚଜଣ କିମ୍ବା ତା'ଠାରୁ ଅଧିକ ଡକାୟତ ଆସିଲେ ତାହା ଆଇନ ଅନୁଯାୟୀ 'ଡକାୟତି' ପରିଗଣିତ ହେବ । ୪ ଜଣ କିମ୍ବା ତାଠାରୁ କମ୍ ସଂଖ୍ୟକ ଡକାୟତ ହେଲେ ତାହା 'ରବେରି' ବୋଲି ପରିଗଣିତ ହେବ । 'ଡକାୟତି' ପରିଗଣିତ ହେଲେ ପୋଲିସକୁ 'ସ୍ପେଶାଲ ରିପୋର୍ଟ' ଲେଖିବାକୁ ହେବ ଏବଂ ନିୟମ ଅନୁଯାୟୀ ନିଜେ ପୋଲିସ ଏସପି ଘଟଣାସ୍ଥଳ ପରିଦର୍ଶନ କରିବା କଥା ।

ଯେଉଁମାନେ ସମ୍ବାଦ ଦେବାକୁ ଆସିଥିଲେ ସେମାନଙ୍କୁ ସମ୍ବାଦର ସତ୍ୟାସତ୍ୟ ସଂପର୍କରେ ଦାୟୀ ରହିବା ପାଇଁ ସମ୍ବାଦ ଲେଖା କାଗଜରେ ଦସ୍ତଖତ କରି ନିଜର ଠିକଣା ଲେଖିବାକୁ କୁହାଗଲାରୁ ସେମାନେ ଇତସ୍ତତଃ ହେଲେ । କାରଣ ପଚାରିଲାରୁ କୁଣ୍ଠିତ ଭାବରେ ସେମାନେ କହିଲେ ଯେ, ସେମାନେ ସମସ୍ତେ ସରକାରୀ କର୍ମଚାରୀ ।

ବୁଝିଲାରୁ ଜଣାପଡିଲା ଯେ, ଦଳର ନେତୃତ୍ୱରେ ଯିଏ ଆସିଥିଲେ ସେ ଜଣେ ପୋଲିସ ସବ୍‌ଇନ୍ସପେକ୍ଟର । ଦ୍ୱିତୀୟ ଜଣକ ଓଡିଶା ସେକ୍ରେଟେରୀଏଟର କର୍ମଚାରୀ । ୩ ୟ ଜଣକ ଗୋଟିଏ କର୍ପୋରେସନରେ ଚାକିରୀ କରନ୍ତି । ସମସ୍ତେ ସେହି ଗ୍ରାମର । ସେକ୍ରେଟାରୀଏଟରେ କାମ କରୁଥିବା କର୍ମଚାରୀଙ୍କର ବାପା ଡକାୟତଙ୍କ ମାଡରେ ଆହତ ମଧ୍ୟ ହୋଇଛନ୍ତି । ପୋଲିସ ସବ୍ ଇନିସ୍‌ପେକ୍ଟର ଜଣକ ଏବେ ଭିଜିଲାନ୍ସ କିମ୍ବା ସ୍ପେଶାଲ ବ୍ରାଞ୍ଚରେ କାମ କରୁଛନ୍ତି ।



Digitized by srujanika@gmail.com

ସେମାନେ ପୋଲିସ ନିଷ୍କ୍ରିୟତା ସମ୍ପର୍କରେ ଅଭିଯୋଗ କରୁଥିଲା ବେଳେ ସାଧାରଣ ଲୋକ କେତେ ନିର୍ଯାତନା ଭିତରେ ଅଛନ୍ତି ବୋଲି ସେମାନଙ୍କୁ ପଚାରିଲାରୁ ସେମାନେ ଏକମତ ହେଲେ । କିନ୍ତୁ ନିଜ ଘରେ ଓ ନିଜ ଗ୍ରାମରେ ଡକାୟତି ହୋଇଥିଲେ ମଧ୍ୟ ସମ୍ବାଦପତ୍ରରେ ଖବର ଦେଉଛନ୍ତି ବୋଲି ସେମାନେ ନିଜର ନାମ ପ୍ରକାଶ କରିବାକୁ ଅନିଚ୍ଛୁକ । କାରଣ ସେମାନେ ସରକାରୀ କର୍ମଚାରୀ । ଯେମିତି କି ସରକାରୀ କର୍ମଚାରୀଙ୍କ ଘରେ ଡକାୟତି ଘଟିଲେ ସେମାନଙ୍କର ଅଭିଯୋଗ କରିବାର ଅଧିକାର ନାହିଁ ।

(ତା୦୮.୦୭.୧୯୮୨)



# ଦେଇଥିଲେ ପାଇ

ମୋର ଜଣେ ସମ୍ପର୍କୀୟଙ୍କ ଘରକୁ ଯାଇଥିଲି । ଶୁଣିଲି ଘରର ଗୃହିଣୀ ବାଙ୍ଗାଲୋର ଯାଇଛନ୍ତି ଝିଅପାଖକୁ । ଝିଅର କ'ଣ ପିଲାପିଲି ହେବ । ସେଇଥିପାଇଁ ଯାଇଛନ୍ତି । ଜ୍ୱାଇଁ ସେଠି ଚାକିରି କରନ୍ତି ।

ମୋର ମନେ ପଡ଼ିଲା ମୋର ଗୋଟିଏ ଯୋଡ଼ିଏ ପିଲା ଜନ୍ମ ହେଲାବେଳକୁ ମୋ ଶାଶୁଙ୍କୁ ମଧ୍ୟ ଆସିବାକୁ ପଡ଼ିଥିଲା । ଏବେ ଦିନେ ଆଉ ଜଣେ ଭଦ୍ରଲୋକ ସକାଳୁ ଆସି ପହଞ୍ଚିଲେ ନିମନ୍ତ୍ରଣ କରିବାକୁ । ତାଙ୍କ ଝିଅର ପୁଅ ନା ଝିଅ ହୋଇଛି । ଏକୋଇଶା ହେବ, ଭୋଜି କରି ଡାକୁଛନ୍ତି ।

ମୋରି ନିଜର ଆଉ ଜଣେ ସମ୍ପର୍କୀୟା ଏବେ ଆସି ବାପଘରେ ଥିଲେ । ପିଲା ହେବାର ଥିଲା ବୋଲି । ପୁଅଟିଏ ହେଲା । ତା'ପରେ ଶାଶୁଘରକୁ ବାହୁଡ଼ିଲେ । ଆଉ ଜଣେ ସମ୍ପର୍କୀୟା ତାଙ୍କ ବାପଘରେ ଅଛନ୍ତି । ତାଙ୍କର ଆସନ୍ତା ମଇ ମାସରେ ଡେଲିଭରି ହେବାର ଅଛି ।

ଏବେ ଝିଅମାନେ ବାପା ମା'ଙ୍କ ଆଡ଼କୁ ବେଶୀ ଢଳିଲେଣି ଓ ବାପ ମା' ମଧ୍ୟ ଝିଅମାନଙ୍କୁ ବେଶୀ ଆଶ୍ରା କଲେଣି । ଆଗରୁ ଯେ ନଥିଲା ତାହା ନୁହେଁ । କିନ୍ତୁ ଆଗେ ବାପ ମା'ଙ୍କର ପୁଅ ବୋହୂଙ୍କ ଉପରେ ବେଶୀ ଜୋର ଥିଲା । ତେଣୁ ସେମାନେ ନିଜ ଘରେ ବାନ୍ଧି ହୋଇ ରହୁଥିଲେ ଯେତେ ଇଚ୍ଛା ଥିଲେ ବି ଅପରପକ୍ଷକୁ ଟାଣି ହେବା ପାଇଁ ।

ଏବେ ପୁଅମାନେ ଖୋଲାଖୋଲି ଶ୍ୱଶୁର ଘରଆଡକୁ ଢଳିବା ଏବଂ ଝିଅମାନେ ନିଜ ବାପ ଘରକୁ ପ୍ରକୃତ ନିଜ ଘର ବୋଲି ପ୍ରକାଶ୍ୟ ଭାବରେ ମଣିବା ପ୍ରଚଳନ ହୋଇଗଲାଣି ।

ଏକଥା ଏତେ ସାର୍ବଜନୀନ ହେଲାଣି ଯେ ସେଥିରେ କାହାରି କିଛି ବ୍ୟସ୍ତ ହେବାର ନାହିଁ । ଯଦି ଆପଣଙ୍କର ଝିଅ ନଥାଏ ତେବେ ସେଇଟା ଅଲଗା କଥା । ନଚେତ୍ ଆପଣଙ୍କ ଝିଅର ପିଲାପିଲି ହେବାର ଥିଲେ ଆପଣଙ୍କ ଘରକୁ ଆସିବ ଏବଂ ଆପଣଙ୍କ ବୋହୂ ତା ବାପଘରକୁ ପିଲାଜନ୍ମ କରିବାକୁ ଯିବ । ଅନ୍ୟ ଅର୍ଥରେ ଆପଣ ଝିଅ-ଜ୍ୱାଇଁ ଯେଉଁଠି ଥିବେ ସେଠାକୁ ଗଲେ ଆପଣଙ୍କ ସମ୍ବୁଦ୍ଧୁଣୀ ଆପଣଙ୍କ ପୁଅ ବୋହୂ ଯେଉଁଠି ଥିବେ ସେଠାକୁ ଆସିବେ ।

ଅସୁବିଧା କେବଳ ସେଇଠି ଯେଉଁଠି ବାପ ମା ଚାହାଁନ୍ତି ପୁଅବୋହୂ ତାଙ୍କ କାବୁରେ ରହିବେ ଏବଂ ଝିଅ-ଜ୍ୱାଇଁ ନିଜ ଶାଶୁ ଶ୍ୱଶୁର ଏବଂ ବାପ ମା'ଙ୍କଠାରୁ ଛାଡ଼ିଯାଇ ତାଙ୍କ ଆଡ଼କୁ ଢଳିବେ ।

(ତା୧୩.୦୩.୧୯୮୦)





Digitized by srujanika@gmail.com

# ପ୍ରିନ୍ସପାଲଙ୍କୁ ନିଷ୍ଠୁକ ମାଡ

ଆଜିକାଲିକାର ଛାତ୍ର ଯୁବକ ବିଶୃଙ୍ଖଳ ହେଲେଣି ବୋଲି ସମସ୍ତେ ରାସ୍ତାଘାଟରେ ଆଲୋଚନା ସମାଲୋଚନା କରୁଛନ୍ତି । କିନ୍ତୁ ଆଜିକାଲି ପୋଲିସ, ତହସିଲଦାର, ସେକ୍ରେଟାରୀ, ମନ୍ତ୍ରୀ, ଏମଏଲଏ, ଏମପି, ଶିକ୍ଷକ, ଅଧ୍ୟାପକମାନେ ମଧ କମ ବିଶୃଙ୍ଖଳ ନୁହଁନ୍ତି ।

ଏଇ ସେ ଦିନ ହସପିଟାଲରେ ଗୋଟିଏ ବିଇଡି କଲେଜର ପ୍ରିନ୍ସପାଲ ରକ୍ତାକ୍ତ ଅବସ୍ଥାରେ ଆସି ପହଞ୍ଚିଲେ । ଜଣେ ଚିହ୍ନା ଡାକ୍ତର ଯେକି ଏହି ଘରୋଇ ଟ୍ରେନିଂ କଲେଜ କମିଟିର ସଭାପତି ସେ ମଧ ସାଙ୍ଗରେ ଥାନ୍ତି । ପ୍ରିନ୍ସିପାଲଙ୍କ ମୁଣ୍ଡ ଫାଟି ରକ୍ତ ବୋହୁଛି । ପ୍ୟାଣ୍ଟ କମିଜ ଚିରି ଯାଇଛି ।

ଫଟା ମୁଣ୍ଡରେ ସାତ ଆଠଟା ଷ୍ଟିଚ ପଡିଲା । ହାତ ଗୋଡରେ ମାଡ ବସିଥିଲା । ଡାକ୍ତର ସଫା କରି ଔଷଧ ଲଗାଇଲେ । ଗୋଟାଏ ଦି'ଟା ଦାନ୍ତ ମଧ ପ୍ରିନ୍ସପାଲଙ୍କର ହୁଗୁଳିଯାଇଥିଲା ।

ଘଟଣା କ'ଣ ପଚାରିଲାରୁ ଜଣାପଡିଲା ସେହି କଲେଜର ଜଣେ ଲେକ୍ଚରର ପ୍ରିନ୍ସପାଲଙ୍କୁ ମାଡ ମାରି ଏମିତି ଘାଏଲ କରିଦେଇଛନ୍ତି । ଘଟଣାଟି ଏଇଆ ।

ଲେକଚରର ଜଣକ ଏମଇଡି ପରୀକ୍ଷା ଦେଇଛନ୍ତି । ଫଳ ବାହାରି ନାହିଁ । ଫଳ ପ୍ରତ୍ୟାଶାରେ ତାଙ୍କୁ ଗ୍ରାମ୍ୟ ଅଞ୍ଚଳରେ ସ୍ଥାପିତ ଏହି ବିଇଡି ଟ୍ରେନିଂ କଲେଜରେ ଲେକଚରର ଭାବରେ ନିଯୁକ୍ତି ଦିଆଯାଇଛି ।

ତାଙ୍କ ସ୍ତ୍ରୀ ମଧ ସେହି କଲେଜରେ ବିଇଡି ପାଠ୍ୟକ୍ରମରେ ଯୋଗ ଦେଇଥିଲେ । କିନ୍ତୁ କଲେଜରେ ବର୍ଷକ ପାଇଁ ନିର୍ଦ୍ଧାରିତ ପାଠ୍ୟ ଫିସ ଦେଇନଥିଲେ । ଯେହେତୁ ସ୍ୱାମୀ କଲେଜରେ ଲେକଚରର ତେଣୁ ଫିସ ବାକି ରଖାଯାଇଥିଲା । ପରୀକ୍ଷା ପୂର୍ବରୁ ଫିସ ଦେବେ ବୋଲି କଥା ଥିଲା ।

ଦେଖୁ ଦେଖୁ ବିଇଡି ପରୀକ୍ଷା ସମୟ ଆସିଗଲା । କଲେଜ ଦରମା ନଦେଲେ ପରୀକ୍ଷା ପାଇଁ ଆଡମିଟ୍ କାର୍ଡ ଦେବେନି ବୋଲି ପ୍ରିନ୍ସପାଲ କହିବାରୁ ଲେକଚରର ତାଙ୍କୁ ଦେଖିନେବେ ବୋଲି ଧମକାଇଲେ । ତଥାପି ପ୍ରବେଶ ପତ୍ର ମିଳିଲାନି ।

ଭୁବନେଶ୍ୱରର ବିଜେବି କଲେଜରେ ପରୀକ୍ଷା କେନ୍ଦ୍ରରେ ଦେଖିଲା ବେଳକୁ ସଂପୃକ୍ତ ଲେକ୍ଚରଙ୍କ ସ୍ତ୍ରୀ ବିଶ୍ୱବିଦ୍ୟାଳୟରୁ ସ୍ୱତନ୍ତ୍ର ପ୍ରବେଶ ପତ୍ର ହାସଲ କରି (କିମ୍ବା ଜାଲ ମଧ ହୋଇପାରେ) ପରୀକ୍ଷା ଦେଇଛନ୍ତି । ସଂପୃକ୍ତ କଲେଜର ପ୍ରିନ୍ସପାଲ ଏକଥା ଦେଖି ପରୀକ୍ଷା କେନ୍ଦ୍ରର ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଏକଥା ଜଣାଇବାରୁ କ୍ରୋଧିତ ହୋଇ ପରୀକ୍ଷାର୍ଥୀନୀଙ୍କ ସ୍ୱାମୀ ଲେକଚରର ପ୍ରିନ୍ସପାଲଙ୍କୁ ସ୍ପଷ୍ଟ ଦିବାଲୋକରେ ବିଜେବି କଲେଜ କୋଠା ଭିତରେ ନିଷ୍ଠୁକ ମାଡ ଚଳାଇଲେ । ସମସ୍ତେ ଦେଖୁଥାନ୍ତି । ପ୍ରିନ୍ସପାଲ ଆହତ ହୋଇ ହସ୍ପିଟାଲରେ ଭର୍ତ୍ତି ହେଲେ ।

ଶିକ୍ଷକ ତିଆରି କରିବାର ଶିକ୍ଷକ ହେଲେ ଟ୍ରେନିଂ କଲେଜର ଅଧ୍ୟାପକ । ତାଙ୍କର ଚରିତ୍ର ଯଦି ଏଇଆ ସାଧାରଣ ଛାତ୍ର ଯୁବକଙ୍କୁ କେତେ ମାତ୍ରାରେ ଦୋଷ ଦିଆଯାଇପାରେ ?

(ତା୧୮.୦୬.୧୯୮୨)





Digitized by srujanika@gmail.com

# କେତେ ଯେ ସାବିତ୍ରୀ

ସନ୍ଧ୍ୟାବେଳେ ଶ୍ରୀମତୀ କହିଲେ ''ଟିକେ ବଜାରକୁ ଯିବା । ଅଳ୍ପ କିଛି କିଣା କିଣି ଅଛି ।''

ମୁଁ ତ ଶ୍ରୀମତୀଙ୍କ ସହିତ ଏସବୁ କାମରେ ବେଶି ଯୋଗ ଦେଇ ପାରେନା । କେଜାଣି କେମିତି ସ୍ୱତଃ ପ୍ରବୃତ୍ତ ଅଥଚ ଅନ୍ୟମନସ୍କ ଭାବରେ ଉତ୍ତର ଦେଲି 'ହଉ ଯିବା' ।

ବଜାରରେ ଭିଡ ଦେଖି ମନେ ପକେଇବାକୁ ଚେଷ୍ଟା କଲି ଯେ ଏହି କର୍ମଚାରୀ ବହୁଳ ନଗରୀରେ କ'ଣ ଆଜି ମାସର ପହିଲା ଦିନ ? ନାଁ ତ । ଆଜି ମାସର ଶେଷ ସପ୍ତାହର ପହିଲା ଦିନ । ମାସର ପହିଲାର ବଜାରରେ ଭିଡ ପାଇଁ ଅନେକ ରାଜଧାନୀ ଭୁବନେଶ୍ୱରକୁ ଗୋଲାମ ନଗରୀ ବୋଲି ମଧ କହନ୍ତି ।

ବଡିଆ ମୋଟା ମୋଟା ଦେଶୀ କଦଳୀ ଆଖିରେ ପଡିଲା । ସେଠାରେ ଭିଡ ଟିକେ କମ୍ ଦେଖି ହଠାତ୍ ସେ ଆଡକୁ ମାଡିଯାଇ କଦଳୀ ଦାମ କେତେ ବୋଲି ପଚାରିଲି । ଉତ୍ତର ମିଳିଲା '୧୨ ଟଙ୍କା' । କ'ଣ ଡଜନକୁ ୧୨ ଟଙ୍କା ? ବିସ୍ମୟରେ ମୁଁ ପୁଣି ପଚାରିଲି । ଜଣେ କିଏ ପାଖରେ ଠିଆ ହୋଇଥିଲେ । କହିଲେ 'ଆଉ କ'ଣ କାନ୍ଧିକୁ ବାର ଟଙ୍କା ?' କଦଳୀ ବିକିଲାବାଲା ଟିକିଏ ଆଡ ଆଖିରେ ବିଦ୍ରୁପ କରି ହସିଦେଲା ।

ଶ୍ରୀମତୀ ମୋ ବାହୁରେ ଟିକେ ଖେଞ୍ଚି ଦେଇ କହିଲେ 'କାଲି ପରା ସାବିତ୍ରୀ । ଦର ବଢିବନି ?'

ସାବିତ୍ରୀ ଓରଫ ସାବିତ୍ରୀ ଅମାବାସ୍ୟା । ସେଥିପାଇଁ ଏ ଭିଡ ।

ହଁ ବହୁତ ଯୋଡି ବଜାରରେ ବୁଲୁଛନ୍ତି । ସ୍ୱାମୀମାନେ ହାତରେ ଝୁଲା ବ୍ୟାଗ ଧରି ଜିନିଷ ପୂରାଇବାରେ ଓ ବୋହିବାରେ ଲାଗିଛନ୍ତି । ସାବିତ୍ରୀ ମାନେ ଭଲ ଦାମିକା ଶାଢୀ ପିନ୍ଧି ରାଜଧାନୀର ରାଜରାସ୍ତାର ଉଜ୍ଜ୍ୱଳ ଆଲୋକରେ ନିଜର ସୌନ୍ଦର୍ଯ୍ୟ ଓ ପତିବ୍ରତାର ଭିଡ ଜମାଇଛନ୍ତି । ପତ୍ନୀଙ୍କ ଆଡକୁ ଅନାଇ ଦେଖିଲି ସେ କାହିଁକି ଆଜି ମୋଟା ସାଧାରଣିଆ ' ଘରପିନ୍ଧା' ଶାଢୀଟାଏ ପିନ୍ଧି ବାହାରିଛନ୍ତି । ଯେଉଁ ମହିଳାମାନେ ଆଜି ଏହି ଦାମିକା ଶାଢୀ ପିନ୍ଧି ସ୍ୱାମୀଙ୍କୁ ସାଙ୍ଗରେ ଧରି ବଜାରକୁ ଆସିଛନ୍ତି ସେମାନେ କାଲି ସାବିତ୍ରୀ ବ୍ରତରେ କ'ଣ ପିନ୍ଧିବେ ?

ସାବିତ୍ରୀ କ'ଣ ସତରେ ସତ୍ୟବାନଙ୍କୁ ଯମ ମୁହଁରୁ ଫେରାଇ ଆଣିଥିଲେ । ଆଧୁନିକା ସାବିତ୍ରୀ ମାନଙ୍କର ଏହି ସାଙ୍କେତିକ ବ୍ରତ ପାଳନ ବଡ ମହଙ୍ଗା ବ୍ୟାପାର ପରା । ଏ ସାବିତ୍ରୀମାନେ ମାସର ଶେଷ ଭାଗରେ ପବିତ୍ରତାର ଦ୍ୱାହି ଦେଇ ଦାମିକା ଶାଢୀ କିଣାଇବା, କଦଳୀ ଡଜନ ୧୨ ଟଙ୍କାରେ ପହଞ୍ଚାଇବା, ଶୁଖିଲା ଦେଶୀ ଖଜୁରୀ କୋଳି ୬ଟାକୁ ଟଙ୍କାକରେ କିଣାଇବା, ଆଦି କାମ କରୁଛନ୍ତି । ମାସ ଶେଷକୁ ଚାକିରିଆ ସ୍ୱାମୀମାନଙ୍କର ପକେଟ ଯେତେ ଟାଣ ଥାଏ । ସେଥିରେ ଏତେ ଦାମିକା ବ୍ରତ କରିବାର ଉଦ୍ଦେଶ୍ୟ କ'ଣ ?

ଭାବୁଥିଲି ଯମ ପାଖରୁ ଏହି ମହିଳାମାନେ କ'ଣ ସତରେ ଫେରାଇ ଆଣି ପାରିବେ ସ୍ୱାମୀମାନଙ୍କୁ ? ଏମାନେ କ'ଣ ବାହା ହେବା ପୂର୍ବରୁ ଓ ପରେ ଅନ୍ୟ ପୁରୁଷକୁ ଆଉ ଆଖିରେ ବି ଅନାଇ ନାହାନ୍ତି ? ସତୀତ୍ୱ ଓ ପତିବ୍ରତାର ଗୁଣରେ ସତ୍ୟବାନଙ୍କର ପତ୍ନୀ ପୌରାଣିକ ସାବିତ୍ରୀଙ୍କର ଯେଉଁ ନିଷ୍ଠା



Digitized by srujanika@gmail.com

ଏବଂ ପରାକାଷ୍ଠାଥିଲା ଆଜିର ସାବିତ୍ରୀମାନେ ସେହି ଅଧିକାର କେତେ ମାତ୍ରାରେ ସାବ୍ୟସ୍ତ କରିପାରିବେ । କିନ୍ତୁ ଏହି ଆଧୁନିକା ସାବିତ୍ରୀମାନଙ୍କୁ ରାସ୍ତାରେ ଗୁଣ୍ଡା, ମଦୁଆ, ଦୁର୍ବୃତ୍ତ ହାରଚୋର ଓ ରୋମିଓମାନଙ୍କ ହାବୁଡରୁ ବଞ୍ଚାଇ ଘରକୁ ଫେରାଇ ଆଣିବା ଏବେ ସ୍ୱାମୀମାନଙ୍କ ପାଇଁ ଦୂରୁହ ବ୍ୟାପାର ହେଲାଣି ।

ବଜାରର ଭିଡ ମତେ ବିରକ୍ତ କରୁଥିଲା । ପତ୍ନୀ ବୋଧେ ମୋ ମନ କଥା ବୁଝି ପାରିଲେ । ସିନ୍ଦୁର ପୁଡିଆଟିଏ କିଣି କହିଲେ ଚାଲ ଯିବା ।

କହିଲି ବାସ ଏତିକି ପାଇଁ ଆସିଥିଲ ?

'ନାଇଁ, ଆଉ ଟିକିଏ ଟିକିଏ ଯାହା ଦରକାର କାଲି ରଥିକୁ ସକାଳେ ପଠାଇଲେ ନେଇଯିବ । ପୂଜାତ ଯାଇ ସନ୍ଧ୍ୟାବେଳେ ଦେବାକୁ ହବ ।

ମୋର ସନ୍ଦେହ ହେଲା ଯେ, ଶ୍ରୀମତୀ ମୋ ମନର ଭାବନାଗୁଡାକୁ ଯେମିତି ପଢି ଯାଉଛନ୍ତି । ଭାବନା ଫେରିଲା ସତ୍ୟବାନମାନଙ୍କ ଆଡକୁ । ସେବର ଏକନିଷ୍ଠ ସ୍ୱାମୀବି ଆଜି କାହାନ୍ତି ?

(ତା୨୪.୦୫.୧୯୮୨)





Digitized by srujanika@gmail.com

# ଜାଗ୍ରତ ପୋଲିସକୁ ଧନ୍ୟବାଦ

ପୋଲିସ ବିଭାଗ ତତ୍ପରତାର ଏକ ନମୁନା ନିଅନ୍ତୁ । ଜଣେ ପଦସ୍ଥ ଅଫିସରଙ୍କ ଘରତୋଳା ଆରମ୍ଭ ହେଲା । ପ୍ରଥମେ ପ୍ଲଟର ଚାରିପଟେ ପାଚେରୀ ହେବା କଥା । ଏବେ ରାଜଧାନୀରେ ମାଙ୍କଡାପଥର ଅଭାବ ହେଲାଣି । ରାଜଧାନୀ ପାଖାପାଖି ଦଶ/ବାର ମାଇଲ ଭିତରେ ବେଆଇନ ଭାବରେ ସରକାରୀ ଜମିରୁ ବର୍ଷ ବର୍ଷ ଧରି ପଥର ଓ ମୋରମ କଟା ହୋଇ ଆସୁଥିଲା । ଏବେ ତାହା ରାଜସ୍ୱ ଓ ଅନ୍ୟ ସଂପୃକ୍ତ ବିଭାଗର ଆଂଶିକ ଓ ସାମୟିକ ଧରପଗଡ ଫଳରେ ସମ୍ଭବ ହେଉନି । ତେଣୁ ଖୋର୍ଦ୍ଧା ପଟରୁ ସରକାରୀ ନିଲାମ ଡକାଯାଇଥିବା କ୍ୱାରିରୁ ସୀମିତ ସଂଖ୍ୟାରେ ପଥର ମିଳୁଛି । ତେଣୁ ପଦସ୍ତ ଅଫିସର ପାଚେରୀ ପରେ କରିବେ ଭାବି କୋଠାକାମ ଆରମ୍ଭ କରାଇଲେ ।

ଆଜିକାଲି ବିଭିନ୍ନ ଧରଣର ଚୋର(ଦରକାର ପଡିଲେ ଡକାୟତି ମଧ୍ୟ କରୁଛନ୍ତି) ବାହାରିଲେଣି । କେତେ କୋଠା କାମ ସ୍ଥାନରୁ ଲୁହା, ସିମେଣ୍ଟ ଓ ଗୋଡି ମଧ୍ୟ ଉଠିଯାଉଛି । ନିରସ୍ତ୍ର ଜଗୁଆଳିକୁ ଦିନ ଦି ପହରେ ମଧ୍ୟ ମାଡ କିମ୍ବା ଛୁରୀର ଧମକ ଦିଆଯାଉଛି । ତେଣୁ ପଦସ୍ଥ ଅଫିସରଙ୍କ ଘର ଜଗୁଆଳି ଦିନରେ ବିଶେଷ କରି ରାତିରେ ଏହି ନିଶାଚରମାନଙ୍କର ଶରବ୍ୟ ହେଲା ।

ପଦସ୍ଥ ଅଫିସର ତେଣୁ ଜଣେ ପଦସ୍ଥ ପୋଲିସ ଅଫିସରଙ୍କୁ ଅନୁରୋଧ କଲେ ଯେ, ସଂପୃକ୍ତ ଥାନାର ପୋଲିସକୁ ରାତି ବିଟ ଡିଉଟିରେ ଥିବା କନଷ୍ଟେବଲମାନଙ୍କୁ ତାଙ୍କ ବାସଗୃହ ନିର୍ମାଣ ହେଉଥିବା ଅଞ୍ଚଳରେ ଥରେ ଦି'ଥର ପଇଁତରା ମାରିବାକୁ ନିର୍ଦ୍ଦେଶ ଦେବାକୁ । ସଂପୃକ୍ତ ଥାନା ଅଫିସର 'ଉପର' ନିର୍ଦ୍ଦେଶ ଅନୁଯାୟୀ ରାତି ଡିଉଟିରେ ଥିବା ସିପାହୀମାନଙ୍କୁ ଯଥାଯୋଗ୍ୟ ନିର୍ଦ୍ଦେଶ ଦେଲେ । ସଂପୃକ୍ତ ସିପାହୀମାନେ ତା' ପରେ ରାତି ପ୍ରାୟ ତିନିଟା ବେଳେ ନିର୍ମାଣ ଚାଲିଥିବା କୋଠା ପାଖରେ ଚାଳ ଝୋପଡିରେ ରହିଥିବା ଜଗୁଆଳି ଓ ମୂଲିଆକୁ ଡାକ ମାରି କହିବାର ଶୁଣାଗଲା, ''ଆବେ ଜଗିଛି ନା ? ନାଁ ଶଳା ଶୋଇଛି ?'' ଜଗୁଆଳିକୁ ଚୋର ଭୟରେ ନିଦ ନାହିଁ । ସେ ଜବାବ ଦିଏ, '' ନାହିଁ ଆଜ୍ଞା ଚେଇଁଛୁ ।''

ଏମିତି ଦି' ତିନିଦିନ ପରେ ଦିନେ ଦିନସରା ଖଟି ଖଟି ରାତି ଗୋଟାଏ ଦିଟା ବେଳେ ଜଗୁଆଳି ଓ ହଳିଆଟିକୁ ନିଦ ଲାଗିଯାଇଛି । ପୋଲିସ ସିପାହୀମାନେ ରାତି ୩ଟା ବେଳେ ଆସି ଜଗୁଆଳିକୁ ଡାକ ମାରିଛନ୍ତି । ସେମାନଙ୍କର ନିଦ ଭାଙ୍ଗିନାହିଁ । ସିପାହୀ ଦି'ଜଣ ଘରେ ପଶି ମୂଲିଆକୁ କଷିକରି ଦଶ-ବାର ପାହାର ଠେଙ୍ଗୁଣୀ ମାଡ ଚଢେଇଲେ । ସେ ନିଦ ମଳମଳ ଆଖିରେ ମାଡ ଯୋରେ ବିହ୍ୱଳ ଅବସ୍ଥାରେ କାନ୍ଦରଡି ଛାଡିଲା । ଜଗୁଆଳି ନିଦ ଏଥିରେ ଭାଙ୍ଗିଲା ବେଳକୁ ତା' ଉପରେ ଚାରିପାହାର । ତା ସହିତ ଶଳା, ହାରାମଯାଦା ଶୋଉଛି । ଜଗିବାକୁ ରହିଛି ନା ଏଠି ଆରାମ କରିବାକୁ ରହିଛି ! ଉଠ ଶଳା... ।'' ଆହୁରି କେତେ କ'ଣ ଅଶ୍ରାବ୍ୟ ଗାଳି । ଜଗୁଆଳିଠୁ ଶୁଣି ପଦସ୍ଥ ଅଫିସର ପଦସ୍ଥ ପୋଲିସ ଅଫିସରଙ୍କୁ ଅନୁରୋଧ କଲେ ସେ ଦୟାକରି ତାଙ୍କର ସିପାହୀମାନଙ୍କୁ ତାଙ୍କ ଘର ତିଆରି ଅଞ୍ଚଳରୁ ନାଇଟ ଡିଉଟିରୁ ପ୍ରତ୍ୟାହାର କରିନେବା ପାଇଁ । ସିପାହୀମାନେ ତାଙ୍କ ନାଇଟ ଡିଉଟିରୁ ରକ୍ଷା ପାଇ ଏବେ ଟିକେ ଆରାମରେ ଶୋଇପାରୁଛନ୍ତି ବୋଲି ଖବର ମିଳିଛି ।





Digitized by srujanika@gmail.com

# ଆତିଥ୍ୟ

ଜଣେ ଭଦ୍ରଲୋକ ଆମ ଘରକୁ ଆସିଥିଲେ । କଣ ନେବେ ତାଙ୍କୁ ପଚାରିବାରୁ ସେ କହିଲେ ''ନାହିଁ ନାହିଁ, ମୋର କିଛି ଦରକାର ନାହିଁ । ଦହିଥିଲେ ଗିଲାସେ ସରବତ ଦିଅନ୍ତୁ । ନଇଲେ ଲେମ୍ବୁ ସରବତ ଟିକେ ହେଲେ ଚଳିବ ।''

ମୋର ଜଣେ ପୁତୁରା ସେଠାରେ ବସିଥିଲା । ଫେଁ କରି ହସିଦେଇ ସେଠାରୁ ଉଠି ଚାଲିଗଲା ଭିତରକୁ । ଏକଥା ଭଦ୍ରଲୋକ ଲକ୍ଷ୍ୟ କରିନାହାନ୍ତି । ଭିତରୁ ମୋ ପୁତୁରାର ଆଓ୍ୱାଜ ଆସୁଥାଏ ଠୋ ଠୋ ହୋଇ ହସିବାର । ଭଦ୍ରଲୋକ ସର୍ବତ ଖାଇ କଥା ସାରିଗଲେ । ମୁଁ ଭିତରକୁ ଆସି ପୁତୁରାକୁ ପଚାରିଲି, କିରେ ସେମିତି ହସିଲୁ ? ପୁତୁରା କହିଲା, ''ଭଦ୍ର ଲୋକଙ୍କର କିଛି ଦରକାର ନାହିଁରେ ଦହି ସରବତ ଦରକାର । ତାମାନେ କଣ ତାଙ୍କୁ ଜଳଖିଆ କି ଭାତ ଦିଆଯାଇଥାଆନ୍ତା ନା କଣ ?... ଆଜିକାଲି ମହଙ୍ଗା ଯୁଗରେ ଚା' କପେ ଘରେ ବି ପଚାଶ ପଇସା ପଡୁଛି । ସର୍ବତ ଗିଲାସକ ନିହାତି କମ୍‌ରେ ଟଙ୍କାଏ ପଡ଼ିବ । ଏମିତିକା ଗେଷ୍ଟ ଯଦି ଦିନକୁ ୧୦ ଜଣ ଆସନ୍ତି ତେବେ ଖର୍ଚ୍ଚ କେତେ ?''

ଏକଥା ଶୁଣି ମୋର ଜଣେ ଭାଇ ତା ଜୀବନର ଦିନକର ଅଭିଜ୍ଞତା ବର୍ଣ୍ଣନା କରିବାକୁ ବସିଲା । ଅନେକ ବର୍ଷ ତଳେ ସେ ପୁରୀରେ କଲେଜରେ ପଢ଼ିଲାବେଳେ ତାର ଜଣେ ଅଧ୍ୟାପକ ତାକୁ କହିଲେ, ପୁରୀକୁ ବର ହୋଇ ଆସିଥିବା ଶଳାକୁ କନ୍ୟା ସହିତ ନେଇ ଜିପ୍‌ରେ ତାଙ୍କ ଶ୍ୱଶୁର ଘରେ ଛାଡି ଦେଇ ଆସିବାକୁ । ମୋ ଭାଇର ବାପା ଇଞ୍ଜିନିୟର ଥିଲେ । ତେଣୁ ସରକାରୀ ଜିପ୍ ଥିଲା । ଜିପ୍ ଡ୍ରାଇଭର ଛୁଟିରେ ଘରକୁ ଯାଇଥିଲା । ପରୀକ୍ଷାରେ ନମ୍ବର କଟିବାଥିବାରୁ ବାଧ୍ୟତାରେ ଭାଇ ନିଜେ ଜିପ୍ ଚଳାଇ ବର କନ୍ୟା ଓ ଅଧ୍ୟାପକଙ୍କ ପତ୍ନୀକୁ ନେଇ ତାଙ୍କ ଶ୍ୱଶୁର ଘରକୁ ଗଲା । ମୋ ଭାଇର ଲୋଭ ଯେ ଅଧ୍ୟାପକଙ୍କ ଘର ଉତ୍କଳମଣି ଗୋପବନ୍ଧୁଙ୍କ ଗାଁରେ । ତେଣୁ ପୁଣ୍ୟାତ୍ମା ଗୋପବନ୍ଧୁ ଜନ୍ମମାଟି ଦର୍ଶନ କରିବାର ସୁଯୋଗ ମଧ୍ୟ ରହିଛି । କିନ୍ତୁ ସଡକ ଛାଡିଲା ପରେ ଯେଉଁ ଅଗମ୍ୟ ରାସ୍ତା ତାହା ଭାଇ ଦେଖି ଆଶ୍ଚର୍ଯ୍ୟ । ଭାରତର ମହାତ୍ମା ଗାନ୍ଧି, ଓଡ଼ିଶାରେ ଉତ୍କଳମଣି ଗୋପବନ୍ଧୁ । ତାଙ୍କ ଅଞ୍ଚଳକୁ ଯାଇଥିବା ରାସ୍ତା ଏବେ ବି ମାଟିର ଗହୀତ ରାସ୍ତା । ସେଇଥିପାଇଁ ଜିପର ପ୍ରୟୋଜନ ପଡ଼ିଲା । ତଥାପି ଏତେ କଦର୍ଯ୍ୟ ରାସ୍ତା । ସ୍ୱାଧୀନତା ପାଇଁ ଓଡ଼ିଶାର ଦରିଦ୍ର ନାରାୟଣଙ୍କ ପାଇଁ ଯେଉଁ ଗୋପବନ୍ଧୁ ଏତେ କଲେ ତାଙ୍କ ଅଞ୍ଚଳ ସ୍ୱାଧୀନତାର ୪୦ ବର୍ଷ ପରେ ବି ଏତେ ଅବହେଳିତ ।

ଅଧ୍ୟାପକଙ୍କ ପତ୍ନୀ ନିଜ ଗାଁକୁ ବିବାହର ପ୍ରାୟ ୨୦ ବର୍ଷ ପରେ ଯାଉଛନ୍ତି । ବାଟଯାକ କହି କହି ଯାଉଛନ୍ତି କି ରାସ୍ତା ଏଇ ? ୟାକୁ ରାସ୍ତା କୁହାଯିବ । ଯମ କି ଏ ଅଞ୍ଚଳକୁ ଆସିବ ? ପୁଣି ନିଜ ବାପ ଘର ଗାଁରେ ପହଂଚି ଘରେ ଅଧ୍ୟାପକ ପତ୍ନୀ କହିଲେ ଏମିତି ଗାଁ । ଏମିତି ରାସ୍ତା କରିଛ ଗାଁକୁ ! ଛି ଛି ମୁଁ ଜାଣିଥିଲେ ଆସିନଥାନ୍ତି । ସେ ନଈବନ୍ଧ ଉପରୁ ଗାଡି ଖସିଯାଇଥାନ୍ତା । କେହି ବଞ୍ଚିଥାନ୍ତେ ?

ଆମ ଭାଇ ସେତେବେଳକୁ ମନେ ମନେ ବ୍ୟସ୍ତ ହୋଇଗଲାଣି । ଜଲଦି ଦିନ ଥାଉ ଥାଉ ଫେରିବାକୁ ହେବ କେମିତି । ପହଞ୍ଚିଲା ପରେ ଦିଜଣ ଲୋକ ଗିଲାସେ ଲେଖାଏଁ ପାଣି ଧରି ଠିଆ ହୋଇଗଲେ । ଗୋଟାଏ ଗିଲାସ ପାଣି ପିଇଲା ସେ । ଅଧ୍ୟାପକ ପତ୍ନୀ ମଧ୍ୟ ତରତର ହେଲେ ଫେରିବାକୁ ।



Digitized by srujanika@gmail.com

ଯାହା ହେଉ ଗାଡିରେ ବସିଲାବେଳକୁ ଅଧ୍ୟାପକଙ୍କ ଶଳା ଗୋଟିଏ ଗ୍ଲାସ ଧରି ଭାଇକୁ ଢିପ୍ ପାଖରେ କହିଲା; ଆଜ୍ଞା "ଟିକେ ପିଇଦିଅନ୍ତୁ । ଭାଇ କହିଲା ନାହିଁ ମୁଁ ପିଇଲିଣି । ସେ ଭାବୁଥାଏ ଯେ, ପୁଣି ଗିଲାସେ ପାଣି କାହିଁକି ପିଇବ । ଘରକୁ ଆହୁରି ୨/୩ ଜଣ ଆସି ଅନୁନୟ ବିନୟ ହୋଇ କହିଲେ, ନାହିଁ ଆଜ୍ଞା ଟିକେ ନିଅନ୍ତୁ । ଯେମିତି ଇଚ୍ଛା ଆପଣଙ୍କର ସେତିକି ହେଉ..."

ଭାଇ ଆମର ଭାବିଲା ବୋଧେ ସର୍ବତ କରି ଆଣିଛନ୍ତି । ନଚେତ ଏତେଜଣ କାହିଁକି ଲାଗିପଡ଼ିଛନ୍ତି । ତେଣୁ ଗ୍ଲାସଟି ନେଇ ଓଠରେ ଲଗାଇଲା ସେଇ ଖାରିଆ ପାଣିଗୁଡାକ । ଦି'ଢୋକ ପିଇ କହିଲା "ହଉ ଆଜ୍ଞା ଯାଉଛି ।"

(ତା୧୪.୦୭.୧୯୮୭)



# ହାସ୍ୟରସ ଓ ବାସ୍ତବ ଜୀବନର ସତ୍ୟତା

ଏବେ ଦିନେ ଗୋଟିଏ ହିନ୍ଦି ଚିତ୍ର ଦେଖିବାକୁ ଯାଇଥିଲି । ଚିତ୍ରର ନାମ 'ଗୋଲମାଲ' । ନାମରୁ ଭାବିଥିଲି ଭଲ ହୋଇ ନଥିବ । କିନ୍ତୁ ଭଲ ଲାଗିଲା । ବେଶ ହାସ୍ୟରସାତ୍ମକ ଚିତ୍ର । ସ୍ୱାଭାବିକ ରୀତିରେ ଚିତ୍ରର ବିଷୟବସ୍ତୁ ଅଭିନେତା ଓ ଅଭିନେତ୍ରୀ ମାନଙ୍କ ଦ୍ୱାରା ଚିତ୍ରଣ ହୋଇଛି ।

ପୁରୁଣା ମୂଲ୍ୟବୋଧ ଓ ନୂଆ ମୂଲ୍ୟବୋଧ ମଧ୍ୟରେ ପାର୍ଥକ୍ୟ ଦର୍ଶାଯାଇଛି । ପୁରୁଣା ଚଳନି ଓ ନୂଆ ଚଳନିର ଆଦର ଓ ଅନାଦର ମଧ ଦେଖିବାକୁ ମିଳିଲା ।

ଗୋଟିଏ ଦୃଶ୍ୟରେ ନାୟକ ବହୁତ କମ ଲମ୍ବର ପଞ୍ଜାବୀଟିଏ ପିନ୍ଧି ଆସିଛି । ସେ ଯେଉଁ କମ୍ପାନୀରେ କାମ କରେ ତାହାର ମାଲିକ ପଚାରିଲେ ଯେ ସେ ଏତେ ଛୋଟ ଲମ୍ବର କୁର୍ତ୍ତା କାହିଁକି ପିନ୍ଧିଛି ।

ନାୟକ ଉତ୍ତର ଦେଲେ ଯେ ତାଙ୍କର ପିତା ଜଣେ ଆଦର୍ଶ ଓ ନୀତିବାନ ପୁରୁଷ ଥିଲେ । ସେ କହୁଥିଲେ ପୋଷାକ ପିନ୍ଧିବା କେବଳ ଶରୀରର ନଗ୍ନତାକୁ ଢାଙ୍କିବା ପାଇଁ । ଭାରତରେ ଏତେ ଗରିବ ଲୋକ ଅଛନ୍ତି ଯେ ଯଦି ସବୁ କୁର୍ତ୍ତା ପିନ୍ଧୁଥିବା ଲୋକେ ସେମାନଙ୍କର କୁର୍ତ୍ତାର ଲମ୍ବ ମାତ୍ର କେତେ ଇଞ୍ଚ କମ୍ କରି ସିଲାଇ କରନ୍ତି ଓ ତେବେ ଯେତେ କପଡା ବଳିବ ସେଥିରେ ହଜାର ହଜାର ଲକ୍ଷ ଲକ୍ଷ ଲୋକ ପୋଷାକ ପିନ୍ଧିବାକୁ ପାଇବେ ।

ଏହି ଡାୟଲଗ ଚିତ୍ରରେ ହୁଏତ ଆମୋଦ ଦାୟକ ପରିସ୍ଥିତି ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ସେଥିରେ କେତେ ସତ୍ୟତା ରହିଛି ? ଆମର ଲମ୍ବା କୁର୍ତ୍ତା, ଢିଲା ପ୍ୟାଣ୍ଟର ତଳ ଭାଗରେ କେତେ ଅଧିକ କପଡା ନଷ୍ଟ ହୋଇଛି ତାହାର ହିସାବ ଲଗାଇଲେ କେତେ କୋଟି ଲଙ୍ଗଳା ଲୋକଙ୍କ ପାଇଁ ସତରେ ପୋଷାକ ହୋଇପାରନ୍ତା ।

କିନ୍ତୁ ହାୟ । ସେ ଲୋକଙ୍କ ପାଖରେ ପଇସା କାହିଁ କପଡା କିଣିବାକୁ ?

(ତା୨୩.୦୮.୧୯୮୭ରିଖ)





Digitized by srujanika@gmail.com

# ଡାକ୍ତରଙ୍କର 'ଖାନା' ଦରକାର

ମଣିଷର ଦାରିଦ୍ର୍ୟ ସହିତ ଶାରୀରିକ ବେମାର ମିଶିଲେ ଏ ଦେଶରେ ମୃତ୍ୟୁ ସହିତ ମୁକାବିଲା କରିବାକୁ ଭଗବାନଙ୍କର ଆଶ୍ରୟ ନିଅନ୍ତି ଲୋକେ । ନିହାତି ଅସହାୟ ଲୋକ ଅଦୃଶ୍ୟ ଯମପୁରକୁ ଯିବା ପୂର୍ବରୁ ମର୍ତ୍ତ୍ୟ ଲୋକର ମର୍ତ୍ତ୍ୟପୁରକୁ ଯାଏ ବାଧ ହୋଇ ଆରୋଗ୍ୟ ହେବାକୁ । ମର୍ତ୍ତ୍ୟର ଯମପୁର ହେଲା ଯେ କୌଣସି ଭାରତୀୟ ଡାକ୍ତରଖାନା ।

ହସ୍ପିଟାଲର ଓଡ଼ିଆ ଅନୁବାଦ କିଏ କେବେ ଡାକ୍ତରଖାନା କରିଥିଲା କେଜାଣି । ଡାକ୍ତରମାନେ ରୋଗୀକୁ ଭଲ କରନ୍ତି ନିଶ୍ଚୟ । ତାନହେଲେ ଲୋକ ସେମାନଙ୍କ ପାଖକୁ ଯାଆନ୍ତା କାହିଁକି ? କିନ୍ତୁ କେତେକ ଡାକ୍ତରଙ୍କୁ ''ଖାନା' ନଦେଲେ ରୋଗ ମୁକ୍ତ ତ ଦୂରର କଥା ଚିକିତ୍ସା ଆରମ୍ଭ ହେବା କଷ୍ଟକର ବ୍ୟାପାର । ପୁଣି ଚିକିତ୍ସା ପାଇଁତ ଅଣ୍ଟି ଓ ଅଣ୍ଟାରେ ଜୋର ଦରକାର ।

ଏକଥା ସବୁ କହିବାର ଉଦ୍ଦେଶ୍ୟ ହେଲା ଏବେ ଏକ ଘଟଣା ନଜରକୁ ଆସିଛି । ଦିନେ ସ୍ୱାସ୍ଥ୍ୟମନ୍ତ୍ରୀ ଜଣେ ତାଙ୍କର ସହଯୋଗୀ ମନ୍ତ୍ରୀଙ୍କୁ କଟକ ବଡ ଡାକ୍ତରଖାନାକୁ ଦେଖିବାକୁ ଯାଇଥିଲେ । ସହଯୋଗୀ ମନ୍ତ୍ରୀ ରାସ୍ତା ଦୁର୍ଘଟଣାରେ ଶକ୍ତ ଆହତ ହୋଇ ହସ୍ପିଟାଲ 'କ୍ୟାବିନ୍'ରେ ପଡ଼ିଛନ୍ତି । ହଠାତ ଜଣେ ରୋଗୀ ତାଙ୍କର ଗୋଡ ହାତ ତଳେ ପଡ଼ି ବିନୟ ହେଲା ଯେ, ତାର ଖାଇବାକୁ ନାହିଁ । ଅପରେସନ ହେଉନାହିଁ । ଖାଇବାକୁ ଯାର ନାହିଁ ସେ ଔଷଧ କିଣିବ କେମିତି ? ମୁଖ୍ୟମନ୍ତ୍ରୀଙ୍କୁ କହି ରିଲିଫ ପାଣ୍ଠିରୁ କିଛି ପଇସା ମନ୍ତ୍ରୀ ଦିଆଇ ଦେବେ ବୋଲି ସେ ଅନୁରୋଧ କଲା ।

ମନ୍ତ୍ରୀ ବୁଝିଲେ ଯେ ରିଲିଫ୍ ପାଣ୍ଠିରୁ ପଇସା ଆସିବାକୁ ସମୟ ଆସିବ । ପୁଣି କେତେ ସେଣାରେ ପାଣି ଉଠେ ରିଲିଫ୍ ଟଙ୍କା ପହଞ୍ଚିବାକୁ । ଦୟା ପରବଶ ହୋଇ ମନ୍ତ୍ରୀ ନିଜ ପକେଟରୁ ନଗଦ ୫୦୦ ଟଙ୍କା ରୋଗୀ ଚିକିତ୍ସା ପାଇଁ ଦେଲେ ଡାକ୍ତରଙ୍କ ହାତକୁ । ମେଡିକାଲ ସୁପରିଟେଣ୍ଡେଣ୍ଟଙ୍କ ଦାୟିତ୍ୱରେ ଅସ୍ଥାୟୀ ଭାବରେ ଥିବା ଜଣେ ଅନ୍ୟ ବିଭାଗର ପ୍ରଫେସରଙ୍କ ହାତରେ ମନ୍ତ୍ରୀ ରୋଗୀର ଚିକିତ୍ସା ପାଇଁ ଟଙ୍କା ଦେଲେ । ସାଙ୍ଗରେ ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକ ମଧ୍ୟଥିଲେ । ତେଣୁ ମନ୍ତ୍ରୀ ସନ୍ତୋଷଲାଭ କରି ଫେରିଲେ ଯେ, ଅନ୍ତତଃ ସେହି ରୋଗୀଟି ଅପରେସନ ହୋଇ ଆରୋଗ୍ୟ ଲାଭ କରି ଘରକୁ ଯିବ । ରୋଗୀଟି ଆପାତତଃ ସନ୍ତୁଷ୍ଟ ହେଲା ଯେ ମନ୍ତ୍ରୀ ଯେତେବେଳେ ନିଜେ ଟଙ୍କା ଦେଲେ ବଡ ଡାକ୍ତରଙ୍କ ହାତରେ ତାର ଚିକିତ୍ସା ତତକ୍ଷଣାତ୍ ହେବ ।

ମନ୍ତ୍ରୀ ଡାକ୍ତରଖାନାକୁ ସେଦିନ ଆସିବାର ପାଞ୍ଚ ଦିନପରେ ମଧ ରୋଗୀଟି ୱାର୍ଡ ବାରଣ୍ଡାରେ ଭୋକ ଉପାସରେ ବୁଲୁଥିବାର ଦେଖାଗଲା । ଖୋଜି ଖୋଜି ମନ୍ତ୍ରୀଙ୍କ ଠାରୁ ଟଙ୍କା ନେଇଥିବା ପ୍ରଫେସରଙ୍କ ପାଖକୁ ଗଲା । ସେ କହିଲେ: 'ଟଙ୍କା କ'ଣ କରିବୁ ? ତୁତ ଭଲ ହୋଇକି ଗଲେ ହେଲା ବ୍ୟସ୍ତ କାହିଁକି ?'' ସେ ପ୍ରଫେସର ରୋଗୀଥିବା ୱାର୍ଡର ବିଭାଗୀୟ ଡାକ୍ତର ନୁହଁନ୍ତି କିମ୍ବା ମେଡିକାଲ ସୁପରିଟେଣ୍ଡେଣ୍ଟ ମଧ ନୁହଁନ୍ତି ।

ଡାକ୍ତରଙ୍କୁ 'ଖାନା' ଦରକାର । ଡାକ୍ତର ପଇସା ତ ଖାଇଲେ । ରୋଗୀକୁ ମଧ ଖାଇବେ । ଏହି ପ୍ରକାର ଡାକ୍ତରଙ୍କୁ ନେଇ ଏ ଦେଶର ଅସଂଖ୍ୟ ଦରିଦ୍ର ଅସହାୟ ରୋଗୀ ଭଲ ହେବେ ବା ମରିବେ । ଭାରତୀୟ ଲୋକଙ୍କର ବଞ୍ଚିବାର ଇଚ୍ଛା ଓ ଶକ୍ତି ଯଥେଷ୍ଟ ବେଶୀ ବୋଲି ସେମାନେ ବଞ୍ଚୁଛନ୍ତି ।



Digitized by srujanika@gmail.com

କିନ୍ତୁ ମନ୍ତ୍ରୀଙ୍କ ଠାରୁ ରୋଗୀ ପାଇଁ ପାଞ୍ଚଶହ ଟଙ୍କା ନେଇ ହଜମ କରିଦେବାର ଏ ଯେଉଁ ଦୁଃସାହସ ତାହା ଦେଖି ତାଜ୍ଜୁବ ଲାଗୁଛି । ଏ ଡାକ୍ତରଖାନା ନା ଯମଦୂତ ? ଏ ଡାକ୍ତର ସମାଜର ପ୍ରତିଷ୍ଠିତ ସମ୍ମାନିତ ବ୍ୟକ୍ତି । ଡାକ୍ତର ସଂଘ ଏ ବିଷୟରେ କିଛି କରିବେ କି ? କାରଣ ଏ ପ୍ରକାର ଡାକ୍ତର, ଡାକ୍ତର କୁଳର ବଦନାମ କରୁଛନ୍ତି । ମନ୍ତ୍ରୀ କିଛି କରିବେ କି ?

(ତା୨୯.୦୭.୧୯୮୭ରିଖ)



# ଏମାନେ ବି ମଣିଷ

ରାଜଧାନୀରେ ବହୁତ ଲୋକ ହୋଇଗଲେଣି । ଆଜିକାଲି ସକାଳେ ସନ୍ଧ୍ୟାରେ ପ୍ରଧାନ ପ୍ରଧାନ ରାସ୍ତା କେଇଟାରେ କଟକ ପରି ଭିଡ ହୋଇଯାଏ । ଦୋକାନ ବଜାର, କୋଠାବାଡି, ରିକ୍ସା, ମଟର ବଢି ବଢି ଚାଲିଛି । କୁଲି ମୂଲିଆ,ରିକ୍ସାବାଲା, ମାଳି, ଗଉଡ, ଦୋକାନୀ, କିରାନୀ, ଅଫିସରମାନଙ୍କୁ ରହିବାକୁ ଜାଗା-ଘର ସୁବିଧାରେ ମିଳୁନି ।

ସବୁଠାରୁ ବେଶୀ ଅସୁବିଧା ଏ ରିକ୍ସାବାଲା, ଧୋବ. ଟୋକେଇ ବୁଣାଳି, କୁଲି ମୂଲିଆଙ୍କର । ଯେଉଁଠି ଖାଲି ଜାଗା ପାଇଲେ ସେଇଠି ଝାଟି-ମାଟି-ନଡା ବାଉଁଶରେ ଚାଳିଆ ଖଣ୍ଡେ କରିଦେଲେ ହାଣ୍ଡି କୁଣ୍ଡେଇ ସଂସାର ଲାଗି । ସରକାରୀ ଏବଂ ମ୍ୟୁନିସିପାଲିଟି କର୍ମଚାରୀମାନେ ପୁଲିସ ଫଉଜ ଧରି ବର୍ଷରେ ଥରେ ଅଧେ ଏ ମୁଣ୍ଡରୁ ସେମୁଣ୍ଡ ଚଡିଯାଆନ୍ତି ଏମାନଙ୍କୁ । କ୍ୟାବିନ ପାନ ଦୋକାନୀ ଓ ଚା'ବାଲାଙ୍କୁ ବି ବର୍ଷରେ ଥରେ ଅଧେ । ଦୁଇ ଚାରିଦିନ ସରକାରୀ ଜାଗା ରାସ୍ତାକଡ ଖାଲି ହୋଇଯାଏ, ତା'ପରେ ପୁଣି ଯେଉଁ କଥାକୁ ସେଇକଥା ।

ଏ ସରକାରୀ ଜାଗାରେ ଝାଟି-ମାଟି ଘରେ ମୁଣ୍ଡ ଗୁଞ୍ଜିବା ଲୋକଙ୍କୁ ଛାଡି ରାଜଧାନୀ ଚଳି ପାରିବନି କି ଏମାନେ ଏ ଜାଗା ଛାଡିଯିବାକୁ ମନ କରିବେନି । ଧୋବା-ଭଣ୍ଡାରୀ, ଦୁଧବାଲା, ପାନଦୋକାନୀ-କୁଲି, ମୂଲିଆ ଠିକା ଚାକର, ଚାକରାଣୀ ନଥିଲେ କି ହଇରାଣ ଅବସ୍ଥା ହେବ କହିବା ଦରକାର ହେବନି । କିନ୍ତୁ ଏମାନଙ୍କ ଥଇଥାନ ଲାଗି ବିଶେଷ ବ୍ୟବସ୍ଥା କେହି କରିପାରି ନାହାନ୍ତି । ଏ ସମସ୍ୟା ଖାଲି ଏ ସହରରେ ନୁହେଁ ପ୍ରତିଟି ସହରରେ ସମାନ ସମସ୍ୟା ।

କିନ୍ତୁ ଏପରି ସମସ୍ୟାର ସମାଧାନ ରାଜଧାନୀ ପରି ସହର ଲାଗି ହୁଏତ ଟିକେ ସହଜ ହୋଇପାରେ ।

ବର୍ତ୍ତମାନ ପାଇଁ ହୁଏତ ଚାରି ଛଅଟି ଜାଗାରେ ସରକାରୀ ଲେବର କଲୋନୀ କରାଯାଇ ପାରନ୍ତା ଏବଂ ସେଠାକାର ଘରଗୁଡ଼ିକ ଭଡ଼ାରେ ଠିକ୍ ଲୋକଙ୍କୁ ଦିଆଯାଇପାରନ୍ତା । ସେମାନେ ସେମାନଙ୍କର କୁଲି, ମୂଲିଆ, ଡ୍ରାଇଭର,କ୍ଲିନରଙ୍କ ପାଇଁ ସାମୟିକ ଥଇଥାନର ବ୍ୟବସ୍ଥା କରିପାରନ୍ତେ ସରକାରୀ ସାହାଯ୍ୟ ଏବଂ ଅନୁମତି ନେଇ । ଯା' ଫଳରେ ହୁଏତ କିଛିଟା ସମସ୍ୟାର ସମାଧାନ ହୁଅନ୍ତା ?

(ତା୧୫.୦୩.୧୯୮୦ରିଖ)





Digitized by srujanika@gmail.com

# ଉପହାରର ବାଧ୍ୟତା

କାଲି ସଂଧ୍ୟାବେଳେ ଜଣେ ସମ୍ପର୍କୀୟଙ୍କ ଘରକୁ ଯାଇଥିଲି । ରାତି ପ୍ରାୟ ନ'ଟା ହେଲାଣି । ସମ୍ପର୍କୀୟଙ୍କ ପତ୍ନୀ ତାଙ୍କ ସହିତ ଲଗାଇଥାନ୍ତି ସେମାନଙ୍କର ଜଣେ ସମ୍ପର୍କୀୟଙ୍କ ଘରକୁ ନିମନ୍ତ୍ରଣ ରକ୍ଷା କରିବାକୁ ଯିବା ପାଇଁ ।

ତାଙ୍କର ସମ୍ପର୍କୀୟଙ୍କ ଘରେ ପୁଅ ଏକୋଇଶିଆ । ସେମାନେ ଖାଇବାକୁ ନିମନ୍ତ୍ରଣ କରିଯାଇଛନ୍ତି । ବନ୍ଧୁ ରକ୍ଷା ରଖିବାକୁ ହେବ । ଭୁବନେଶ୍ୱରରେ ଶହୀଦନଗରରୁ ଆଠନମ୍ବର ୟୁନିଟର ଶେଷ ଭାଗ ଅନ୍ୟୂନ ଆଠ ନ' କିଲୋମିଟର ରାସ୍ତା ।

ସ୍ୱାମୀ-ସ୍ତ୍ରୀ ଉଭୟ ଗଲେ ରିକ୍ସା ଭଡା ଯିବା ଆସିବା ଅନ୍ତତଃ ଦଶ ଟଙ୍କା ଏବଂ ସମୟ ଲାଗିବ । ଖାଇବା ସମେତ ନିହାତି କମ୍‌ରେ ଚାରିଘଣ୍ଟା । ନିହାତି କମ୍‌ରେ ଉପହାର ସାମଗ୍ରୀ ହେଉ ବା ଟଙ୍କା ଆକାରରେ ହେଉ କୋଡ଼ିଏ ଟଙ୍କା । ଯଦି ରିକ୍ସାରେ ନଯାଇ କେବଳ ସ୍ୱାମୀ ଯାଆନ୍ତି ସାଇକେଲରେ ତେବେ କୋଡିଏ ଟଙ୍କା ଖର୍ଚ୍ଚ ଛଡା ଜଣେ ଅଫିସ କାମ କରି କ୍ଲାନ୍ତ ହୋଇଥିବା ଲୋକକୁ ଉଠାଣି ଗଡାଣିରେ ଅନ୍ତତଃ ଅଠର କିଲୋମିଟର ସାଇକେଲ ପେଲିବାକୁ ହେବ । ସ୍ୱାମୀ-ସ୍ତ୍ରୀଙ୍କ ଠେଲାପେଲା ଭିତରେ ଆଉ ସେମାନେ ଏକୋଇଶିଆ ଭୋଜି ଖାଇବାକୁ ଗଲେ ନାହିଁ ।

ଏ ପ୍ରକାର ଘଟଣା ଆମ ସାମାଜିକ ଜୀବନରେ ନିତିଦିନିଆ କଥା । ମଧ୍ୟବିତ୍ତ ପରିବାରମାନଙ୍କ ମଧ୍ୟରେ ମାସକୁ ଅନ୍ତତଃ ଚାରିଟା ବାହାଘର, ଏକୋଇଶିଆ, ଜନ୍ମଦିନ ଇତ୍ୟାଦି ନିମନ୍ତ୍ରଣ ଆସୁଛି ।

ଏସବୁ ନିମନ୍ତ୍ରଣ ରକ୍ଷା କଲେ ପ୍ରତି ନିମନ୍ତ୍ରଣରେ ଅନ୍ତତଃ ହାରାହାରି ପଚିଶ ଟଙ୍କା ଖର୍ଚ୍ଚ ହେଲେ ମାସକୁ ଶହେ ଟଙ୍କା । ବର୍ଷକୁ ବାରଶହ ଟଙ୍କା । ଯଦି ବର୍ଷକୁ ନିଜ ସମ୍ପର୍କୀୟମାନଙ୍କ ମଧ୍ୟରେ କାହାରି ବା'ଘର ହୁଏ ତେବେ ପ୍ରତି ବା'ଘର ପିଛା ଅନ୍ତତଃ ଦୁଇଶ ଅଢ଼େଇଶ ଖର୍ଚ୍ଚ ଲାଗିବ । ଗୋଟିଏ ସାଧାରଣ ମଧ୍ୟବିତ୍ତ ପରିବାରର ଏ ବାବଦ ଖର୍ଚ୍ଚ ମାସକୁ ଶହେରୁ ଦେଢ଼ଶ ଟଙ୍କା । କୌଣସି ନିର୍ଦ୍ଦିଷ୍ଟ ମାସରେ ତିନିଶହ ଚାରିଶହ ଟଙ୍କା ମଧ୍ୟ ହୋଇପାରେ ।

ଏ ପ୍ରକାର ସାମାଜିକ ବ୍ୟବସ୍ଥାରେ ସମସ୍ତେ ଅତିଷ୍ଠ । ତଥାପି ବିବାହ, ଭୋଜି କରି ଲୋକଙ୍କୁ ନିମନ୍ତ୍ରଣ କରିବାକୁ ହେବ । ନିମନ୍ତ୍ରିତ ଲୋକ ନିଜର ଆର୍ଥିକ ଅବସ୍ଥା ଯାହାହେଉ ପଛକେ ଉପହାର ଟଙ୍କା କିମ୍ବା ଦ୍ରବ୍ୟ ଆକାରରେ ଦେବାକୁ ମଧ୍ୟ ବାଧ୍ୟ ।

ସମସ୍ତେ ହଇରାଣ ହେଉଛନ୍ତି । କିନ୍ତୁ ସେ ବ୍ୟବସ୍ଥା ବିରୋଧରେ କେହି କିଛି କରିବାକୁ ନାରାଜ । ଉପହାର ନେବା ଅନେକ ସମୟରେ ସେପରି ଲାଭଜନକ ନୁହେଁ କାରଣ ଉପହାର ଦେବାର ବାଧ୍ୟତା । ବଡ ଦୁଃଖଦାୟକ । ତଥାପି ଏକ ନାଚାର ଅବସ୍ଥା ।

(ତା୨୦.୦୩.୧୯୮୦ରିଖ)





Digitized by srujanika@gmail.com

# ଆନ୍ତରିକତାହୀନ ଆତିଥ୍ୟ

ଆମେ ସମସ୍ତେ ବର୍ଷକୁ ନିହାତି କମ୍‌ରେ ଦି' ଚାରିଟା ବାହାଘର ଭୋଜି ଖାଇବାକୁ ସୁଯୋଗ ପାଉ । ବା'ଘର ଭୋଜି ଗୋଟାଏ ସେପରି କିଛି ସୁଖପ୍ରଦ ଘଟଣା ନୁହେଁ ।

ଭୋଜି ଖାଇବାକୁ ଚାହିଁଲେ ଆପଣ ଯାଇ ପହଞ୍ଚିବେ ନିମନ୍ତ୍ରଣ କର୍ତ୍ତାଙ୍କ ଘରେ । ମଧ୍ୟବିତ୍ତ ଓ ଉଚ୍ଚ ମଧ୍ୟବିତ୍ତ ଯେଉଁମାନଙ୍କର ସମାଜରେ ସ୍ଥିତି ବର୍ତ୍ତମାନ ତ୍ରିଶଙ୍କୁ ଅବସ୍ଥା ସହିତ ସମାନ, ସେଇମାନେ ହିଁ ଏହି ଭୋଜିଭାତର ଆୟୋଜନ କରି ନିମନ୍ତ୍ରଣ କରୁଛନ୍ତି । ଆପଣ ଦେଖିବେ ଗୁଡାଏ ଫୋଲ୍‌ଡିଂ ଲୁହା ଚଉକି ଧାଡି ଧାଡି ହୋଇ ପଡ଼ିଥିବ । ସେଥିରେ କ୍ଷୁଧାଗ୍ରସ୍ତ ଅତିଥିମାନେ ଚୁପ୍‌ଚାପ ହୋଇ ବସିଥିବେ । ନିଜ ନିଜ ମଧ୍ୟରେ ପରିଚୟ ଥିବା ଲୋକେ ଗପୁଥିବେ ।

ଆପଣ ପହଞ୍ଚିଲା ମାତ୍ରେ କର୍ତ୍ତା ନିଜେ (ଅନେକ ସମୟରେ ତାଙ୍କର ପ୍ରତିନିଧିତ୍ୱ କରୁଥିବା କେହି) ଆପଣଙ୍କୁ ଚିହ୍ନିଥାଆନ୍ତୁ ବା ନ ଥାଆନ୍ତୁ ହସ ହସ ମୁଖରେ (ସେଇଟା ମେକାନିକାଲ) ପାଛୋଟି ନେଇ ଗୋଟାଏ ଚଉକୀ ଦେଖାଇ ଦେବେ । ଆପଣ ଯଦି ତାଙ୍କର ଘନିଷ୍ଠ ଚିହ୍ନା ହୋଇଥାଆନ୍ତି ତେବେ ପଦେ ଦିପଦ କଥାବାର୍ତ୍ତା ହେବାକୁ ହୁଏତ ଚେଷ୍ଟା କରିବେ । ବେଶୀ କଥାବାର୍ତ୍ତା ସମ୍ଭବ ନୁହେଁ, କାରଣ ଆପଣଙ୍କ ପଛକୁ ଆହୁରି ଅତିଥି ଥିବେ ।

ଆପଣ ଗଲା ବେଳକୁ ଯଦି ଖାଇବା ଆରମ୍ଭ ନ ହୋଇଥିବ ତେବେ ବହୁତ ବେଶୀ ଲୋକ ନଥିଲେ ହୁଏତ ପ୍ରଥମ ଦଫାରେ ଆପଣଙ୍କ ନମ୍ବର ଲାଗି ଯାଇପାରେ । ଯଦି ପ୍ରଥମ ବ୍ୟାଚ୍‌ରେ ଲୋକେ ଖାଉଥିବେ କର୍ତ୍ତାଙ୍କ ତରଫରୁ କିଏ ଜଣେ ଆସି ନମ୍ରତା ଏବଂ ଭଦ୍ରତାର ଅଭିନୟ କରି ଦାନ୍ତ ନିକିଟି କହିବେ 'ଆଜ୍ଞା ଟିକେ ଡେରି ହେବ । ଫାଷ୍ଟ ବ୍ୟାଚ୍ ବସିଛନ୍ତି ।'

ଆପଣଙ୍କର ଯେମିତି ଆଉ କିଛି କାମ ନଥିଲା ଖାସ ଖାଇବକୁ ହିଁ ଆସିଛନ୍ତି । ଆପଣଙ୍କୁ ଅପ୍ରତିଭ ଲାଗିବ । ତଥାପି ଆପଣ କହିବେ 'ନାହିଁ ନାହିଁ ବ୍ୟସ୍ତ ହୁଅନ୍ତୁନି' ।

ତା'ପରେ ଯେତେବେଳେ ଆପଣଙ୍କ ପାଳି ପଡ଼ିବ ଦେଖିବେ ହଠାତ୍ ଠେଲାପେଲା । ଯଦି କୋଠା ଉପର ଛାତରେ ହେଉଛି ପାହାଚରେ ଏତେ ଜାମ ଯେ କହି ହେବନି । କର୍ତ୍ତାଙ୍କ ତରଫରୁ ନୂଆ ବ୍ୟାଚ୍‌ରେ ବସିବାକୁ ଯାଉଥିବା ଅତିଥିମାନଙ୍କର ମୁଣ୍ଡ ମଧ୍ୟ ଗଣା ହେଉଥିବ । କାରଣ ଯେତେଟା ପତର ପଡ଼ିଥିବ ସେତିକି ଲୋକଙ୍କୁ ହିଁ ନେବାକୁ ପଡ଼ିବ । ଯଦି ଆପଣ ସେ ଘଣ୍ଟା ଚକଟା ଭିତରେ ଉପରକୁ ଠିକ୍ ସମୟରେ ପହଞ୍ଚିପାରିଲେ ନାହିଁ ତେବେ ପରବ୍ୟାଚ୍‌କୁ ରହିବାକୁ ପଡ଼ିବ ।

ଖାଇବା ପରେ ଜଲଦୀ ହାତ ଧୁଅ । ଧର ପାନ ବା ସିଗାରେଟ । ଇଚ୍ଛା ହେଲେ ଉଭୟଟା ଆଣିପାରନ୍ତି । ଯଦି ସାଙ୍ଗରେ ସ୍ତ୍ରୀଙ୍କୁ ନେଇ ଯାଇଥାଆନ୍ତି ତେବେ ସେ ମହିଳାଙ୍କ ବ୍ୟାଚ୍‌ରେ ବସିବା ପାଇଁ ଡେରି ହୋଇପାରେ । ଆପଣ କାଠ ପରି ବସିବେ ଅପେକ୍ଷା କରି । ସ୍ତ୍ରୀଙ୍କୁ ତ ଆଉ ସେଠି ଛାଡ଼ି ଦେଇ ଆସିପାରିବେନି ।



Digitized by srujanika@gmail.com

ଡିସପୋଜାଲ ଷ୍ଟକ ପରି ଦଫାକୁ ଦଫା ଲୋକଗୁଡା ଆସୁଥିବେ ବସୁଥିବେ, ଖାଉଥିବେ ଏବଂ ବାହାରି ଯାଉଥିବେ । ସେଥିରେ ବିଶେଷ ସେପରି ଆନ୍ତରିକତା ନଥାଏ । ଗୋଟାଏ ସାମାଜିକ ବାଧ୍ୟତା ଏବଂ ସେଥିରେ ଯେତେ ଆତ୍ମସମ୍ମାନ ଜ୍ଞାନ ଥିବା ଅତିଥି ମଧ୍ୟ ସେହି ଲାଇନ ଲଗାଇ ନିଜକୁ ଡିସପୋଜ୍ ନ କରାଇ ଉପାୟ ନାହିଁ ।

ଯେଉଁମାନେ ଏହି ପ୍ରକାର ଭୋଜି ଭାତକୁ ଯାଆନ୍ତି ନାହିଁ ତାଙ୍କ କଥା ଅଲଗା । ସେମିତି ସମାଜ ଛଡା କେତେ ଜଣ ?

(ତା୧୨.୦୩.୧୯୮୦ରିଖ)



# ପାତର ଅନ୍ତର ନକଲେ ହୁଅନ୍ତାନି ?

ସେଦିନ ବାଣୀବିହାର ପାଣି ଟାଙ୍କି ପାଖରେ ଠିଆ ହୋଇ ଟାଉନ ବସ୍‌କୁ ଅପେକ୍ଷା କରିଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟର ପାଣିଟାଙ୍କି ହେଉଛି ଗୋଟାଏ ଘାଟିଜାଗା । ସେଠାରେ ସକାଳୁ ସଂଧ୍ୟାବେଳଯାଏ ଦିନେ ବସିଲେ ବାଣୀବିହାର କ୍ୟାମ୍ପସର ସବୁ ଖବର ମିଳିଯିବ । କାହାରିକୁ କିଛି ପଚାରିବା ଦରକାର ନାହିଁ । ଛାତ୍ର, ଛାତ୍ରୀ, ଅଧ୍ୟାପକ, ଅଫିସ କିରାଣୀ ଓ ସେଠାକୁ ଆସୁଥିବା ବାହାର ଲୋକଙ୍କ କଥାକୁ କେବଳ ମନଧ୍ୟାନ ଦେଇ ଶୁଣିଲେ ଯଥେଷ୍ଟ ।

ସମାବର୍ତ୍ତନ ଉତ୍ସବ ପୂର୍ବଦିନ ସରିଥାଏ । ଦୁଇଜଣ ମେଧାବୀ ଛାତ୍ର କଥାବାର୍ତ୍ତା ହେଉଥାନ୍ତି । ମନରେ ଯଥେଷ୍ଟ ଖେଦ । ସେମାନେ ଦୁଇବର୍ଷ ତଳେ ନିଜ ନିଜର ବିଷୟରେ କୃତିତ୍ୱ ପାଇଁ ସ୍ୱର୍ଣ୍ଣପଦକ ଲାଭ କରିବାର ଅଧିକାରୀ ହୋଇଥିଲେ । ଯେଉଁମାନେ ସ୍ୱର୍ଣ୍ଣପଦକ ପୁରସ୍କାର ପାଆନ୍ତି ସେମାନେ ସମାବର୍ତ୍ତନ ଉତ୍ସବରେ ତାଙ୍କ ନାମ ଘୋଷିତ ହେଲା ପରେ ନିଜେ ଯାଇ ମୁଖ୍ୟଅତିଥିଙ୍କ ଠାରୁ କିମ୍ବା କୁଳାଧିପତିଙ୍କ ଠାରୁ ସ୍ୱର୍ଣ୍ଣପଦକ ଗ୍ରହଣ କରନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ ପ୍ରତିବର୍ଷ ନହୋଇ ତିନି ଚାରିବର୍ଷରେ ଥରେ ହେଉଥିବାରୁ କେବଳ ଚଳିତବର୍ଷର ସ୍ୱର୍ଣ୍ଣପଦକ ଅଧିକାରୀମାନେ ନିଜେ ଏପରି ସୁଯୋଗ ପାଇବେ । ଗତବର୍ଷ ମାନଙ୍କର ସ୍ୱର୍ଣ୍ଣପଦକ ଲାଭ କରିଥିବା କୃତୀଛାତ୍ରମାନେ ବିଶ୍ୱବିଦ୍ୟାଳୟର ତାଙ୍କ ନିଜ ବିଭାଗୀୟ କାର୍ଯ୍ୟାଳୟ କିମ୍ବା ନିଜ କଲେଜ କାର୍ଯ୍ୟାଳୟରୁ ଯାଇ ତାହା ଗ୍ରହଣ କରିବେ ।

ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ ପୂର୍ବେ ରାଜ୍ୟର ଏକ ଗୌରବମୟ ଅନୁଷ୍ଠାନ ଭାବରେ ପରିଗଣିତ ହେଉଥିଲା । ଆଜି ସେ ବିଭବ ନାହିଁ । ତଥାପି ସମାବର୍ତ୍ତନ ଉତ୍ସବ ପ୍ରତିବର୍ଷ ନିୟମିତ ଅନୁଷ୍ଠିତ ହେଲେ ଏହା ଅନ୍ତତଃ ବିଦ୍ୟାର୍ଥୀମାନଙ୍କ ପାଇଁ ପ୍ରେରଣାଦାୟକ ହୁଅନ୍ତା ।

ଯେଉଁମାନେ ଚଳିତ ବର୍ଷର ସ୍ୱର୍ଣ୍ଣପଦକ ଲାଭ କରିଛନ୍ତି ସେମାନେ କ'ଣ ପୂର୍ବ ବର୍ଷର ସେହି ସ୍ତରର କୃତୀ ଛାତ୍ରଙ୍କ ଠାରୁ ଅଧିକ ମେଧାବୀ ? ଯଦି ତାହା ନୁହେଁ ତେବେ ପୂର୍ବବର୍ଷର କୃତୀ ଛାତ୍ରମାନଙ୍କୁ କାହିଁକି ସମାନ ସୁଯୋଗରୁ ବଞ୍ଚିତ କରାଯାଉଛି । ସମାବର୍ତ୍ତନ ଉତ୍ସବ ପ୍ରତିବର୍ଷ ଅନୁଷ୍ଠିତ ହେବାରେ ପ୍ରତିବନ୍ଧକ କ'ଣ ?

(ତା୦୬.୦୩.୧୯୮୦ରିଖ)





Digitized by srujanika@gmail.com

# ବିବିଏସ୍‌ଆର୍ ମ୍ୟୁନିସିପାଲିଟିର ଗୋଲେଇ

ରାଜଧାନୀର ରାଜମହଲ ଛକ ଆଡୁ ଯଦି ଆପଣ ବାଣୀବିହାର ଆଡ଼କୁ ଯାଇଥିବା ରାସ୍ତାରେ ଯିବେ ତାହାହେଲେ ରେଳଷ୍ଟେସନ ପାଖରେ ଗୋଟାଏ ବଡ଼ ଗୋଲେଇ ପାଖରେ ପହଞ୍ଚିବେ ।

ସେ ଗୋଲେଇର କିଛି ବିଶେଷତ୍ୱ ଅଛି । ଏହା ରାଜଧାନୀରେ ଯେତେସବୁ ଗୋଲେଇ ଅଛି ସେମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ଗୋଲେଇ । ଏହି ଗୋଲେଇ ବହୁ ପଇସା ଖର୍ଚ୍ଚ ହୋଇ କେତେଥର ଗଢ଼ା ହୋଇ ଭଙ୍ଗା ହୋଇ ଶେଷରେ ବର୍ତ୍ତମାନର ଅବସ୍ଥାରେ ପହଞ୍ଚିଛି ।

ସେ ଗୋଲେଇରେ ଭଲ ଚିକିଟା ମାଟି ଟ୍ରକରେ ଅଣାଯାଇ ପଡ଼ିଛି ଏବଂ ମଞ୍ଜି ବୁଣାଯାଇ ସୁନ୍ଦର ସବୁଜ ଘାସ ଉଠିଛି । ସେ ଘାସକୁ ଅନେଇଲେ ମନେ ହେଉଛି ଏହା ଏକ ଘାସର ଗଦି । ଗୋଲେଇରେ ଭଲ ଲୁହା ବାଡ଼ ଦିଆଯାଇ ସେଥିରେ ବିଭିନ୍ନ ରଙ୍ଗ ଦିଆଯାଇଛି ।

ରାଜମହଲ ପଟରୁ ଗଲେ ଏବଂ ବାଣୀବିହାର ଆଡୁ ଆସିଲେ ଗୋଟିଏ ଲେଖାଏଁ ଲୁହା ପ୍ଲେଟ ଦିଆ ସାଇନବୋର୍ଡରେ ସୁନ୍ଦର ଅକ୍ଷରରେ ଇଂରାଜୀରେ ଲେଖାଯାଇଛି "Maintained By BBSR Municipality" ଅର୍ଥାତ୍ ବିବିଏସ୍‌ଆର୍ ମ୍ୟୁନିସିପାଲିଟି ଏହାର ରକ୍ଷଣା ବେକ୍ଷଣ କରୁଛନ୍ତି । ସେ ଇଂରାଜୀ ଲେଖା ଉପରେ ଗୋଟିଏ ଗୋଟିଏ ଟ୍ୟୁବ ଲାଇଟ ଦିଆଯାଇଛି ରାତିରେ ଦେଖାଯିବା ପାଇଁ । ଗୋଲେଇର ଠିକ୍ କେନ୍ଦ୍ର ସ୍ଥଳରେ ଗୋଟିଏ ବଡ ଲୁହା ଖୁମ୍ବରେ ଚାରିକଡ଼କୁ ଚାରିଟା ତେଜସ୍ୱୀ ବତୀ ମଧ୍ୟ ଜଳୁଛି । ଗୋଲେଇଟା ରାତିରେ ବେଶ୍ ହାଲୋର ଦେଖାଯାଏ ।

ଭାରତର ରାଜଧାନୀ ଦିଲ୍ଲୀରେ ଏମିତି ଆୟତନର ଏବଂ ଏହାଠାରୁ ଯଥେଷ୍ଟ ବଡ ବଡ ଗୋଲେଇ ରହିଛି । ସେଥିରେ ବହୁ ସୁନ୍ଦର ଗଛ, ଫୁଲଗଛ, ଫୁଲର ଲତା, ବିଭିନ୍ନ ରଙ୍ଗର ଆଲୋକସଜ୍ଜା ଏବଂ ରଙ୍ଗ ଆଲୋକିତ ପାଣିର ଫୁଆରାସବୁ ରହିଛି । ଏହା ସହରକୁ ସୁନ୍ଦର କରିବା ସଙ୍ଗେ ନାଗରିକମାନେ ସନ୍ଧ୍ୟାବେଳେ କିମ୍ବା ନିର୍ଦ୍ଧୁମ ଖରାବେଳେ ଘାସ ଉପରେ ବସିବା ଏବଂ ଶୋଇ ଦୃଶ୍ୟ ଉପଭୋଗ କରିବା ପାଇଁ ଉଦ୍ଦିଷ୍ଟ । ପାଣିର ଫୁଆରା ଏକ କୃତ୍ରିମ ସୁନ୍ଦର ଦୃଶ୍ୟ ସୃଷ୍ଟି କରିବା ସଙ୍ଗେ ସୀମିତ ଭାବରେ ହେଲେ ମଧ୍ୟ ବାୟୁମଣ୍ଡଳକୁ ଶୀତଳ କରିବାରେ ସାହାଯ୍ୟ କରେ । ସାଧାରଣ ଲୋକ ନିଜର ବନ୍ଧୁ କିମ୍ବା ପରିବାର ମେଳରେ ମାଗଣାରେ ସାମାନ୍ୟ ଅବସର ବିନୋଦନ କରିବାର ମଧ୍ୟ ଏହା ଏକ ମାଧମ ।

ବିବିଏସ୍‌ଆର୍ ଏ ଗୋଲେଇରେ ଏତେ ପଇସା ଖର୍ଚ୍ଚ କରି ରକ୍ଷଣାବେକ୍ଷଣ କରିବାର ତାତ୍ପର୍ଯ୍ୟ କ'ଣ ? ବିବିଏସ୍‌ଆର୍ ପରିବର୍ତ୍ତେ ଭୁବନେଶ୍ୱର ଏବଂ ଇଂରାଜୀ ପରିବର୍ତ୍ତେ ଓଡ଼ିଆରେ ଲେଖିଥିଲେ କ'ଣ କ୍ଷତି ହୋଇଥାନ୍ତା ?

ସେ ଗୋଲେଇ ଭିତରକୁ ପଶିବାର ଦ୍ୱାରରେ ତାଲା ପଡ଼ିଛି । ମଝିରେ ମଝିରେ ବୋଧେ ମାଳି କାମ କରୁଥିବା ଲୋକ ଯାଉଥିବ ଘାସରେ ପାଣି ଦେବା ପାଇଁ । ମ୍ୟୁନିସିପାଲିଟିର ଏକଜିକ୍ୟୁଟିଭ୍ ଅଫିସର ମଧ୍ୟ ନିଜ ପରିବାରଙ୍କୁ ନେଇ ସେଠାରେ ଅବସର ବିନୋଦନ କରିବାରେ ବାଧା ନଥିବ । ଆମେମାନେ ଦୂରରୁ ସେ ଘାସକୁ ଦେଖି ଆପ୍ୟାୟିତ ହେଉଛୁ ।

(ତା୮.୦୩.୧୯୮୦ରିଖ)





Digitized by srujanika@gmail.com

# ସହର ମଫସଲ ପ୍ରଭେଦ

ଆଜିକାଲି ସହରିଆ ବାହାଘର ଭୋଜିସବୁ ଯେଉଁମାନେ ଖାଇବାକୁ ଯାଉଛନ୍ତି ସେମାନଙ୍କ ପାଇଁ ମୁଁ ସେମିତି କିଛି ନୂଆକଥା ଲେଖୁନାହିଁ ।

କିନ୍ତୁ ମୋର ମନେ ପଡୁଛି ପିଲାଦିନରେ ମଫସଲ ଗାଁରେ କେମିତି ଭୋଜିଭାତ, ବା'ଘର କିମ୍ୱା ନିଆଁ ନିମନ୍ତରେ ହେଉଥିଲା । ବେଶୀ ବଡ଼ଲୋକ ନହେଲେ କାନିକା (ଆଜିକାଲି ବେଶୀ ଲୋକ ପଲାଉ କହୁଛନ୍ତି) କେହି କରୁନଥିଲେ । ଉଷୁନା କିମ୍ୱା ଅରୁଆ ଭାତ, ଡାଲି କିମ୍ୱା ଡାଲମା, ଗୋଟାଏ ସାଦା ତରକାରୀ, ସମ୍ଭବ ହେଲେ ମାଛ ଘାଣ୍ଟ, ଖଟା ଓ ବେଳେବେଳେ ଶାଗ ହେଉଥିଲା ଅସଲ ଖାଦ୍ୟ । ଖିରୀ ବା ପାୟସଟା ନିଶ୍ଚୟ । କେହି କେହି ଭାତରେ ଖାଣ୍ଟି ଗୁଆଘିଅ ମଧ୍ୟ ଟିକେ ଟିକେ ଦେଉଥିଲେ ।

ଗାଁର ବଡ଼ ଲୋକମାନେ ହୁଏତ କାନିକା, ବଡମାଛ ତରକାରୀ, ଆଳୁ ପୋଟଳ ରସା, ମାଛ ଛେଞ୍ଚେଡା ଇତ୍ୟାଦି ସାଙ୍ଗକୁ ଶୀତଦିନେ ଫୁଲ କୋବି ଓ ବନ୍ଧାକୋବି ତରକାରୀ ଏବଂ ଖିରୀ ସାଙ୍ଗକୁ ବୁନ୍ଦିଆ ଓ ରସଗୋଲା ଇତ୍ୟାଦିରୁ କେତେକ ଆଇଟମ କିମ୍ବା ସବୁ ଆଇଟମ ପରଶୁଥିଲେ । ଲୋକେ ତଳେ ମାଟି ଉପରେ ଖଜିରୀ ଚଟେଇ, ହେଂସ ମସିଣା, ସତରଞ୍ଜି, ତାଳପତ୍ର ଚଟେଇ କିମ୍ୱା ଏକଦମ ମାଟିରେ (ଗୋବର ଦେଇ ଲିପା ହୋଇଥିବା ଚଟାଣ) ବସି ଖାଉଥିଲେ ।

ଗାଁରେ ଏବେ ଭୋଜିଭାତ କେମିତି ହେଉଛି ମୁଁ ଆଉ ଜାଣିନି । ସେ ଢାଞ୍ଚା ବେଶୀ ବଦଳି ନଥିବ ବୋଲି ମନେ ହୁଏ ।

ସହର ବଜାରରେ ଏବେ ପ୍ରାୟ ଟେବୁଲରେ ଖାଇବାକୁ ଦିଆଯାଉଛି । ସାଦା ଭାତ କେହି ପ୍ରାୟ ପରଶୁ ନାହାନ୍ତି । ଭେଜିଟେବଲ ପଲାଉ ମିଠା ହେଉ ବା ଲୁଣିଆ ହେଉ ଡାଲଦା (ସବୁ ଭେଜିଟେବଲ ଘିଅକୁ ସାଧାରଣତଃ ଏ ଦେଶରେ ଡାଲଦା ନାମରେ ଡକାଯାଏ) ହାତରୁ ଚକ ଚକ କରି ବୋହି ପଡୁଥିବ । ମାଛ ତରକାରୀ ହେଉ ବା ମାଂସ ହେଉ ଝୋଳର ଉପରେ ଆଙ୍ଗୁଳିଏ ମୋଟର ତେଲ ଭାସୁଥିବ । ରଙ୍ଗ ନାଲିଆ ରକ୍ତାକ୍ତ । ମାଛର ଛେଞ୍ଚଡା ନିଶ୍ଚୟ ରହିବ । ଦହି, ମାଛ ଓ ମାଛର ମୁଡ଼ିଘାଣ୍ଟ ମଧ୍ୟ ରହିଛି । ତରକାରୀ (ସେମିତି ତେଲିଆ) ତିନିଚାରି ରକମ ସାଙ୍ଗକୁ ଭଜା (ମାଛ, ବାଇଗଣ, ପୋଟଳ ବା ଫୁଲକୋବିର), ଖଜୁର ଓ ବିଲାତି ବାଇଗଣ ଖଟା (କିମ୍ୱା ଆମ୍ବ ମିଳିଲା ଦିନରେ ଆମ୍ବ ଖଟା), ଡାଲି, ପୁରି, ପାଉଡର ଦୁଧରେ ଖୁଆଦିଆ ଖିରୀ, ମାଂସ କିମ୍ୱା ମାଛ ଚପ୍ ଇତ୍ୟାଦି ସାଙ୍ଗକୁ ଅଭିଜାତ ସଂପନ୍ନମାନେ ଆଇସକ୍ରିମ୍ କିମ୍ୱା କୁଲଫି ମଧ୍ୟ ପରିବେଷଣ କରୁଛନ୍ତି ।

ସ୍ପେଶାଲ ଅତିଥିମାନଙ୍କୁ ଅଲଗା ପ୍ରକୋଷ୍ଠରେ ଦାମୀକା ସୁରାପାନରେ ଆପ୍ୟାୟିତ ନ କଲେ ସେମାନେ ଭୋଜି ଖାଇବାକୁ ଆସନ୍ତି ନାହିଁ । ସେମାନେ ଆଗରୁ ଫୋନ କରି 'ଡ୍ରିଙ୍କ୍ସ'ର ଜବାବ ନିଅନ୍ତି ।

ସମାଜ ବଦଳୁଛି । ବଦଳିବା ସ୍ୱାଭାବିକ । କିନ୍ତୁ ଏ ବ୍ୟବସ୍ଥା ଯେପରି ରୀତିରେ ଚଳୁଛି ଏହା ସମାଜର କେଉଁ ସ୍ତରକୁ କେତେ ମାତ୍ରାରେ ଆକ୍ରାନ୍ତ କରୁଛି ସେ କଥା କିଏ କଳନା କରୁଛି ?

(ତା ୦୯.୦୩.୧୯୮୦ରିଖ)





Digitized by srujanika@gmail.com

# ପାଣ୍ଡିତ୍ୟ କି ଅସୁବିଧା କରେ

ପଣ୍ଡିତମାନଙ୍କୁ ସମ୍ବାଦପତ୍ର ପାଇଁ ଲେଖା ମାଗିବା ଠିକ୍ କି ଭୁଲ୍ ମୁଁ କହିବାକୁ ଯାଉନି । କିନ୍ତୁ ଗୋଟାଏ କଥା ନିଶ୍ଚିତ ଯେ ପଣ୍ଡିତମାନେ ଯାହା ଲେଖିବେ ତାଙ୍କ ପାଠ ଅନୁସାରେ ତାହା ଠିକ୍ ।

ପ୍ରକୃତ ଅବୁଝା ଉପୁଜେ ଯଦି ପଣ୍ଡିତ ଅର୍ଥାତ୍ ଅଧ୍ୟାପକ, ବୈଜ୍ଞାନିକ କିମ୍ବା କୌଣସି ନିର୍ଦ୍ଦିଷ୍ଟ ବିଷୟବସ୍ତୁରେ ଯେଉଁମାନେ ବିଶେଷ ଶିକ୍ଷାଲାଭ କରିଛନ୍ତି, ସେମାନଙ୍କୁ ସମ୍ବାଦପତ୍ର ସମ୍ପାଦନା କରୁଥିବା ଲୋକେ ତାଙ୍କ ପତ୍ରିକା ପାଇଁ ଲେଖା ମାଗିଲେ ।

ପ୍ରଥମତଃ ସେମାନେ ଲେଖା ଦେବାକୁ ଗୋଡ଼ ଲମ୍ବା କରିବେ । ଆପଣ ଯଦି ବହୁତ ଅନୁରୋଧ କଲେ ତେବେ ଉପରୋଧରେ ପଡି ହଁ ଭରିବେ । କିନ୍ତୁ ଲେଖା ପାଇବାକୁ ହେଲେ ଆପଣଙ୍କୁ ବହୁତ ଥର ଲୋକ ଦଉଡେଇବାକୁ ହେବ ।

ସାଧାରଣତଃ କୌଣସି ବିଶେଷ ସଂଖ୍ୟା ପାଇଁ ପଣ୍ଡିତମାନଙ୍କୁ ଲେଖା ମଗାଯାଏ । ସେ ବିଶେଷ ସଂଖ୍ୟା ପ୍ରକାଶନର ସମୟ ନିକଟ ହୋଇଆସିଲେ ମଧ୍ୟ ପଣ୍ଡିତଙ୍କ ଲେଖା ଆରମ୍ଭ ହୁଏ ନାହିଁ । ଶେଷରେ ସଂପାଦକ ଯେତେବେଳେ ବିଶେଷ ସଂଖ୍ୟା ପ୍ରକାଶନର ଦିନେ ପୂର୍ବରୁ ସେ ଆଶା ଛାଡ଼ିଦେବେ, ଲେଖା ଆସି ପହଞ୍ଚେ ଏବଂ ସେ ଲେଖାର ଆକାର-ବିସ୍ତୃତି ଦେଖି ସମ୍ପାଦକଙ୍କର ହୋସ ଉଡିଯିବା କଥା ।

ପଣ୍ଡିତମାନେ ଅଳ୍ପକେ ଲେଖିପାରନ୍ତିନି ସାଧାରଣତଃ । କିନ୍ତୁ ସମ୍ବାଦପତ୍ର ମାନଙ୍କରେ ଶବ୍ଦ ଓ ଧାଡି ନଗଣି ଲେଖି ହେବ ନାହିଁ । ପଣ୍ଡିତମାନେ ଶେଷ ମୁହୂର୍ତ୍ତରେ ଲେଖା ପଠାଇ ତାଗଦା କରିଥିବେ ଯେ ଶେଷ ପ୍ରୁଫ୍‌ଟା ସେ ନିଜେ ଦେଖିବେ । ପଣ୍ଡିତଙ୍କ ଲେଖାକୁ କାଣ୍ଡଛାଣ୍ଡ କରାଯିବ ନାହିଁ । କାରଣ ସେ ଭାବିଚିନ୍ତି ଖୁବ୍ କମ୍‌ରେ ପାଞ୍ଚ ଫାଳରୁ ସାତଫାଳ କାଗଜ ମାତ୍ର ଭର୍ତ୍ତି କରିଛନ୍ତି । କାଟିକୁଟି ଦେଲେ ସେ ଲେଖାର ମାନ ମହତ ସବୁ ଖରାପ ହୋଇଯିବ ।

ସମ୍ପାଦକ ତ ଆଉ ପୁସ୍ତକ ପ୍ରକାଶକ ନୁହଁନ୍ତି ଯେ ଫର୍ମାଏ ଦି ଫର୍ମା ଲେଖା ବଢ଼ିଗଲେ ଚଳେଇନେବେ । ଖବର କାଗଜରେ ଛାପାସ୍ଥାନ ସୀମିତ । ବଡ଼ ଅଧ୍ୟାପକଙ୍କ ଲେଖାକୁ କାଟିଦେଲେ ପଣ୍ଡିତଙ୍କୁ ଅପମାନ ହେବ । ପଣ୍ଡିତ ତାଙ୍କ ପଢ଼ିଥିବା ବିଷୟରେ ଯାହା ଜାଣିଛନ୍ତି ତାହା ପଛରେ କେତେ ଅଧ୍ୟୟନ ଅଛି । ସଂପାଦକ ସେ ବିଷୟରେ କି ଜ୍ଞାନ ଆହରଣ କରିଛନ୍ତି ଯେ ସେ ବାଛିପାରିବେ କେଉଁଟାକୁ କାଟିବେ ଓ କେଉଁଟାକୁ ରଖିବେ । କିନ୍ତୁ ସଂପାଦକ ତାଙ୍କର ସୀମିତ ସ୍ଥାନ ଅନୁସାରେ ଲେଖାରେ କତୁରୀ ଚଳେଇବାକୁ ବାଧ୍ୟ । ତେଣୁ କଲମ ଧରି କାଟିଲା ବେଳେ ପଣ୍ଡିତଙ୍କର ପାଣ୍ଡିତ୍ୟ ଅଙ୍ଗଚ୍ଛେଦ ଅପରିହାର୍ଯ୍ୟ ହୋଇପଡେ ।

ବହୁ ପଣ୍ଡିତ ସାମ୍ବାଦିକ ମାନଙ୍କର ଏହି ଅସୁବିଧା ବୁଝିପାରନ୍ତିନି କିମ୍ବା ବୁଝିବାକୁ ରାଜି ହୁଅନ୍ତିନି ।

(ତା୩୦.୧୨.୧୯୮୫ରିଖ)





Digitized by srujanika@gmail.com

# ଖାଣ୍ଟି ଭାରତୀୟ ହୁଅନ୍ତୁ

କାଲି ସଂଧାରେ କ୍ୟାପିଟାଲ ବସ୍ ଷ୍ଟାଣ୍ଡରେ ମୁଁ ବାଣୀବିହାର ଯିବା ପାଇଁ ଅପେକ୍ଷା କରିଥିଲି । ସମୟ ସଂଧ୍ୟା ସାଢ଼େ ପାଞ୍ଚ ହେବ । ଷ୍ଟେଟ ଟ୍ରାନ୍ସପୋର୍ଟ କରପୋରେସନର ଗୋଟିଏ ନାଲି ରଙ୍ଗର ଗାଡ଼ି ଆସି ଠିଆ ହେଲା । ସାମନା ସାଇନବୋର୍ଡରେ ଲେଖାଥିଲା 'ରାଜଧାନୀ' ।

ଗାଡ଼ିର ବାଁପଟେ ଦେହରେ ବଡ ବଡ ଅକ୍ଷରରେ ଲେଖାଥିଲା 'ଖାଣ୍ଟି ଭାରତୀୟ ହୁଅନ୍ତୁ' । କିଛି ବୁଝିପାରିଲିନି । କୌତୂହଳ ହେଲା । ଅନେକ ସମୟ ଧରି ସେ ଲେଖାକୁ ଅନାଇ ପଢୁଥିଲି ଏବଂ ଭାବୁଥିଲି ଯେ କାହିଁକି ଏକଥା ଲେଖାଯାଇଛି ।

ଡ୍ରାଇଭର ଗାଡ଼ି ରଖିଦେଇ କେଉଁଆଡେ ଚାଲିଯାଇଥିଲା । କ୍ଲିନରଟି ଛିଡ଼ା ହୋଇଥିଲା ଗାଡ଼ିର ଦରଜା ପାଖରେ । ତାକୁ ପଚାରିଲି । ସେ କହିଲା ''କେଜାଣି ଆଜ୍ଞା, କାହିଁକି ଲେଖା ହୋଇଛି ମୁଁ କହିପାରିବିନି ।''

ପଚାରିଲି 'କଣ୍ଡକ୍ଟର କାହାନ୍ତି' । 'ଭିତରକୁ ଯାଇଛନ୍ତି (ମାନେ ବସ୍ ଷ୍ଟାଣ୍ଡ ଭିତରକୁ) ଟିକେଟ କାଟିବାକୁ' ।

ଗୋଟାଏ ବସ୍ ଦେହରେ 'ଖାଣ୍ଟି ଭାରତୀୟ ହୁଅନ୍ତୁ' ଗୋଲ ଗୋଲ ଅକ୍ଷରରେ କାହିଁକି ଲେଖାଯାଇପାରେ ।

ମନେ ପଡ଼ିଲା କେତେବର୍ଷ ତଳେ ଜନସଂଘ ଦଳ ତରଫରୁ ଭାରତୀୟ ମୁସଲମାନଙ୍କୁ 'ଭାରତୀୟକରଣ' କରାଯିବା ପାଇଁ ଦାବି କରାଯାଉଥିଲା । ଜନସଂଘ ଦଳର ପ୍ରକୃତ ମାଲିକାନା ଅଧିକାର ସେତେବେଳେ ଅଧିକ ଥିଲା ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ହାତରେ ।

ଜନସଂଘ ଏବଂ ଆର୍‌ଏସ୍‌ଏସ୍‌ର ନେତାମାନେ ମୁସଲମାନ ନାଗରିକମାନଙ୍କୁ 'ଭାରତୀୟ-ଭାବ' ପ୍ରତି ଆନୁଗତ୍ୟ ପ୍ରକାଶ କରିବାକୁ କାହିଁକି ଶିକ୍ଷା ଦିଆଯିବ ସେ କଥା ଖୋଲାଖୋଲି ଯୁକ୍ତି କରି କହୁଥିଲେ । ଛୋଟ ଛୋଟ ପୁସ୍ତିକା ମଧ୍ୟ ଏଥିପାଇଁ ପ୍ରକାଶିତ ହୋଇଥିଲା ।

ଆଉ ଗୋଟାଏ ସମୟରେ ଭାରତର ବୈଦେଶିକ ମୁଦ୍ରା ଯେତେବେଳେ ବହୁତ ଅଭାବ ପଡ଼ିଥିଲା ସରକାର ଆମଦାନୀ ଜାତ ଦ୍ରବ୍ୟ ଉପରେ ନିର୍ଭର ନ କରିବାକୁ ଦେଶବାସୀଙ୍କୁ ପ୍ରବର୍ତ୍ତାଇବାକୁ ଏମିତି ସବୁ ସ୍ଲୋଗାନ ଉଠାଇଥିଲେ । ଅର୍ଥାତ୍ ଦେଶ ଭିତରେ ଯାହା ମିଳୁଛି ସେଇଥିରେ ଚଳିବାକୁ ଚେଷ୍ଟା କରିବାକୁ ଲୋକଙ୍କୁ ନିବେଦନ କରାଯାଉଥିଲା ।

ଜରୁରୀକାଳୀନ ପରିସ୍ଥିତି ଘୋଷିତ ହୋଇଥିବା ବେଳେ ମଧ୍ୟ ସରକାରଙ୍କର ୨୦ ଦଫା କାର୍ଯ୍ୟକ୍ରମ ଏବଂ ଯୁବକଂଗ୍ରେସ ନେତା ସଞ୍ଜୟ ଗାନ୍ଧୀଙ୍କର ୪ ଦଫା (ପରେ ୫ ଦଫା ହେଲା) କାର୍ଯ୍ୟକ୍ରମ ସମ୍ପର୍କରେ ମଧ୍ୟ ଏହିପରି ଧ୍ୱନିମାନ ସମ୍ବାଦପତ୍ର, ଦୋକାନବଜାର, ରେଳଗାଡ଼ି, ବସ୍, ଟ୍ରକ, ରିକ୍ସା ଇତ୍ୟାଦିରେ ଲେଖାଯାଇଥିଲା ।

ବର୍ତ୍ତମାନ ତ ଜନସଂଘ ଜନତା ଦଳରେ ମିଶିଯାଇଛି ଏବଂ ଓଡ଼ିଶାରେ ଜନସଂଘ ପ୍ରଭାବିତ ଜନତା ସରକାର ନଥିଲା କିମ୍ବା ପରିବହନ ବିଭାଗ ପୂର୍ବତନ ଜନସଂଘ ସଭ୍ୟଙ୍କ ହାତରେ ନଥିଲା ।



Digitized by srujanika@gmail.com

ବୈଦେଶିକ ମୁଦ୍ରା ପରିସ୍ଥିତି ଆମର ବର୍ତ୍ତମାନ ଏତେ ଭଲ ଯେ, ଆମେ ଦାମୀକା ଅତର ଏବଂ ଅନ୍ୟାନ୍ୟ ବିଳାସ ସାମଗ୍ରୀ ମଧ୍ୟ ଆମଦାନୀ କରିପାରୁଛୁ। କୋଡ଼ିଏ ଦଫା ଏବଂ ପଚିଶ ଦଫା କାର୍ଯ୍ୟକ୍ରମ ପୁଣି ଚାଲୁ କରାଯିବ ବୋଲି କେତେକ କେନ୍ଦ୍ରମନ୍ତ୍ରୀ ଘୋଷଣା କରିସାରିଲେଣି ସତ୍ୟ, କିନ୍ତୁ ଓଡ଼ିଶାରେ ତ ରାଷ୍ଟ୍ରପତି ଶାସନ ମାତ୍ର ଆରମ୍ଭ ହୋଇଛି। କେନ୍ଦ୍ର ଶାସକ ଦଳର ସରକାର ଆସିବା ପାଇଁ ତ ଅନ୍ତତଃ ଆହୁରି ଦି' ମାସ ସମୟ ଡେରି ଅଛି।

କିଏ, କାହାକୁ, କାହିଁକି ଖାଣ୍ଟି ଭାରତୀୟ ହେବାକୁ ଉଦ୍ୟମ ଆରମ୍ଭ କରିଛି କିଛି ବୁଝିପାରିଲିନି। ଇତି ମଧ୍ୟରେ ମୋର ବାଣୀବିହାର ବସ୍ ଆସିଗଲା। ମୁଁ ସେଥିରେ ଚଢ଼ିଲାବେଳକୁ ସେ ନାଲି ବସ୍‌ର ନମ୍ବର ପ୍ଲେଟ୍‌କୁ ଅନାଇଲି ବଡ ସ୍ନେହପୂର୍ଣ୍ଣ ଦୃଷ୍ଟିରେ।

ସେ ବସ୍‌ର ନମ୍ବର ଓ.ଏସ୍.ପି. ୨୬୭୨।

(ତା୨୫.୦୨.୧୯୮୦ରିଖ)





Digitized by srujanika@gmail.com

# ଟେଲିଭିଜନର ମାୟା

ଟେଲିଭିଜନ ଡାକନାମ ଟି.ଭି.। ଏବେ ଭାରତୀୟ ମନ ଜୀବନକୁ କିପରି ଘୋର ଆକ୍ରାନ୍ତ କଲାଣି ବଖାଣିଲେ ପୁରା ଦିନଟାଏ ବି ନିଅଣ୍ଟ ହେବ । ଆବାଳ ବୃଦ୍ଧ ବନିତା ଜାତି ଧର୍ମ ନିର୍ବିଶେଷରେ ଯଦି କିଛି କାମ ଏକାଠି କରୁଛନ୍ତି ତେବେ ତାହା ହେଲା ଟିଭି ଦେଖିବା । ସେଥିରେ ବାଛବିଚାର ନାହିଁ । ଦେଶକାଳ ପାତ୍ର ନାହିଁ । ବୟସର ତାରତମ୍ୟ ନାହିଁ । ଟି.ଭି. ସମ୍ପର୍କରେ ମୋର ପ୍ରତିଦିନର ଅଭିଜ୍ଞତା ଓ ଅନୁଭୂତିର ଏକ ଲମ୍ବା ତାଲିକା ହେଲାଣି । ଦିନକର କଥା ଶୁଣନ୍ତୁ ।

ଗତ ରବିବାର ଦିନ ଆମେ ଜଣେ ସମ୍ପର୍କୀୟଙ୍କ ଘରକୁ ସନ୍ଧ୍ୟା ପ୍ରାୟ ଆଠଟା ବେଳେ ବୁଲି ଯାଇଥିଲୁ । ରବିବାର ସନ୍ଧ୍ୟାରେ ପୁରା ଚଳଚ୍ଚିତ୍ର ପ୍ରଦର୍ଶନ ହୁଏ । ସେଦିନ ତାହା ହିଁ ଥିଲା । ବଡ଼ ଲମ୍ବା ଡ୍ରଇଂ ରୁମ୍‌ଟା ସିନେମା ହଲରେ 'ଭଲ' ଫିଲ୍ମ ପଡ଼ିଲେ ଯେପରି ଟିକେଟ ଶେଷ ହୋଇଗଲେ 'ହାଉସ୍ ଫୁଲ୍' ବୋର୍ଡ ଲଟକାଯାଏ ସେହିପରି ଭିଡ଼ ।

ସମ୍ପର୍କୀୟଙ୍କ ବିବାହିତା ଝିଅ ଶାଶୁଘରେ ଗର୍ଭବତୀ ହୋଇ ବାପ ଘରକୁ ଡେଲିଭରି ପାଇଁ ଆସିଛି । ସେଇଟା ଆଜିକାଲିକାର ନିୟମ । ଗର୍ଭଧାରଣ କରାଇବା ଜ୍ୱାଇଁର କାମ, ଛୁଆ ଜନ୍ମ କରାଇବା ଶାଶୁ, ଶ୍ୱଶୁରଙ୍କର । ସେ ଗର୍ଭବତୀ ଯୁବତୀ ମଧ୍ୟ ନିମଗ୍ନ ହୋଇ ଚଳଚ୍ଚିତ୍ର ଦେଖୁଥିଲେ । ଗର୍ଭବତୀ ମା' ଟିଭି ଦେଖିଲେ ଗର୍ଭ ଶିଶୁ ଉପରେ ତା'ର କ'ଣ ପ୍ରଭାବ ପଡୁଥିବ ସେ କଥା ମନସ୍ତତ୍ତ୍ୱବିତ୍ କିମ୍ବା ଜାଣିବା ଶୁଣିବା ଡାକ୍ତରମାନେ ହିଁ କହିପାରିବେ । ଟେଲିଫୋନରେ ଟ୍ରଙ୍କକଲ ଆସିଲା ରାଉରକେଲାରୁ । ତାଙ୍କ ମା' ଟେଲିଫୋନ ଧରିଲେ । ଝିଅଙ୍କର ଟେଲିଫୋନ । ସେହି ଡ୍ରଇଂ ରୁମ୍‌ରେ ଟେଲିଫୋନ୍‌ଟେ । ଟେଲିଫୋନ ଧରି କଥାବାର୍ତ୍ତା କଲାବେଳେ ଟିଭିର ଚିତ୍ରଦର୍ଶନ ବିଶେଷ କିଛି ବ୍ୟାଘାତ ହେବାର ନାହିଁ ।

ତଥାପି ଆସନ୍ନ ପ୍ରସବା ଭଦ୍ର ମହିଳା ଟିଭିରୁ ସାମାନ୍ୟତମ ଡିଷ୍ଟର୍ବଡ୍ ହେବାକୁ ନାରାଜ । ମା' ଡାକୁଥିଲେ ଝିଅକୁ । ଝିଅ କହୁଥାନ୍ତି ମା'କୁ ମନା କରିଦେବାକୁ । ମା' କହିଛନ୍ତି ଝିଅ ଅଛନ୍ତି ବୋଲି । ବଡ଼ ଅପ୍ରତିଭ ଅବସ୍ଥା । ଝିଅଙ୍କର ଚାଗିଦା ଯେ ଟେଲିଫୋନରେ ଡାକିଲାବାଲାକୁ ମନା କରିଦେବାକୁ ଯେ ସେ (ଝିଅ) ଏବେ ଆସିପାରିବେନି କି ନାହାନ୍ତି । ମା କହିଛନ୍ତି ମୁଁ କହୁଛି ତୁ ଅଛୁ ବୋଲି ।

'କହିଦେ ମୁଁ ବାଥ୍‌ରୁମ୍‌ରେ ଅଛି । ପରେ ଡାକିବେ । ଝିଅଙ୍କର ମୁହଁରେ ଘୋର ବିରକ୍ତି । ସେ ବିରକ୍ତିର ମୁହଁ ନ ଦେଖିଲେ ଟିଭି ପ୍ରତି ଆସକ୍ତି ପରିମାପ ଜାଣିହେବନି । ଶେଷରେ ମା ଟେଲିଫୋନଟି ରଖିଦେଲେ ।

ତିନି ମିନିଟ୍ ପରେ ପୁଣି ଆସିଲା ଟେଲିଫୋନ । ଝିଅ କହିଲେ ବୋଉ କହିଦେ ସେ ବାହାରକୁ ଯାଇଛି । ମା ହତଭମ୍ବ ହୋଇ ଥଙ୍କେଇ ଥଙ୍କେଇ ଟେଲିଫୋନରେ ଉତ୍ତର ଦେଲେ ହଁ, ସେ ବାହାରକୁ ଯାଇଛନ୍ତି । ପୁଣି 'ନାଁ.... ଭୁବନେଶ୍ୱରରେ ଅଛନ୍ତି ଯେ... ଏବେ ଘରେ ନାହାନ୍ତି । ବାହାକୁ ଯାଇଛନ୍ତି'' । ମା'ଙ୍କର ମୁହଁରେ ଦୋଷୀ ଦୋଷୀ ଭାବ ।

ମିଛ କହିବାକୁ ବି ସଫା ବିବେକ ଦରକାର । ବରଂ ବିବେକକୁ ସଫା କରିଦେବା ଦରକାର ।

(ତା୨୮.୦୬.୧୯୮୩ରିଖ)





Digitized by srujanika@gmail.com

# ମାରେ ସିପାହୀ ନାମ ସରଦାରକା !

ଭୁବନେଶ୍ୱର ଅତୀତରେ ଲିଙ୍ଗରାଜ ମନ୍ଦିର ଓ ତାହାର ଆଖପାଖରେ ମିଳୁଥିବା କୋରା ଓ ମିଠା ଖଇ ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ମନ୍ଦିର ପାଖରେ ଦୁଇ ତିନୋଟି ମାତ୍ର ବଡ କୋରା-ଖଇ ଦୋକାନ ଥିଲା ଏବଂ ସେମାନଙ୍କ ଭିତରେ ବଇଆ ଖଇ ସବୁଠାରୁ ବେଶୀ ନାମଯାଦା ଥିଲା ।

ଭୁବନେଶ୍ୱରରେ ନୂଆ ରାଜଧାନୀ ହେଲା ପରେ ସବୁ କଥା କ୍ୟାପିଟାଲ ଭିତରକୁ ଘୁଞ୍ଚି ଘୁଞ୍ଚି ଆସୁଛି । ଆସିବା କଥା । ରାଜପଥର ମୁଖ୍ୟ ମାର୍କେଟ ପାଖରେ ଓ ବସ୍‌ଷ୍ଟାଣ୍ଡର ସାମନା ପ୍ରବେଶ ପଥରେ ଭାରତ ବିଖ୍ୟାତ, ଭାରତ ପ୍ରସିଦ୍ଧ, ଉତ୍କଳ ପ୍ରସିଦ୍ଧ, ଓଡ଼ିଶା ବିଖ୍ୟାତ, ପୃଥିବୀ ସୁପ୍ରସିଦ୍ଧ ଇତ୍ୟାଦି ବହୁ ପ୍ରସିଦ୍ଧ, ପୃଥିବୀ ବିଶେଷଣାତ୍ମକ ଉପାଧିଯୁକ୍ତ କୋରା ଖଇର ଚିତ୍ର ବିଚିତ୍ର ସାଇନବୋର୍ଡ ମରାଯାଇଛି । ସମସ୍ତଙ୍କର ବିକ୍ରି ନିଶ୍ଚୟ ହେଉଛି । ନଇଲେ ଦୋକାନ ଉଠିଯାଆନ୍ତା ।

ବଇଆ କୋରା ଖଇ ଦୋକାନ ମଧ ବସ୍‌ଷ୍ଟାଣ୍ଡରେ ଅଛି । କିନ୍ତୁ ସେ ଖଇ-କୋରା ଯେ, ଅନ୍ୟମାନଙ୍କଠାରୁ ଉତ୍କର୍ଷରେ ଏହା ଜଣାପଡୁନାହିଁ । କିନ୍ତୁ ମୋ ବାପା ପ୍ରଭୃତି ଯେଉଁମାନେ ପୁରୁଣା ଲୋକ ସୁଦୂର ଅତୀତରେ ପୁରୁଣା ଭୁବନେଶ୍ୱରଠାରେ ବଇଆ ଦୋକାନରୁ ଉଖୁଡା କିଣୁଥିଲେ ସେମାନେ ଏବେ ମଧ ସେଇ ବଇଆ 'ବ୍ରାଣ୍ଡ' ସାଇନବୋର୍ଡ ମରା ଦୋକାନରୁ ଉଖୁଡା କିଣିବା ପାଇଁ ଆଗ୍ରହୀ । ନୂଆ ଖରୀଦଦାରମାନେ ଯେଉଁଠୁ ଇଚ୍ଛା ସେଇଠୁ କିଣୁଛନ୍ତି ।

ଭୁବନେଶ୍ୱର-କଟକ ରାସ୍ତାରେ ପାହାଳ ଗାଁ ପାଖରେ ସେମିତି କୋଡ଼ିଏ ପଚିଶ ବର୍ଷ ତଳେ କେଳୁ ବେହେରା ନାମକ ଜଣେ କଲିକତା ଫେରନ୍ତା ବୁଢା ପ୍ରଥମେ ରସଗୋଲା ଦୋକାନ ଆରମ୍ଭ କଲେ । ସେ ରସଗୋଲାର ସୁଆଦ ନିଆରା । କଟକ ଭୁବନେଶ୍ୱର ଠାରୁ ଶସ୍ତା ଓ ସଜ ଛେନା ନିଜେ ଛିଡାଇ କେଳୁ ବେହେରା ଓ ତା' ସ୍ତ୍ରୀ ମିଶି ରସଗୋଲା ତିଆରି କରି ବିକୁଥିଲେ । ପାଖଆଖର ଲୋକଙ୍କ ଛଡା ଗାଡି ମଟରରେ ଯାଉଥିବା ଲୋକେ କେବେ କେମିତି କିଣୁଥିଲେ । ଭଲ ରସଗୋଲା ଜଣେ ଆଉ ଜଣକଠୁ ଶୁଣିଲା ପରେ ଗାଡି ଅଟକାଇ ସେ ରସଗୋଲା ଖାଇଲେ ଓ ଘରକୁ ଆଣିଲେ । କଲିକତାରୁ ପ୍ରକାଶିତ ଏକ ଇଂରାଜୀ କାଗଜର ଭୁବନେଶ୍ୱର ପ୍ରତିନିଧି ଥରେ ତାଙ୍କ କାଗଜରେ କେଳୁ ବେହେରାର ଫଟୋ ସହିତ ତା ଦୋକାନ ରସଗୋଲାର ପ୍ରଶଂସା କରି ଲେଖା ତାଙ୍କ ପତ୍ରିକାରେ ଛାପିଦେଲେ । ଓଡ଼ିଶାରେ ସେ ଖବର କାଗଜ ପଢୁଥିବା ଲୋକେ ଧାଇଁଲେ ପାହାଳକୁ ।

ପାହାଳରେ ଆହୁରି ଦୋକାନ ଖୋଲିବାରେ ଲାଗିଲା । ବର୍ତ୍ତମାନ ଏହା ଏକ ରସଗୋଲା ହାଟରେ ପରିଣତ ହେଲାଣି । କିନ୍ତୁ କେଳୁ ବେହେରାର ସେ ରସଗୋଲା ଯିଏ ଚାଖିଛି, ସେ ସୁଆଦ ଏ ରସଗୋଲାରେ ନାହିଁ । କେଳୁ ବେହେରା ବୁଢ଼ା ହୋଇଗଲାଣି । ତା' ବୁଢ଼ୀ ମରିଗଲାଣି । କେଳୁ ବେହେରା ଦୋକାନ ରସଗୋଲାରେ ମଧ ଆଉ ସେ ପୁରୁଣା ସୁଆଦ ନାହିଁ । ସିଏ ଆରମ୍ଭ କରିଥିଲା ଯେଉଁ କୁଡ଼ିଆ ଘରେ ସେ ଘରର କୌଣସି ଉନ୍ନତି ହୋଇନାହିଁ । ଏତେ ଦୋକାନ ହୋଇଗଲା ପରେ କେଳୁ ବେହେରା ଏକ ରକମ ଥକ୍‌କା ହୋଇଗଲାଣି ।



Digitized by srujanika@gmail.com

'ପାହାଳ' ରସଗୋଲା ରାଜଧାନୀ ବସ୍‌ଷ୍ଟାଣ୍ଡରେ, ବାଣୀବିହାର ରାସ୍ତାରେ ଓ ଆଉ କେତେ ଜାଗାରେ ବିକ୍ରି ହେଉଛି । ରସଗୋଲା ଆଗରେ 'ପାହାଳ' ଲଗାଇଲେ ତାର ମର୍ଯ୍ୟାଦା ବଢ଼ିଯାଉଛି, ରସଗୋଲା ପଛେ ଶିରିପୁର ଛକରେ ତିଆରି ହୋଇଥାଉ ।

ଯେଉଁ ବୈଜ୍ଞାନିକ ମାନେ ଯାହାସବୁ ଉଦ୍ଭାବନ କରିଥିଲେ ତାହାର କୌଣସି ଫାଇଦା କ'ଣ ସେମାନେ ପାଇଛନ୍ତି ?

(ତା୦୫.୦୭.୧୯୮୭ରିଖ)



# ମନୁଷ୍ୟ କ'ଣ ପ୍ରବଞ୍ଚକ

ମନୁଷ୍ୟ ଯାହା ନୁହେଁ ତାହା ବୋଲି ଅନ୍ୟ ଜଣକୁ ଦେଖାଇ ଦେବାରେ ଆନନ୍ଦପାଏ । ନିଜର ପ୍ରକୃତ ସ୍ୱରୂପକୁ ଲୁଚେଇ ରଖିବା ପାଇଁ ମନୁଷ୍ୟ ଭିନ୍ନ ପ୍ରକାର ବ୍ୟବସ୍ଥା କରିଛି । ଏହାକୁ ସଭ୍ୟତା ବୋଲି କୁହାଯାଉଛି ।

ମନୁଷ୍ୟର ଚାଲିଚଳନ , କଥାବାର୍ତ୍ତା, ଆଚାର ଓ ବ୍ୟବହାର ସବୁକିଛି ରୀତିରେ ଏହି ପ୍ରବଞ୍ଚନା ପୂରି ରହିଛି । ଏଇ ଦେଖନ୍ତୁ ଆଜିକାଲି ବଜାରରେ ପାଉଡର, ସ୍ନୋଠାରୁ ଆରମ୍ଭ କରି ବିଭିନ୍ନ କେଶ ସଜ୍ଜା ଉପକରଣ ବିକ୍ରି ବୃଦ୍ଧି ପାଉଛି । ଏହା ପଛରେ କ'ଣ କାରଣ ଅଛି ? ନିଜର ଚେହେରା ଯାହା ନୁହେଁ ତାହା ଦେଖାଇ ହେବା ଏହାର ଉଦ୍ଦେଶ୍ୟ ।

ଅବଶ୍ୟ ଅନେକ ଏପରି ଯୁକ୍ତିରେ ଏକମତ ହେବେନାହିଁ । କାରଣ ସ୍ୱରୂପ କୁହାଯାଇ ପାରେ ଯେ ମନୁଷ୍ୟ ପୋଷାକପତ୍ର ପିନ୍ଧୁଛି ଲଜ୍ଜା ନିବାରଣ ପାଇଁ । ଯଦି ପୋଷାକ ପିନ୍ଧାଯିବ ତାହାଲେ ସୁନ୍ଦର ପୋଷାକ କାହିଁକି ପିନ୍ଧାଯିବ ନାହିଁ । ନିଜର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ପାଇଁ ଉଦ୍ୟମ କରିବା ମଧ୍ୟରେ ପ୍ରବଞ୍ଚନାର ସ୍ଥାନ ଆସିଲା କେଉଁଠି ?

ଆଛା ଏ ଦିଗକୁ ଛାଡନ୍ତୁ, ଖାଇବା ଓ ପିନ୍ଧିବାରେ ସାମାନ୍ୟ ପ୍ରବଞ୍ଚନାକୁ ସଭ୍ୟତା ଓ ଶାଳୀନତା ବୋଲି କୁହାଯାଇପାରେ ।

ଅନ୍ୟ କଥା ବିଚାର କରାଯାଉ । ଯେଉଁଠାରୁ ଶୁଣିବ, ଯାହାଠାରୁ ଶୁଣିବ ସେ କହୁଛି ଯେ ଯୌତୁକ ଏକ ସାମାଜିକ ବ୍ୟାଧି । ତଥାପି ଏହା ବ୍ୟାପୁଛି କିପରି । ଯେଉଁମାନେ ଏହାର ସମାଲୋଚନା କରୁଛନ୍ତି ସେହିମାନେ ନେଉଛନ୍ତି ଓ ଦେଉଛନ୍ତି, ଯେତେ ପ୍ରକାର ସାମାଜିକ କଳଙ୍କ ରହିଛି ତାହାର ବାହକମାନେ ଏହାର ମୌଖିକ ସମାଲୋଚନାରେ ପଛାଉନାହାନ୍ତି ।

ଏଇ ଦେଖନ୍ତୁ ଦୁର୍ନୀତି । ଯେଉଁ ଅଫିସର ବା ସାଧାରଣ ଲୋକଙ୍କ ସହ ଆଲୋଚନା କରିବ ସେ ଦୁର୍ନୀତି ବିରୋଧରେ କହିବ । କିନ୍ତୁ ଦୁର୍ନୀତି ବଢି ବଢି ଚାଲିଛି । କୁହାଯାଉଛି ଯେ, ସଚ୍ଚୋଟ ହେଲେ ଲୋକ ଆଜିକାଲି ଚଳିପାରିବ ନାହିଁ । ଏହା ନିଜର ପ୍ରକୃତ ଚରିତ୍ରକୁ ଘୋଡାଇବା ବ୍ୟତୀତ ଅନ୍ୟ କିଛି ହୋଇନପାରେ । ପ୍ରତ୍ୟେକ ମନ୍ତ୍ରିମଣ୍ଡଳ ତାହାର ପୂର୍ବବର୍ତ୍ତୀ ମନ୍ତ୍ରୀମାନଙ୍କୁ ଦୁର୍ନୀତିଗ୍ରସ୍ତ ବୋଲି କହୁଛି । ଏହାଠାରୁ ବଳି ପ୍ରବଞ୍ଚନାର ଆଉ କଣ ନମୁନା ହୋଇପାରେ ?

(ତା୨୫.୦୬.୧୯୮୭ରିଖ)





Digitized by srujanika@gmail.com

# ଭାଷାର ସ୍ୱାଭିମାନ

ନିକଟରେ 'ପ୍ରଗତିବାଦୀ'ର ଏକ ବିଶେଷ ସଂଖ୍ୟାରେ ଗୋଟିଏ ଲେଖା ଦେବାକୁ ମୁଖ୍ୟମନ୍ତ୍ରୀଙ୍କୁ ମୁଁ ଇଂରାଜୀରେ ଖଣ୍ଡିଏ ଚିଠି ଲେଖିଥିଲି । ମୁଖ୍ୟମନ୍ତ୍ରୀ ମୋ ଚିଠିର ଉତ୍ତର ଓଡ଼ିଆରେ ଦେଇଛନ୍ତି । ଓଡ଼ିଆ ଚିଠିଟି ମୁଖ୍ୟମନ୍ତ୍ରୀଙ୍କ ଠାରୁ ପାଇ ଭାରି ଖୁସି ଲାଗିଲା । ଜାନକୀବାବୁ ଏବେ ସଭାସମିତିରେ କହୁଛନ୍ତି ଯେ ଆସନ୍ତା ଦୁଇବର୍ଷ ଭିତରେ ଆମ ରାଜ୍ୟରେ ସବୁ ସରକାରୀ ସ୍ତରରେ ଓଡ଼ିଆରେ କାରବାର ହେବ । କେତେ ମୁଖ୍ୟମନ୍ତ୍ରୀ ଗଲେଣି ଓଡ଼ିଆମାନେ ଓଡ଼ିଆରେ ରହିଲେ । ସରକାରୀ କଥା ଇଂରାଜୀରେ । ଏ ମୁଖ୍ୟମନ୍ତ୍ରୀ ଯଦି ଟଙ୍କାରେ ବାରଣା ବି ଓଡ଼ିଆ କରେଇ ଦେଇଯିବେ ତେବେ ଆଉ କୋଉ କଥା ପାଇଁ ନହେଉ ପଛେ ଏଇଥିପାଇଁ ତାଙ୍କ ନା ମନେ ପଡ଼ିବ ।

ଏଇ କଥାରୁ ଗୋଟିଏ ଘଟଣା ମନେ ପଡିଯାଉଛି ।

ଅନେକ ଦିନ ତଳର କଥା, ସେତେବେଳେ ଭାରତ ଓ ଚୀନ୍ ମଧ୍ୟରେ 'ହିନ୍ଦି-ଚୀନ୍ ଭାଇ ଭାଇ'' ଯୁଗ । ଚାଉଏନ୍ ଲାଇ (ଚୀନ୍‌ର ପ୍ରଧାନମନ୍ତ୍ରୀ) ଭାରତ ଆସିଥାନ୍ତି । ଦିଲ୍ଲୀରେ ଏକ ସଭାରେ ଆମର ସେତେବେଳକାର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଓ ଚାଉଏନ୍ ଲାଇ ଭାଷଣ ଦେଉଥାନ୍ତି । ଜବାହରଲାଲ ଇଂରାଜୀରେ ତାଙ୍କ ଭାଷଣ ସାରିଲେ ।

ଚାଉଏନ୍ ଲାଇ ଚୀନା ଭାଷାରେ ତାଙ୍କର ଭାଷଣ ଦେଲେ । ସେ ଚୀନା ଭାଷାରେ କହୁଥାନ୍ତି ଆଉ ଜଣେ ଚୀନ୍‌ର ଲୋକ ସେ ଭାଷଣକୁ ଇଂରାଜୀରେ ଅନୁବାଦ କରୁଥାନ୍ତି । ଅନୁବାଦକ ଅନୁବାଦ କଲାବେଳେ ମଝିରେ ମଝିରେ ଚାଉଏନ୍ ଲାଇଙ୍କ ମୁହଁରେ ଅସ୍ୱସ୍ତିର ଭାବ ଆମେ ଦେଖୁଥାଉ । ସେ ଗୁଣୁଗୁଣୁ ହୋଇ ଅନୁବାଦକଙ୍କୁ କ'ଣ କହୁଥାନ୍ତି ।

ଭାଷଣ ଭିତରେ ଦି'ତିନି ଥର ଚାଉଏନ୍ ଲାଇ ଚାପା ଗଳାରେ ଅନୁବାଦକଙ୍କର କାନରେ କ'ଣ କହିବାର ଆମେ ଦେଖିଲୁ । ଅନୁବାଦକ ତାହା ପରେ ପୂର୍ବୋକ୍ତ ଅନୁବାଦିତ ବାକ୍ୟଟିକୁ ସଂଶୋଧନ କରି ପୁଣି କହୁଥିଲେ । ଏଥିରୁ ଆମେ ଜାଣିଲୁ ଯେ ଚାଉଏନ୍ ଲାଇଙ୍କ ଚୀନ ଭାଷାକୁ ଅନୁବାଦକ ଠିକ୍ ଭାବରେ ଅନୁବାଦ କରି ପାରୁନଥିବାରୁ ଚୀନ୍‌ର ପ୍ରଧାନମନ୍ତ୍ରୀ ତାଙ୍କୁ ଠିକ୍ କରି କହିବାକୁ ନିର୍ଦ୍ଦେଶ ଦେଉଥିଲେ ।

ଏଥିରୁ ବୁଝିହେଲା ଯେ ଚାଉଏନ ଲାଇଙ୍କର ଇଂରାଜୀ ଭାଷାରେ ବ୍ୟୁତ୍ପତ୍ତି ଥିଲା । ସେ ଇଂରାଜୀ ଓ ଫ୍ରେଞ୍ଚ ଭାଷାରେ ପାଠ ପଢ଼ିଥିଲେ । ତେଣୁ ତାଙ୍କର ଇଂରାଜୀ ଜ୍ଞାନ ଗଭୀର ଥିଲା । ହୁଏତ ଜବାହାର ଲାଲଙ୍କ ଠାରୁ ତାଙ୍କର ଇଂରାଜୀ ଜ୍ଞାନ କମ୍ ନଥିଲା । କିନ୍ତୁ ତାଙ୍କର ଜାତୀୟତା ବୋଧ ଉଗ୍ର ଥିଲା । କମ୍ୟୁନିଷ୍ଟ ହୋଇ ମଧ୍ୟ ଚୀନ୍ ଓ ଚୀନ୍ ଭାଷା ପ୍ରତି ସମ୍ମାନ ତଥା ଅନୁରାଗର ନିଦର୍ଶନ ଥିଲା ସେ ଦିନର ଘଟଣା । ଜାତିର ସ୍ୱାଭିମାନ କେତେ ହେବା ଉଚିତ ଆମେ ବସି ସେଠାରେ ଆଲୋଚନା କରୁଥିଲୁ ।

ଆମର ଇଚ୍ଛା ହେଉଥିଲା ଜବାହରଲାଲ ମଧ୍ୟ ସେ ଦିନ ହିନ୍ଦିରେ କହିଥାନ୍ତେ । ଜଣେ ଅନୁବାଦକ ତାହା ଚୀନା ଭାଷାରେ ଅନୁବାଦ କରିଥାନ୍ତେ । କିନ୍ତୁ ଭାରତରେ ସେ ସ୍ୱାଭିମାନ କାହିଁ ?

(ତା ୨୮.୦୫.୧୯୮୩ରିଖ)





Digitized by srujanika@gmail.com

# ଅନାମଧେୟର ସ୍ୱୀକୃତି କ'ଣ ?

ସେଦିନ ଆମେ ବଜାର ଯାଇଥିଲୁ ମୋର ଜଣେ ବନ୍ଧୁ ଓ ତାଙ୍କ ପତ୍ନୀ । ତାଙ୍କ ଘରକୁ କିଏ ସବୁ ଖାଇବାକୁ ଆସିବେ ବୋଲି ଦେଶୀ ପରିବା ଇତ୍ୟାଦି କିଣିବାର ଥିଲା । ଆଳୁ ଦଶ କିଲୋ, ପିଆଜ ପାଂଚ କିଲୋ, କଖାରୁ ଦଶ କିଲୋ, ପୋଟଳ ପାଞ୍ଚ କିଲୋ, ବାଇଗଣ ପାଞ୍ଚ କିଲୋ, ଆମ୍ବ ଦଶ କିଲୋ ଏବଂ ଆହୁରି କେତେ କଣ ?

ହାଟ ଭିତରେ କିଣା ସରିଲା ପରେ ବୋଝ ଉଠାଇ ବାହାରେ ଥିବା ଗାଡି ପର୍ଯ୍ୟନ୍ତ ଏସବୁ ଜିନିଷ ପହଞ୍ଚିବ କେମିତି । ଖୋଜା ହେଲା ଲୋକ ।

ଯେଉଁ ଦୋକାନୀ କଖାରୁ ବିକିଥିଲା ସେ ଗୋଟିଏ ପିଲାକୁ ଡାକି ତା ମୁଣ୍ଡରେ ଗୋଟାଏ ବଡ ଟୋକେଇ ଥୋଇ ପରିବା ଲଦିବାରେ ଲାଗିଲା । ଛୋଟ ପିଲାଟିଏ । ବୟସ ଦଶରୁ ବେଶୀ ହେବ ନାହିଁ । ସୁନ୍ଦର ମୁହଁ, ଗୋରା ଦେହ । ଦାନ୍ତଗୁଡାକ ଚିକ୍ ଚିକ୍ ସଫା । ଭଲ ଜାମା ପ୍ୟାଣ୍ଟ ପିନ୍ଧାଇଲେ ବହୁ ଆଇ.ଏ.ଏସ୍. ଅଫିସରଙ୍କ ପିଲାଙ୍କ ଠାରୁ ସୁନ୍ଦର ଦେଖାଯିବ । ମୁଣ୍ଡରେ ବୋଝ ଥୋଇ କରି ମଧ ସଂସ୍କୃତି ସଂପନ୍ନ ଆଭାସ ଅଛି । ଖୁବ୍ ହସୁଛି । ସବୁଯାକ ପରିବା ଏକା ଖେପକେ ନେବା ସମ୍ଭବ ହେଲା ନାହିଁ । ଦୁଇଥରରେ ନେବ ।

ମୁଣ୍ଡରେ ବୋଝ ଥୋଇ ହସି ହସି ନାଚି ନାଚିକା ପିଲାଟା ଚାଲୁଥାଏ । ପ୍ରଥମ ଖେପ ପରିବା ଗାଡିରେ ଥୋଇ ଆସିଲା ଦ୍ୱିତୀୟ ଖେପ ନେବାକୁ । ସେଇଥର କେତେ ପଇସା ନେବ କଥା ପଡ଼ିଲା । ଥରକେ ଦଶ ପଇସା କରିନେଲେ କୋଡ଼ିଏ ପଇସା । ପିଲାଟା ଆପତ୍ତି କଲା । 'ହଉ, ତିରିଶ ପଇସା ନେ' ''ନାହିଁ ବାବୁ ଆଠଣା ଦିଅ'' ହସି ହସି ସେ ଉତ୍ତର କଲା ।

ବନ୍ଧୁ ଆଉ ଦଶ ପଇସା ଦେଇ କହିଲେ 'ନାହିଁ, ଚାଳିଶ ପଇସା ନେ ଯାଃ-ଖୁସି ।

ପିଲାଟା ଖୁସିରେ ହସି ହସି କହିଲା 'ଆଉ ଦଶଟା ପଇସା ଦେଲେ କ'ଣ ବାବୁ ତୁମର ସରିଯିବ ? କିନ୍ତୁ ଆଉ ଆପତ୍ତି ନକରି ଦ୍ୱିତୀୟ ଖେପ ବୋଝ ମୁଣ୍ଡେଇ ଚାଲିଲା ଡେଇଁ ଡେଇଁ ।

ମୁଁ ଭାବୁଥିଲି ମୋ ପୁଅ କଥା । ସେ ବି ସେଇ ଏଗାର ବର୍ଷର । ଏତେ ଗୋରା ଏତେ ସୁନ୍ଦର ନୁହେଁ ତ ? ପାଠ ପଢୁଛି । କୋଡ଼ିଏ କିଲୋ ଜିନିଷ ତ ମୋ ପୁଅ ମୁଣ୍ଡରେ ଥୋଇ ଚାଲି ପାରିବିନି । ନାଚିବା, ଡେଇଁବା ତ ଦୂରର କଥା ।

ପରିବା ବୋଝ ବୋହୁଥିବା ପିଲାଟା କା'ର ? ତା'ର ଏ ଦେଶରେ ସ୍ୱୀକୃତି କ'ଣ ? ସେ କ'ଣ ବୁଦ୍ଧିଆ ନୁହେଁ ? ସେ କ'ଣ ଭଲ ପଢ଼ନ୍ତାନି ? ଯେଉଁଠି ସେ ଜନ୍ମ ହୋଇଛି ସେଠି ଜନ୍ମ ହେବା କଣ ତା ନିଜ ଇଚ୍ଛାରେ ? ନା ସେଥିପାଇଁ ସେ ପାପ କରିଛି ?

ମନଟା ଦୁଃଖୀ ହୋଇଗଲା । ସବୁ ଚିନ୍ତାଗୁଡ଼ାକ ଗୋଳମାଳିଆ ହୋଇଗଲା ମୋର ।

**(ତା୦୬.୦୫.୧୯୮୦ରିଖ)**





Digitized by srujanika@gmail.com

# 'ଦାଦା'ଙ୍କର ଶହେରୁ ଦଶ

ରାଜଧାନୀର ଶିଳ୍ପ ଅଞ୍ଚଳରେ ଜଣେ ବନ୍ଧୁ ନିଜର କାରଖାନା ପାଇଁ ଗୃହନିର୍ମାଣ କରୁଥିଲେ । ଶିଳ୍ପାଞ୍ଚଳର ଆଖପାଖ ଗ୍ରାମର ଟୋକାମାନେ ବିଶେଷକରି ପାଠ ପଢୁଥିବା ଯୁବକମାନେ ଶିଳ୍ପ ପ୍ରତିଷ୍ଠା କରୁଥିବା ଉଦ୍ୟୋଗୀମାନଙ୍କ ଉପରେ ବିଭିନ୍ନ ଧରଣର ଚାପ ପକାଇ ଅର୍ଥ ଉପାର୍ଜନ କରିବାର ଉଦ୍ୟମ କରନ୍ତି । ନରମ ଲୋକଙ୍କ ଠାରୁ ପଇସା କିଛି ଆଦାୟ ମଧ ହୁଏ । ଏହି ପଇସା ଆଦାୟ ପାଇଁ ବିଭିନ୍ନ ରକମର ଦାବି ଓ ଧମକ ଦିଆଯାଏ । ଗୋଟାଏ ଗୋଷ୍ଠୀ ଆସି ଶିଳ୍ପପତି ବନ୍ଧୁଙ୍କ ପଥର ପାଚେରୀ କରୁଥିବା ମିସ୍ତ୍ରୀ ଉପରେ ପ୍ରଥମେ ବାଚନିକ ଆକ୍ରମଣ ଆରମ୍ଭ କଲେ । ତାଙ୍କର ବକ୍ତବ୍ୟ ହେଲା, ''ତୁ ଶଳା ଆସି କାହା ଅନୁମତିରେ ଏଠି କାମ କରୁଛୁ । ଏ କାମ ମୁଁ କରିବି । ତୁଯଦି କରିବୁତେବେ ମତେ ତୁ ଯେତିକି ରେଟ୍‌ରେ କାମ ଧରିଛୁ ସେଥିରୁ ଦଶ ପରସେଣ୍ଟ ଦବୁ । ନଚେତ୍ କାଲିଠୁ ତୋ କାମ ବନ୍ଦ ।'' ଏମିତି ଦି' ଚାରିଥର ଆସିଲା ପରେ ଦିନେ ପେଟି କଣ୍ଟ୍ରାକ୍ଟର ମିସ୍ତ୍ରୀକୁ ଧକ୍‌କା ଗୋଟାଏ ଦି'ଟା ବି ମାରିଲେ ଟୋକାମାନେ ।

ଦିନେ ଦାଦାମାନେ ବନ୍ଧୁଙ୍କ ହାବୁଡ଼ରେ ପଡ଼ିଗଲେ । ଦୂରରେ ଠିଆ ହୋଇ ମିସ୍ତ୍ରୀକୁ ଡାକିଲେ । ମିସ୍ତ୍ରୀ କହିଲା, ''ଆଜି ବାବୁ ଅଛନ୍ତି, ବାବୁଙ୍କୁ କୁହ ।'' ଦାଦାଙ୍କ ନେତା ବାଧ ହୋଇ ବନ୍ଧୁଙ୍କ ପାଖକୁ ଆସିଲେ । କହିଲେ, ''ଆଜ୍ଞା, ଏ କାମଟା ଆମକୁ ଦିଅନ୍ତୁ ।'' ବାବୁ ପଚାରିଲେ, ''ତୁମେ କ'ଣ ମିସ୍ତ୍ରୀ ? ତୁମେ ତ ବାବୁଟିଏ ପରି ଦେଖାଯାଉଛ, ଏ କାମ କ'ଣ କରିବ ?'' ଯୁବନେତା ଉତ୍ତର ଦେଲେ 'ମୁଁ ଆଜ୍ଞା ଏଠି କଣ୍ଟ୍ରାକ୍ଟରି କରେ । ମୁଁ ଛାତ୍ର ନେତା । ଏ ଅଞ୍ଚଳରେ ମୋ ହାତରେ ବହୁତ ଟୋକା ଅଛନ୍ତି । ଏ ଶିଳ୍ପ ଅଞ୍ଚଳରେ ଯେତେ ଲୋକ କାରଖାନା କରୁଛନ୍ତି, ସମସ୍ତେ ଆମର ସାହାଯ୍ୟ ନିଅନ୍ତି । ନହେଲେ ଅସୁବିଧାରେ ପଡ଼ନ୍ତି ।'

ବନ୍ଧୁ ଏ ପ୍ରଚ୍ଛନ୍ନ ଧମକ ଶୁଣି ଉତ୍ତର ଦେଲେ, ''ଆଚ୍ଛା ହଉ । ଏଠି ଯିଏ କାମ କରିବ ସେ କାମ ପାଇଁ କୋଟେସନ ଦେବ । ମୁଁ ଚାରି ଛ ଜଣଙ୍କ ଠାରୁ କୋଟେସନ ପାଇଛି । ତୁମେ କାଲି ଆଣି କୋଟେସନ ଦିଅ । ଯଦି ମତେ ପୋଷେଇବ ତେବେ ତମକୁ କାମ ଦବା ।''

ଦାଦାଙ୍କ ନେତା କହିଲେ,''ହଁ ଆଜ୍ଞା କୋଟେସନ ଦେବି । କିନ୍ତୁ ଏ ପାଚିରୀ କାମଟା ମତେ ଦିଅନ୍ତୁ ।''

ବନ୍ଧୁ କହିଲେ ''ନାହିଁ ଏ କାମଟା ମୁଁ ଏ ମିସ୍ତ୍ରୀକୁ ଦେଇଛି । କାରଖାନା କାମଟାର କୋଟେସନ ନେଇ କାଲି ଅଫିସ୍‌କୁ ଆସ ଯଦି କାମ କରିବା ମତଲବ ଥାଏ ।''

ଦାଦା ନେତାଙ୍କ ସାଙ୍ଗରେ ଥିବା ଜଣେ ଯୁବକ କହିପକାଇଲେ ''ଆପଣ କଣ ଏ କାମଟା ଉଠାଇ ନେବେ ଆମକୁ ନ ଦେଲେ । ଏଠି ବାଲି, ଗୋଡ଼ି, ସିମେଣ୍ଟ, ରଡ଼ ସବୁ ରହିବ ତ ?''

ବନ୍ଧୁ କହିଲେ, ''ତେବେ କ'ଣ ଏ କାମର କଣ୍ଟ୍ରାକ୍ଟରି ତମକୁ ନ ଦେଲେ ତମେ ଏ ଜାଗାରୁ ଆମ ଜିନିଷ ସବୁ ଚୋରି କରି ନେଇଯିବ ? ତା' ହେଲେ ଚୋରି କେଶ୍‌ରେ ପଡ଼ିଯିବ ।''

ଦାଦା ନେତା କହିଲେ, ''ନାହିଁ ତା କଥା ଧରନ୍ତୁ ନାହିଁ । ମୁଁ କୋଟେସନ ଆଣି ଦେବି ।'' ତାଙ୍କ ଗୋଷ୍ଠୀରୁ ଆଉ ଜଣେ କଣ କହି ଆସୁଥିଲା, ନେତା ଆଖି ମାରି ତାକୁ ବାରଣ କଲେ ।

ପରଦିନ ବନ୍ଧୁ ସେ ଜାଗାକୁ ଯାଇ ଶୁଣିଲେ ଯେ, ପୂର୍ବଦିନ ସେଠାରୁ ଆସିବା ପରେ ଦାଦାମାନେ ଆସି ବନ୍ଧୁଙ୍କ ସମ୍ପର୍କରେ ସବୁ ଟିକିନିଖି ପଚାରି ବୁଝିଲେ । ଶୁଣିଲେ ଯେତେବେଳେ ବନ୍ଧୁଙ୍କ ପହୁଞ୍ଚ



Digitized by srujanika@gmail.com

ଉପରମହଲ ପର୍ଯ୍ୟନ୍ତ ଅଛି, ମିସ୍ତ୍ରୀ ଠାରୁ ଶହେ ଟଙ୍କା ମନ୍ଦିର ଚାନ୍ଦା ଦାବି କରି ଶେଷରେ ଦଶଟି ଟଙ୍କା ନେଇ ଫେରିଲେ । ଆଉ ତା'ପରେ ସେ ଜାଗାକୁ ଦାଦାମାନେ ଫେରିନାହାନ୍ତି । ବନ୍ଧୁ କହନ୍ତି ଯେ ସେଦିନ ଯଦି ସେମାନଙ୍କୁ ଚୋରି କେଶ୍‌ରେ ପକାଇବେ ବୋଲି ପାଲଟା ଧମକ ଦେଇନଥାନ୍ତେ, ଆଗରୁ ଅନ୍ୟ କେତେକ ଶିଳ୍ପୋଦ୍ୟୋଗୀ ଯେଉଁ ଜୋରିମାନା ଦେଇଥିବାର ଜଣାଅଛି ସେ ଦଶା ଆମ ବନ୍ଧୁଙ୍କର ମଧ ହୋଇଥାନ୍ତା ।

(ତା୩୦.୦୬.୧୯୮୭ରିଖ)



# ଭି.ଆଇ.ପି ଆକମୋଡେସନ

ଭଗବାନ ଦଣ୍ଡ ଦେଲେ ଜୀବିତାବସ୍ଥାରେ ମଣିଷକୁ ହସପିଟାଲ ପଠାନ୍ତି । ମଲାପରେ ଯମପୁରରେ ଯେଉଁ ଦଣ୍ଡସବୁର ବର୍ଣ୍ଣନା ଅଛି, ସେଗୁଡ଼ିକ ତ' ଆମେ କେହି ଅଙ୍ଗେ ନିଭେଇନେ । କିନ୍ତୁ ନର୍କର ଯନ୍ତ୍ରଣା ଭାରତୀୟ ହସପିଟାଲ ମାନଙ୍କରେ ଜୀଅନ୍ତା ମଣିଷକୁ ଦିଆଯାଏ । ଯମଦୂତ ପରି ଡାକ୍ତର, ନର୍ସ, ବେହେରା ଓ ସୁଇପରମାନେ ଯମଦଣ୍ଡ ଦିଅନ୍ତି । ଏସବୁ କିନ୍ତୁ ସାଧାରଣ ଲୋକଙ୍କ ପାଇଁ । ଆପଣ ଯଦି ଭି.ଆଇ.ପି ହୋଇଥାଆନ୍ତି କିମ୍ବା ତାଙ୍କର ବନ୍ଧୁବାନ୍ଧବ(ଲେଖା ଯୋଖା ହେଉ ପଛକେ) କିମ୍ବା କୌଣସି ଭି.ଆଇ.ପି.ଙ୍କ ମାଧମରେ ହସ୍‌ପିଟାଲରେ ଭର୍ତ୍ତି ହୋଇ ନର୍ସିଂହୋମ୍ କିମ୍ବା ସ୍ପେଶାଲ କ୍ୟାବିନ୍‌ରେ ଯାଗା ପାଇଯାଆନ୍ତି, ତେବେ କଥାଟା ଭିନ୍ନ ହୋଇଯାଏ । ରୋଗ ଯଦି ଗୁରୁତର ନହୋଇଥାଏ କିମ୍ବା ରୋଗୀ ସଂକଟାପନ୍ନ ହୋଇନଥାଏ, ତେବେ ନିର୍ସିଂହୋମ ଓ ସ୍ପେଶାଲ କ୍ୟାବିନ୍‌ରେ ଭି.ଆଇ.ପି. କନେକସନ୍ ଯୋଗାଡ଼ କରି ଭର୍ତ୍ତି ହୋଇଯାଆନ୍ତୁ ।

ଉକ୍ତ ଭି.ଆଇ.ପି. କିମ୍ବା ତାଙ୍କ ସମ୍ପର୍କୀୟ ରୋଗୀ ହୋଇଥିଲେ ସବୁ ମାଗଣା । ସ୍ପେଶାଲ ଡାଏଟ୍‌ର ଖାଦ୍ୟ, ଫଳ, ପାଉଁରୁଟି, ଅଣ୍ଡା, ବିସ୍କୁଟ ଓ ଦୁଧ ଆଦି ପୁଷ୍ଟିକାରକ ଖାଦ୍ୟ ଯଥେଷ୍ଟ ମିଳିବ । ରୋଗୀ ଖାଉ ବା ନଖାଉ ତିନିଜଣ ଆଟେଣ୍ଡାଣ୍ଟ ପେଟପୁରା ଖାଇ ପାରିବେ ଓ ବଳକା ଘରକୁ ଆଣି ପାରିବେ ପିଲାଙ୍କ ପାଇଁ । ସେଠାରେ ମାଗଣା ବିଜୁଳି ଜାଳି, ଚା, କଫି ହର୍ଲିକ୍‌ସ ଓ ଚାହିଁଲେ ଜଳଖିଆ ତିଆରି କରି ଖାଇପାରିବେ । ଡାକ୍ତର, ନର୍ସ ଓ ସେମାନଙ୍କ ତାଗିଦରେ ବେହେରା, ସୁଇପର ଆବଶ୍ୟକତା ଠାରୁ ଅଧିକ ସମୟ ଆସି ଖବର ବୁଝିବେ । ସୁପରିଣ୍ଟେଣ୍ଡେଣ୍ଟ ମଧ । ଆଠଦିନ ହସ୍‌ପିଟାଲରେ ରହି ଫେରିଲେ ବେଶ୍ ତାଜା ଓ ମୋଟ୍‌ମାଟ ହୋଇ ଆସିବେ ।

ବିଶେଷକରି ଯେଉଁମାନେ ବାହାରୁ ଆସୁଛନ୍ତି ଓ ହୋଟେଲରେ ପଇସା ଖର୍ଚ୍ଚ କରି ରହୁଛନ୍ତି, ସେମାନଙ୍କୁ ତ' ମୁଁ ସୁପାରିଶ କରିବି ଖୁବ୍ ଶସ୍ତାରେ ଆଟାଚ୍‌ଡ ବାଥ୍‌ରୁମ ସହିତ ଏତେ ସୁବିଧା ଥାଉ ଥାଉ ଅନ୍ୟ ଅସ୍ଥାୟୀ ବାସର ବ୍ୟବସ୍ଥା ଆମ ରାଜଧାନୀରେ ଆଉ କିଛି ନାହିଁ । ପରୀକ୍ଷା କରନ୍ତୁ । କେବଳ ଭି.ଆଇ.ପି କନେକ୍‌ସନ କିମ୍ବା ଜଣେ ବଡ଼ ଡାକ୍ତରଙ୍କ ସହିତ ଘନିଷ୍ଠତା ଥିବା ଦରକାର ।

(ତା୨୮.୦୨.୧୯୮୬ରିଖ)





Digitized by srujanika@gmail.com

# ଟେଲିଭିଜନରେ ଟେଲିଫୋନ୍ ପ୍ରସଙ୍ଗ

ଟେଲିଭିଜନ ଓରଫ ଦୂରଦର୍ଶନର ଏକ କାର୍ଯ୍ୟକ୍ରମରେ ଟେଲିଫୋନ୍ ବ୍ୟବହାର ସମ୍ପର୍କରେ ଦର୍ଶକ ବିଶେଷକରି ଟେଲିଫୋନ୍ ବ୍ୟବହାରକାରୀଙ୍କ ଉଦ୍ଦେଶ୍ୟରେ ଏକ ବିଷୟ ଦେଖିବାକୁ ମିଳିଲା ।

ଜଣେ ଟେଲିଫୋନ୍ ବ୍ୟବହାରକାରୀ କିପରି ଟେଲିଫୋନ୍ ନମ୍ବର ଆଇନା ଉପରେ ଜମିଥିବା ଧୂଳିର ଆସ୍ତରଣ ଉପରେ ଆଙ୍ଗୁଠିରେ ଟେଲିଫୋନ ନମ୍ବର ଲେଖି ରଖୁଛନ୍ତି ଓ ତାଙ୍କ ପ୍ରେମିକା କିପରି ତାହା ଲିଭାଇ ଆଇନା ସଫା କରିଦେଲା ପରେ ଲିଭି ଯାଇଥିବା ଟେଲିଫୋନ୍ ନମ୍ବର ପାଇଁ ବ୍ୟସ୍ତ ହୋଇ ପଡୁଛନ୍ତି ଓ ପ୍ରେମିକାଙ୍କ ପରାମର୍ଶ ନେଇ ୱାନ୍-ନାଇନ୍ ସେଭେନ୍‌କୁ (ଟେଲିଫୋନ୍ ଡାଇରେକ୍ଟରୀ ଇନ୍‌କ୍ୱାରି) ନାମ ଭୁଲି ଯାଇଥିବା କମ୍ପାନୀର ଟେଲିଫୋନ୍ ନମ୍ବର ପାଇଁ ଟେଲିଫୋନ୍ ଅପରେଟରଙ୍କୁ ହଇରାଣ କରୁଛନ୍ତି ଆଦି କେତେଗୁଡ଼ିଏ ଛୋଟ ଛୋଟ ଝଲକ ଦେଖାଇ ଟେଲିଫୋନ୍ ରଖିଥିବା ଲୋକଙ୍କୁ ବିଭିନ୍ନ ପ୍ରକାର ପରାମର୍ଶ ଦିଆଯାଇଛି । ଟେଲିଫୋନ୍ ଅପରେଟରମାନେ ଖୁବ୍ ଧୈର୍ଯ୍ୟର ସହ ଟେଲିଫୋନ୍‌କାରୀଙ୍କ କାମ କରି ଦେଉଛନ୍ତି ବୋଲି ମଧ୍ୟ ଏହି ଦୂରଦର୍ଶନ ଚିତ୍ରରେ ବର୍ଣ୍ଣିତ ରହିଛି । ଟେଲିଫୋନ୍ ବ୍ୟବହାରୀମାନଙ୍କର ଅନୁଚିତ ଓ ଅନୁପଯୁକ୍ତ ବ୍ୟବହାର ପ୍ରଣାଳୀ ମଧ୍ୟ ଦର୍ଶାଯାଇଛି । ଏସବୁ ଟେଲିଫୋନ୍ ବ୍ୟବହାରୀମାନଙ୍କୁ ଅନେକ ପ୍ରକାର ଶିକ୍ଷା ଦେବ ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ଯେଉଁ ଅଧିକାଂଶ ଟେଲିଫୋନ୍ ବ୍ୟବହାରକାରୀ ୱାନ୍ ନାଇନ୍ ସେଭେନ୍, ୱାନ୍ ଏଇଟ୍-ଜିରୋ, ୱାନ୍-ନାଇନ୍ ଏଇଟ୍, ୱାନ୍-ଏଇଟ୍ ୱାନ୍ ଆଦି ଅତ୍ୟାବଶ୍ୟକ ଟେଲିଫୋନ୍ ନମ୍ବର ପାଇଁ ଡାଏଲ୍ କରି ବହୁ ସମୟ ଅପେକ୍ଷା କଲାପରେ ବି ଏକ୍ସଚେଞ୍ଜରେ କେହି ଉଠାନ୍ତି ନାହିଁ, ଟ୍ରଙ୍କ କଲ୍‌ଯେପରି ବହୁ ସମୟ ନିଏ କିମ୍ବା ଲାଇନ୍ ଆଉଟ୍ ଅଫ୍ ଅର୍ଡ଼ର ଦୋଷରୁ ଆଦୌ ମିଳେ ନାହିଁ, ଡାଏଲ୍ ଟୋନ୍ ଆସେ ନାହିଁ, ଡାଏଲ କଲାବେଳେ ତୁମ କାନରେ ରିଂ ବାଜୁଥିଲେ ମଧ୍ୟ ଅପର ପଟରେ ଟେଲିଫୋନ୍ ବାଜେ ନାହିଁ, ଡାଏଲ କରିସାରିଲା ପରେ ମଧ୍ୟ ଡାଏଲ ଟୋନ୍ ଆସୁଥାଏ, ଟେଲିଫୋନ୍ ଉଠାଇଲାମାତ୍ରେ ଏନ୍‌ଗେଜେଡ୍ ସାଉଣ୍ଡ ଆସୁଥାଏ, ଟେଲିଫୋନ୍ ଖରାପ ହେଲେ ବହୁବାର କମ୍ପ୍ଲେନ୍ ଦେଲେ ମଧ୍ୟ ମରାମତି କରିବାକୁ କେହି ଦିନ ଦିନ ଧରି ଆସନ୍ତି ନାହିଁ, ମିଛ ଟେଲିଫୋନ୍ ବିଲ୍ ଅଧିକା ଆସିଲେ ଆଗେ ପଇସା ଦିଅ ପଛେ ଅଭିଯୋଗ କରିବ କୁହାଯାଏ, ଇତ୍ୟାଦି କେତେ ଅସରନ୍ତି ଓ ଅଗଣତି ଦୋଷ ଅଛି ସେ ସମ୍ପର୍କରେ ଦୂରଦର୍ଶନବାଲା କଥାଚିତ୍ର ଟେଲିଭିଜନରେ ଦେଖାଇଲେ ଟେଲିଫୋନ୍ ବ୍ୟବହାରକାରୀ ଦର୍ଶକମାନେ ନିଜ ଜୀବନର ପ୍ରତିଦିନର ତିକ୍ତ ଅଭିଜ୍ଞତା ସମ୍ପର୍କରେ ଏକ ମନୋରଞ୍ଜନ କାର୍ଯ୍ୟକ୍ରମ ଦେଖିବାକୁ ପାଆନ୍ତେ ।

କେହି ଘରୋଇ ଦୂରଦର୍ଶନ ଚିତ୍ର ପ୍ରଯୋଜକ ଏପରି ଚିତ୍ର ନିର୍ମାଣ କଲେ ଟେଲିଭିଜନବାଲା ତାହା ପଇସା ଦେଇ କିଣିବେ କି ?

(ତା୩୦.୦୪.୧୯୮୫ରିଖ)





Digitized by srujanika@gmail.com

# ବିଳମ୍ବିତ ନ୍ୟାୟର ବିଡ଼ମ୍ବନା

ଜଣେ ଓକିଲ ବନ୍ଧୁଙ୍କ ଘରେ ବସିଥିଲି । ଗପସପ ଭିତରେ ଆସିଲା ଗୋଟାଏ ମକଦ୍ଦମାର ଦୃଷ୍ଟାନ୍ତ, ଯେଉଁଥିରେ ଉଭୟପକ୍ଷ ନ୍ୟାୟାଳୟର ବିଳମ୍ବ ପଦ୍ଧତିରେ ଘୋସରାଓଟରା ଖାଇ ଶେଷରେ ନିଜ ଭିତରେ ଫଏସଲା କଲେ । କଥାଟି ଗୁରୁତ୍ୱପୂର୍ଣ୍ଣ ତଥାପି ହାସ୍ୟରସାତ୍ମକ । କଥାଟି ହେଲା-

ଦୁଇଟି ପରିବାର ଗୋଟିଏ ସ୍ଥାନରେ ପଡ଼ୋଶୀ ଭାବରେ ରହୁଥିଲେ । ସେମାନଙ୍କ ମଧ୍ୟରେ ବେଶ୍ ବନ୍ଧୁତା ଥିଲା । କାଳକ୍ରମେ କୌଣସି ଛୋଟ ଛୋଟ କାରଣରୁ ବଚସା ଆରମ୍ଭ ହୋଇ ଘନିଷ୍ଠ ବନ୍ଧୁତା ତିକ୍ତ ଶତ୍ରୁତାରେ ପରିଣତ ହୋଇ ଶେଷରେ ଦୁଇ ଗୃହକର୍ତ୍ତା ମକଦ୍ଦମାରେ ପକ୍ଷ ହୋଇ ପରସ୍ପର ବିରୋଧରେ କଚେରୀରେ ଠିଆ ହେଲେ । ଓକିଲ, ମୋହରିର, ପେସ୍କାର ବହୁତ ପଇସା ଖାଇଲେ ଉଭୟ ପକ୍ଷଙ୍କର । କୋର୍ଟ ଫିସ୍, ରିକ୍ସାଭଡ଼ା ଆଦିରେ ପଇସା ଖର୍ଚ୍ଚ । ମକଦ୍ଦମା ଲଢ଼ିବା ପାଇଁ ବହୁତ ଦିନ ଅଫିସରୁ ଛୁଟି ନେବାକୁ ପଡ଼ିଲା । ଛୁଟି ଅଭାବରୁ ବିନା ଦରମାର ଛୁଟି ନେବାକୁ ପଡ଼ିଲା । ଏବେ ପ୍ରତିଦିନ ପରସ୍ପର ବିରୋଧରେ ପ୍ରତ୍ୟକ୍ଷ ଗାଳିଗୁଲଜ । ସାମାଜିକ ଜୀବନରେ ସ୍ନାୟୁ ଯୁଦ୍ଧ । ପାରସ୍ପରିକ ନିନ୍ଦା ରଚନାରେ ବନ୍ଧୁ ମହଲରେ ଘୋର ଅଭିଯାନ ଆଦି ଚାଲିଲା । ଲୁଣ ଦିଆନିଆ ପରିବର୍ତ୍ତେ ପରସ୍ପର ଘର ଆଗରେ ରାତିରେ ଅଳିଆ ଜମା କରିବା ଆଦି ବହୁ ପ୍ରକାର ଅସ୍ପୃହଣୀୟ କାମ ଆରମ୍ଭ ହେଲା । ପିଲାମାନଙ୍କ ମଧ୍ୟରେ ଖେଳକୁଦ କରିବା, କଥା ହେବା ବନ୍ଦ ହେଲା ।

ପ୍ରଥମ ପାହାଚରୁ ଅପିଲ ହୋଇ ଦ୍ୱିତୀୟ ପାହାଚ କଚେରୀରେ ଫଏସଲା ଜଣକ ବିରୋଧରେ ଯିବାରୁ ଶେଷରେ ଉଚ୍ଚ କୋର୍ଟକୁ ଗଲା । ସେତେବେଳକୁ କେତେ ବର୍ଷ ବିତିଗଲାଣି । ଯେତେ ପଇସା ଗଲାଣି ଉଭୟଙ୍କର ସେଥିରେ ପ୍ରତ୍ୟେକ ଗୋଟାଏ ଲେଖାଁ କୋଠା ବାଢ଼େଇ ପାରିଥାନ୍ତେ ହୁଏତ । ଜଣକର ବାଳସବୁ ପାଚିଗଲାଣି । ଆଉ ଜଣକର ବାଳସବୁ ଉପୁଡ଼ି ଖୋପଡ଼ି ଉପର ଚିକ୍କଣ ଗୋଲ ହୋଇଗଲାଣି । ପୁଷ୍ଟ ଗାଲମାନଙ୍କରେ ଖୋଲ ହୋଇଗଲାଣି । ଜଣକର ରକ୍ତଚାପ ରୋଗ ତ ଆଉ ଜଣକର ମଧୁମେହ ରୋଗ । ପିଲାଙ୍କର ପାଠ ପଢ଼ା ପାଇଁ ପଇସା ତୁଲେଇ ହେଉନି । ଝିଅମାନେ ବାହା ହେବାକୁ ମଧ ହେଲେଣି ।

ଉଚ୍ଚ ନ୍ୟାୟାଳୟରେ ମଧ କେତେବର୍ଷ ଗଡ଼ିଲାଣି । ଉଭୟ ହାଲିଆ ହୋଇଗଲେଣି । ମନ ଖଟା ଲାଗିଲାଣି । କାହିଁକି ଏଥିରେ ସେମାନେ ପଶିଲେ ! ଶେଷରେ ଦିନେ ଦେଖାଗଲା କଚେରୀ ବାହାରିଲା ବେଳକୁ ରିକ୍ସା ମିଳୁନି । ଗୋଟିଏ ରିକ୍ସା ମିଳିଲେ ଅନ୍ୟ ଜଣକ ରିକ୍ସା ଅଭାବରେ କାତର ଦୃଷ୍ଟିରେ ଚାହୁଁଛି । ତେଣୁ ଗୋଟିଏ ରିକ୍ସା ନେଇ ଅଧାପଇସା ଦେଇ କଚେରୀ ଆସିଲେ । ପୁଣି କୋଉଦିନ ଏହି ଜଣକ ରିକ୍ସା ଭଡ଼ା ଦିଅନ୍ତି ତ ଆଉଥରେ ଆର ଜଣକ । ଶେଷରେ ରିକ୍ସାରେ ଆସିବାବେଳେ ଗପସପ ହୋଇ ମକଦ୍ଦମା କରିବା ମୂର୍ଖତା ବିଷୟରେ ସେମାନେ ଏକମତ ହେଲେ ।

କଚେରୀରେ ରିକ୍ସାରୁ ଓହ୍ଲାଇଲା ବେଳକୁ ଉଭୟେ ପଇସା ଦେବାକୁ ଛଡ଼ାମଡ଼ା । ବନ୍ଧୁତା ପୁଣି ଫେରିଲାଣି । ଉଭୟ ପକ୍ଷର ଓକିଲ ଓ ମୋହରୀର ଏକଥା ଦେଖି ଆଶ୍ଚର୍ଯ୍ୟ ହେଲେ । ହସିଲେ । ପୁଣି ବ୍ୟସ୍ତ ହେଲେ । ସେମାନେ ପୁଣି ନିଜ ସ୍ୱାର୍ଥ ତ ଦେଖୁଛନ୍ତି ।

ଶେଷରେ ଦିନେ ଫଏସଲା ହେଲା ଯେ, କଚେରୀରେ ଆଉ କିଛି ଫଏସଲା ହେବାର ନାହିଁ । ନିଜେ ଫଏସଲା କରିନେଲେ । ବିଚାରପତି ପଚାରିଲେ ''କଣ ହେଲା'' ? ପକ୍ଷମାନେ ଉତ୍ତର ଦେଲେ



Digitized by srujanika@gmail.com

''ଆଜ୍ଞା ଆମେ ନିଜ ନିଜର ଓକିଲଙ୍କ ଠାରୁ ଡେରିରେ ହେଉପଛେ ଶିଖିଲୁ ଯେ, ଲଢ଼େଇ କରି ଲାଭ ନାହିଁ ।''
ଜଜ୍ ପଚାରିଲେ 'କେମିତି ?'
''ଆଜ୍ଞା କେଶ ଲଢ଼ିଲା ବେଳକୁ ଆମେ ଦେଖିଲୁ ଯେ, ଆମ ଓକିଲମାନେ ପାଗଳା କୁକୁର ପରି ଲଢ଼ନ୍ତି । ଯେମିତି ସେ ଲଢ଼େଇ ସରିବ ସେମିତି ଉଭୟ ଓକିଲ ହସାହସି ହୋଇ ବାହାରକୁ ଆସନ୍ତି । ଏତେ ଡେରିରେ ଆମ ଆଖି ଖୋଲିଲା ।

(ତା୧୪.୦୫.୧୯୮୫ରିଖ)

❑❑❑

# ଅସୁବିଧାରୁ ସୁବିଧା ହାସଲ

ବାଲେଶ୍ୱର ଠାରୁ ଚାନ୍ଦିପୁର ସମୁଦ୍ରକୂଳ ୧୬ କିଲୋମିଟର ଦୂର । ପର୍ଯ୍ୟଟକମାନଙ୍କ ପାଇଁ ଉପଭୋଗ୍ୟ ସ୍ଥଳ । ଏବେ ମୁଁ ଚାରିଦିନ ପାଇଁ ସପରିବାର ସେଠାକୁ ଯାଇଥିଲି । ଦୁଇଦିନ ପାଇଁ ବନ ବିଭାଗର ବଙ୍ଗଳା 'କାଜୁରିନା ହାଉସ'ରେ ରହିବାର ସୁଯୋଗ ବା ଦୁର୍ଯୋଗ ଘଟିଥିଲା । ଜୀବନଟା ସାରା ଅସୁବିଧା ଓ ସଂଘର୍ଷ ଭିତର ଦେଇ ଆମେ ଯାଇଛୁ । ସେଥିପାଇଁ ଅସୁବିଧାକୁ ସୁବିଧାରେ ପରିଣତ କରିବାର ଅଭ୍ୟାସ ଆମର ଅଛି ।

ଯେଉଁଦିନ ସଂଧ୍ୟାରେ ପହଞ୍ଚିଲୁ ସେ ଦିନସାରା ବର୍ଷା ହେଉଥିଲା । ତହିଁ ଆରଦିନ ସକାଳୁ ଉଠିଲା ବେଳକୁ ଖୁବ୍ ଜୋରରେ ବର୍ଷା ହେଉଥିଲା । କାଜୁରିନା ହାଉସରେ ପାଣିର କିଛି ବ୍ୟବସ୍ଥା ନାହିଁ ଯଦିଓ ପାଇପ ଲାଗିଛି । ଆମ ପାଖ ଘରେ ଜଣେ ଆଇ.ଏ.ଏସ. ଅଫିସର ଥିଲେ । ତାଙ୍କ ପାଇଁ କେହି କହି ଦେଇଥିବାରୁ ନିକଟରେ ଓଡ଼ିଶା ପର୍ଯ୍ୟଟନ କର୍ପୋରେସନ ପରିଚାଳିତ ପାନ୍ଥନିବାସରୁ ଦୟାକରି ପମ୍ପ ଡ୍ରାଇଭର କିଛି ସମୟ ପାଇଁ ପୂର୍ବଦିନ ପାଣି ଦେଇଥିଲା ।

ସକାଳେ ପାଇଖାନା ଯିବା ପାଇଁ, ଗାଧୋଇବା ପାଇଁ ଓ ପିଇବା ପାଇଁ ପାଣି ନଥିଲା । ପାଣି ଦେବାକୁ ଚଉକିଦାର ଆଗ୍ରହୀ ନୁହେଁ । ଚଉକିଦାର କହିଲା ଯେ ୱାଚମ୍ୟାନ ବା ମାଳି କିଏ କୂଅରୁ ପାଣି ଆଣିଦେବ । ସେ ବା କାହିଁକି ପରୱା କରନ୍ତା । ସେ ପାଣି ଦେବାକୁ ଆସିଲାନି ।

ବିନା ପାଇଖାନା ଯିବା, ବିନା ଦାନ୍ତ ଘଷିବା ଏବଂ ବିନା ଗାଧୁଆରେ ଚଳିଯିବା ସେତେ ସହଜ ନୁହେଁ । ମୋ ସ୍ତ୍ରୀଙ୍କୁ ବୁଦ୍ଧି ଜୁଟିଲା । ସେ ବର୍ଷାପାଣି ଧରିବାକୁ ଗାଧୁଆ ଘରର ପ୍ଲାଷ୍ଟିକ କୁଣ୍ଡ ଓ ବାଲ୍‌ଟି ବାହାରେ ରଖିଦେଲେ । କିନ୍ତୁ ଖୋଲାବର୍ଷାରେ କେତେ ପାଣି ଧରିହେବ ? ମୁଁ ଦେଖିଲି ବନ ବଙ୍ଗଳାର ଆଜବେଷ୍ଟସ ଛାତରୁ ଗୋଟାଏ କଣରେ ଓଳିତଳେ ବେଶ୍ ଜୋରରେ ପାଣି ପଡୁଛି । ସେଇଠି ନେଇ କୁଣ୍ଡ ଥୋଇଲୁ । ପ୍ରାୟ ଘଣ୍ଟାଏ ଭିତରେ ଆମେ ପରିବାରର ପାଞ୍ଚଜଣ ଆମର ସମସ୍ତ ନିତ୍ୟକର୍ମ ସାରି ସାଙ୍ଗରେ ନେଇଥିବା ପାଉଁରୁଟି ଓ ବାରମଜା ଖାଇ ସେହି ଓଳିପାଣି ପିଇକରି ଚଉକିଦାର ପାଇଁ ଅପେକ୍ଷା କଲୁ । ଚଉକିଦାର ଦିନ ବାରଟା ବେଳକୁ ଫେରିଲା । ଆମେ ହଇରାଣ ହୋଇଥିବା ପାଇଁ ତା' ମନରେ ଗ୍ଳାନି ଦେଖିଲୁନି ।

ବର୍ଷା ଯୋଗୁ ଆମେ ହଇରାଣ ଅବସ୍ଥାକୁ ଏପରି ସୁବିଧାରେ ନିଜ ସପକ୍ଷରେ ବ୍ୟବହାର କରିଥିଲୁ ଯେ ଆମ ମନରେ ମଧ୍ୟ ଗ୍ଳାନି ନଥିଲା ।

(ତା୨୬.୧୦.୧୯୮୦ରିଖ)

❑❑❑



Digitized by srujanika@gmail.com

# ଧର୍ମର ଜୟ

ସେ ଏବେ ମରିଗଲେଣି । କିନ୍ତୁ ସେ ଅଞ୍ଚଳର ବୁଢ଼ା ଅଧ ବୁଢ଼ା ଲୋକେ ତାଙ୍କୁ ମନେ ରଖିଛନ୍ତି । ବିଶେଷକରି କାର୍ତ୍ତିକ ମାର୍ଗଶିର ମାସରେ ତିରୋଟ ବେଳରେ ଯେଉଁ ଚାଷୀମାନେ ପେଟ ବିକଳରେ ଧାନ ଦେଢ଼ି ଆଣନ୍ତି ସେମାନଙ୍କ ମନରେ ତାଙ୍କର ସ୍ମୃତି ଜଳ ଜଳ ହୋଇ ରହିଛି ।

ତାଙ୍କ ନାଁ ପଡ଼ିଲେ ଲୋକେ ଦି'ଥର ଛେପ ଢୋକି ନେଉଥିଲେ । ଆଗେ ଓଡ଼ିଶାରେ ଯେଉଁମାନେ ବଡ଼ ଜମିଦାର ଥିଲେ ସେମାନଙ୍କ ମଧ୍ୟରୁ ଅନେକ ଥିଲେ ବଙ୍ଗାଳୀ ଓ ମୁସଲମାନ । ସୂର୍ଯ୍ୟାସ୍ତ ଆଇନ ଯୋଗୁଁ ଜମିଦାରୀ ସବୁ କଲିକତାରେ ନିଲାମ ହୋଇ ଯାଉଥିଲା, କାରଣ କଲିକତା ଆମର ରାଜଧାନୀ ଥିଲା । ସେହି ନ୍ୟାୟରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର ମଧ୍ୟ କୁଜଙ୍ଗ ଆଦି ଅଞ୍ଚଳରେ ବଡ଼ ଜମିଦାରି ସବୁ ଥିଲା । ଶେଖ୍ ସାହେବଙ୍କ ଜମିଦାରି ମଧ୍ୟ ବଡ଼ ଥିଲା, ଯଦିଓ ତାଙ୍କର ଚାରିପୁରୁଷ ତଳେ କିଏ ସେ ଜମିଦାରି କିଣିଥିଲେ ।

ଶେଖ୍ ସାହେବ ଧାନ ଦେଢ଼ି ଦେଉନଥିଲେ । ନୈଷ୍ଠିକ ମୁସଲମାନ ହିସାବରେ ସୁଧ ଖାଇଲେ ପାପ ହେବ କାରଣ ଶେଖ୍ ସାହେବ ମକ୍କା ଯିବେ ହଜ୍ କରିବାକୁ । ଏହି ବିଶ୍ୱାସରେ ସେ ଅଟଳ ଥିଲେ । ଲୋକେ ଯେତେବେଳେ ଓପାସ ରହି ତାଙ୍କ ପାଖରେ ହାତ ପାତୁଥିଲେ, ଶେଖ୍ ସାହେବ ମନା କରୁଥିଲେ ଯେ ଧାନ ଦେଢ଼ି ଦେଇ ସେ ପାରିବେନି କାରଣ ହଜ୍ କରିବା ଲୋକ ସୁଧ ଖାଇବନି । ଲୋକେ ନିହାତି ନ୍ୟୂନ ହୋଇ ଭୂଇଁରେ ଲମ୍ୱ ହୋଇ ପଡ଼ି ଯାଉଥିଲେ । ଏଥିରେ ଦୟା ପରବଶ ହୋଇ ବାଧ୍ୟରେ ଶେଖ୍ ସାହେବ ଅମାରରୁ ଧାନ ଦେଉଥିଲେ ବିନା ସୁଧରେ । ତାଗିଦା ଥିଲା ଯେ ଧାନ ଅମଳ ହେବା ମାତ୍ରେ ଯେପରି ଅସଲ ଧାନ ଓ୍ୱାପସ ଆସେ ।

ସେ ଧାନ ବିନା ସୁଧରେ ଯେଉଁମାନେ ଆଣୁଥିଲେ ସେମାନଙ୍କ ଭିତରୁ ଏବେ ମଧ୍ୟ ଅନେକ ଜୀବିତ ଅଛନ୍ତି । ଶେଖ୍ ସାହେବ ଅବଶ୍ୟ ସଂସାର ଛାଡ଼ି କୋଉ ଦିନରୁ ଗଲେଣି ଉପରକୁ । ମଲା ପୂର୍ବରୁ ସେ ହଜ୍ ଯାଇପାରିଲେନି ବୋଲି ଲୋକେ କୁହନ୍ତି ।

ସେ ଧାନ ଆଣୁଥିବା ଲୋକେ କହନ୍ତି ଯେ ସେଥିରେ ଧୂଳି, ଅଗାଡ଼ି ମାଟି ଆଉ ଗୋଡ଼ି ତୁଷ ପାଖାପାଖି ଅଧା ଥିଲା । ଧାନ ଅମଳ ବେଳେ ଶେଖ୍ ସାହେବ ଧାନ ନ ଝାଡ଼ି ନ ପାଛୁଡ଼ି ଅମାରରେ ପକାଇ ଦେଇଥିଲେ ଲୋକଙ୍କ ଦୁଃଖ ବେଳେ ବିନା ସୁଧରେ ଉଧାର ଦେବାକୁ । ଯେଉଁ ଗୌଣିରେ ଧାନ ମାପି କରି ଉଧାର ଦିଆଯାଉଥିଲା ସେ ଗୌଣି ମାପରେ ଟିକେ ଛୋଟ ଥିଲା ।

ଯେତେବେଳେ ଲୋକେ ଧାନ ଓ୍ୱାପସ ଦେଉଥିଲେ ଧାନକୁ ପୂରାପୂରି ସଫା କରିଦେବାକୁ ପଡୁଥିଲା । ଫେରନ୍ତ ଗୌଣି ମାପରେ ଟିକେ ବଡ଼ ଥିଲା । ଧାନରେ ତୁଷ, ଅଗାଡ଼ି, ଗୋଡ଼ି ଓ ଧୂଳି ରହିବାର ପ୍ରଶ୍ନ ନଥିଲା । ଲୋକେ ଜାଣୁଥିଲେ ଏବାଟେ ଦେଢ଼ିର ସୁଧ ଗୌଣିକରେ ପାଏ ବଦଳରେ ସେମାନଙ୍କୁ ଅଧଗୌଣିରୁ ବେଶି ଦେବାକୁ ପଡୁଥିଲା । କିନ୍ତୁ ଶେଖ୍ ସାହେବଙ୍କର ଧର୍ମବିଶ୍ୱାସ ମଧ୍ୟ ଅତୁଟ ରହିଥିଲା ଯେ ହଜ୍ ଯାତ୍ରୀ ଭାବରେ ସେ ସୁଧ ଖାଉନଥିଲେ । ତାଙ୍କ ପାଇଁ ଧର୍ମର ଜୟ ହେଉଥିଲା ।

(ତା୨୩.୦୧.୧୯୮୫ରିଖ)





Digitized by srujanika@gmail.com

# ଘୁସ୍‌କୁ ଡରି ଠାକୁର ଘରେ

ଏ ଯୁଗରେ ନୀତି ଓ ନୈତିକତା କଥା ଯିଏ କହୁଛି ଶୁଣିଲାବାଲା ତା'କୁ ଥଟ୍ଟା କରୁଛନ୍ତି । 'ଅନେଷ୍ଟି ଇଜ୍ ଲ୍ୟାକ୍ ଅଫ୍ ଅପର୍ଚୁନିଟି' କଥାଟି ଅଧିକାଂଶ ଉଦ୍ଧାର କରୁଛନ୍ତି । ତେଣୁ ଯେଉଁଠି ସୁବିଧା ଅଛି ସେଠି ଲୋକେ ଉପୁରି ଦି'ପଇସା ନିଶ୍ଚୟ କରୁଛନ୍ତି । ଯେଉଁଠି ସୁବିଧା ନାହିଁ ପଇସା କରିବାକୁ ସେଠାରେ ବି ପାରିବା ଲୋକ କଲମ ବୁଲେଇ ହେଉ କିମ୍ବା ଫାଇଲ ହଜେଇ ଦେଇ ହେଉ କିମ୍ବା ଲୋକଙ୍କୁ ଆଜିକାଲି କରି ଦଶଥର ଦଉଡ଼େଇ ଦେଇ ଲାଞ୍ଚ ଦେବାର ବାଧତା ସୃଷ୍ଟି କରୁଛନ୍ତି । ତେଣୁ ଏବେ ଏପରି କୌଣସି ସରକାରୀ ଚାକିରି ନାହିଁ ଯେଉଁଠି ବିନା ପଇସାରେ କାମ ହେଉଛି ।

ଏପରି ପରିସ୍ଥିତିରେ ଯେଉଁଠି ପଇସାର ସୁଅ ଛୁଟିଛି ସେଠି ପୁଣି ସଚ୍ଚୋଟ ଅଫିସର ଅଛନ୍ତି, ଏ କଥା କିଏ ବିଶ୍ୱାସ କରିବ । ଦିନେ ଜଣେ ବନ୍ଧୁଙ୍କ ଘରେ ବସିଥିଲି ସନ୍ଧ୍ୟା ବେଳେ । ବନ୍ଧୁଙ୍କର ଜଣେ ବନ୍ଧୁ ଆସି ପହଞ୍ଚିଲେ । ପରିଚୟ ହେଲା ।

କଥାବାର୍ତ୍ତାରୁ ଜଣାପଡ଼ିଲା ଯେ ନୂତନ ବନ୍ଧୁ ଜଣକ ଗୋଟିଏ ବଡ଼ ସରକାରୀ ୱାର୍କସପ୍‌ର ଫୋରମ୍ୟାନ୍ । ମେକାନିକାଲ ଇଞ୍ଜିନିଅରିଂ ପାଶ୍ ପରେ ବିଭିନ୍ନ ଚାକିରି ପରେ ଏବେ ଏହି ପଦବୀରେ ଅବସ୍ଥାପିତ ହୋଇଛନ୍ତି । ସେ ୱାର୍କସପ୍‌ରେ ବହୁତ ସ୍ପେୟାର ପାର୍ଟସ୍ ଓ ଅନ୍ୟାନ୍ୟ ସରଞ୍ଜାମ କିଣାଯାଏ । କେତେ ପାର୍ଟସ୍ ଆସେ ଓ କେତେ ଖର୍ଚ୍ଚ ହୁଏ ତାର ହିସାବ ନାହିଁ । ମିଛ ସପ୍ଲାଇ, ମିଛ ଖର୍ଚ୍ଚ କିମ୍ବା କୌଣସି ଜିନିଷ ଦଶଟା ଦେଇ ତିରିଶଟାର ବିଲ୍ କରିବାର ବ୍ୟବସ୍ଥା ସବୁ ସେଠାରେ ଚାଲେ । ଏ ଭଦ୍ରଲୋକ ସେ ସବୁ ହେରଫେର କାରବାରରେ ପଶିବାକୁ ରାଜି ନୁହନ୍ତି । କାରଣ ସେ ରିସ୍‌ପତ୍ ଖାଆନ୍ତି ନାହିଁ ।

ଉପରେ ଡାଇରେକ୍ଟର ଅଛନ୍ତି ସପ୍ଲାଇ ଅର୍ଡ଼ର ଦେବାକୁ । ତାଙ୍କଠାରୁ ଅର୍ଡ଼ର ନେଇ ଯେଉଁ ସପ୍ଲାୟର ଭଲ ଜିନିଷ ଦେଲା ତାହା ସିଏ ରଖିବେ । ଖରାପ ଜିନିଷ ଦେଲେ ରିଜେକ୍ଟ କରିଦେବେ । ସପ୍ଲାୟରମାନେ ବର୍ଷେ ହେଲା ଲାଗିଛନ୍ତି ଫୋରମ୍ୟାନ୍‌ଙ୍କୁ କିପରି ପଇସା ଦେବେ । ବାଟ ପାଉନାହାନ୍ତି । ଘରକୁ ଏତେ ସଂଖ୍ୟାରେ ଆସିଲେ ଯେ, ଫୋରମ୍ୟାନ୍ ଶେଷରେ ମିଛରେ କହିଲେ ସେ ପୂଜାରେ ବସିଛନ୍ତି । ସକାଳେ ୭ଟାରୁ ୧୦ଟା ଯାଏ ପୂଜାରେ ବସନ୍ତି । ତା ପରେ ଅଫିସ ଚାଲିଯାଆନ୍ତି । ପୁଣି ଅଫିସ୍‌ରୁ ଫେରି ରାତି ୧୦ଟା ଯାଏ ପୂଜାରେ ବସିଯାଆନ୍ତି ।

ଭଦ୍ରଲୋକ ପ୍ରକୃତରେ ଏତେ ଈଶ୍ୱରଭକ୍ତ ନୁହଁନ୍ତି । ପିଲାଙ୍କ ହାତରେ ଘରୁ କହିପଠାନ୍ତି 'ବାପା ପୂଜାରେ ବସିଛନ୍ତି ।' ତେଣୁ ଡ୍ରଇଂ ରୁମ୍‌କୁ ଆସିବା ତାଙ୍କ ପାଇଁ ସମ୍ଭବ ନୁହେଁ । ଶୋଇବା ଘରେ ସବୁ ସମୟ କଟେ ।

ସେଦିନ ସେ ବିରକ୍ତ ହୋଇ ଅଫିସ୍‌ରୁ ତାଙ୍କ ବନ୍ଧୁଙ୍କ ଘରକୁ ଆସିଛନ୍ତି । ରାତି ଦଶଟାଯାଏ ସେଠାରେ କଟାଇ ଘରକୁ ଫେରିବେ । କେତେ ଠାକୁରଙ୍କ ନାଁରେ ମିଛ କହିବେ ରିସ୍‌ପତ୍‌ଖୋରଙ୍କୁ ଏଡ଼େଇବା ପାଇଁ ।

ଡାଇରେକ୍ଟରଙ୍କ ଚାପ ଯେ ସେ ନିମ୍ନମାନର ସରଞ୍ଜାମକୁ ଉଚ୍ଚମାନର ଜିନିଷ ବୋଲି ମଞ୍ଜୁର କରନ୍ତୁ । ଅଳ୍ପ ଜିନିଷ ପାଇ ବେଶି ଜିନିଷ ପାଇଲେ ବୋଲି ଲେଖିନିଅନ୍ତୁ । ଫୋରମ୍ୟାନ୍‌ଙ୍କ ଅଧୀନରେ ଯେଉଁମାନେ ଅଛନ୍ତି ସେମାନେ ମଧ୍ୟ ସେଇଆ ଚାହାଁନ୍ତି । ନଚେତ୍ ହାତ ଚିକ୍କଣ ହେବ କେମିତି ?

ମଝିରେ ଫୋରମ୍ୟାନ୍‌ଙ୍କୁ ଏ ସବୁ ଏଡ଼େଇବା ପାଇଁ ଠାକୁରଘରେ ଏତେସମୟ କାଟିବାକୁ



Digitized by srujanika@gmail.com

ପଡୁଛି । ଅଫିସ୍‌ରେ ସେ ସବୁବେଳେ ଲୋକଙ୍କ ଗହଣରେ ରହନ୍ତି, ଯୋଉଥିପାଇଁ କେହି ତାଙ୍କୁ ଘରେ ଯାଚିପାରିବେ ନାହିଁ ।

ବିଶ୍ୱାସ କରି ହେଉଛି ଯେ ଏପରିଲୋକ ବି ଏବେ ଏ ମର୍ତ୍ତ୍ୟରେ ଅଛନ୍ତି ?

(ତା୧୨.୦୧.୧୯୮୫ରିଖ)



# ଆମ ଡାଇନିଂ ଟେବଲ

ଆମର ଡ୍ରଇଂ ରୁମ୍ ନାହିଁ କି ଡାଇନିଂ ଟେବଲ ନଥିଲା । ଦୁଇ ବଖରା ଘର ହେଲେ ଯାଇ ଗୋଟିଏ ବଖରା ପାଶ୍ଚାତ୍ୟ ଢାଞ୍ଚାରେ ଡ୍ରଇଂରୁମ୍ ସଜାଇ ହେବ ଏବଂ ଅନ୍ୟ ବଖରାରେ ଡାଇନିଂ ଟେବଲ ପକାଇହେବ । ଆମର ଛ' ଜଣ ପରିବାର ପାଇଁ ତ ଦୁଇବଖରା ଘର ରହିବା ପାଇଁ ନାହିଁ । ତେଣୁ ଡ୍ରଇଂ ଓ ଡାଇନିଂ କୁଆଡୁ ଆସିବ ।

ବେଳେବେଳେ ଆମ ପିଲାମାନେ କଥାବାର୍ତ୍ତା ହୁଅନ୍ତି ଯେ ଆମେ ଟେବଲରେ ବସି କେବେ ଖାଇବା । ଟେବଲରେ ଖାଇବା ଯେ ଭାରତୀୟମାନଙ୍କ ପାଇଁ ଖୁବ୍ ସୁବିଧାଜନକ ତାହା ନୁହେଁ । କିନ୍ତୁ ପାଶ୍ଚାତ୍ୟ ଅନୁକରଣରେ ତ ଆମେ ବହୁତ ଅସୁବିଧା କଥାକୁ ନିଜରଠୁ ବଳି କରିସାରିଲେଣି ।

ମୁଁ ଦିନେ ଜଣେ ବନ୍ଧୁଙ୍କ ବଡ଼ ଭାଇଙ୍କ ଘରକୁ ଯାଇଥିଲି । ସେଠାରେ କଥା ପଡୁ ପଡୁ ଜଣାପଡ଼ିଲା ଯେ, ଭଦ୍ରଲୋକଙ୍କ ଘରେ କିଏ ଜଣେ ସାହେବ ଲୋକ ଭଡ଼ା ଥିଲେ । ଭଡ଼ା ବାକି ରଖି ଦେଇ ଚାଲିଗଲେ । ସେ ଘରେ କେବଳ ଆଠଟା ପୁରୁଣା ଖତରା ଚଉକୀ ଓ ଗୋଟାଏ ଭଙ୍ଗା ଡାଇନିଂ ଟେବଲ ସାହେବ ଛାଡ଼ି ଯାଇଥିଲେ । ''ଘରପୋଡ଼ିରୁ କୁଟା ଖିଏ ପରି'' ସେଗୁଡ଼ିକୁ ଗୋଟାଇ ଆଣି ଘର ମାଲିକ ନିଜ ଅଗଣାରେ ପକାଇ ଦେଇଛନ୍ତି । ତାଙ୍କର ଡାଇନିଂ ଟେବଲ ଅଛି । ତେଣୁ ଏ ତିନିଗୋଡ଼ିଆ ପୁରୁଣା ଟେବଲଟାକୁ ସେ କ'ଣ କରିବେ ?

ସାହେବମାନେ ଘରଭଡ଼ା ବୁଝି ନକରି ପଳାଇ ଯାଆନ୍ତି ମୁଁ ଶୁଣି ନଥିଲେ ବି ବେଶୀ ଆଶ୍ଚର୍ଯ୍ୟ ଲାଗିଲା ସେ ମଇଳା, ଭଙ୍ଗା ତିନିଗୋଡ଼ିଆ ଟେବଲଟାକୁ ଦେଖି । ଏ ଟେବଲରେ ଯେଉଁ ସାହେବ ବସି ଖାଉଥିଲେ ସେ ସାହେବ ଘରଭଡ଼ା ଫାଙ୍କିବା ଲୋକ ନିଶ୍ଚୟ ହୋଇଥିବେ ।

''ଏ ଟେବଲଟା କ'ଣ ହେ'' ପଚାରିଲାରୁ ଉତ୍ତର ମିଳିଲା- ''ଯଦି କିଏ କିଣି ନିଅନ୍ତି, କିଛି ପଇସା ମିଳିଯାଆନ୍ତା ।''

ଦର ଛିଡ଼ିଲା ଶହେ ଟଙ୍କା । ମୁଁ ସେଇଟାକୁ ଉଠାଇ କରି ଆଣିଲା ବେଳକୁ ଘରଣୀ ଓ ପିଲାମାନେ ହସିଲେ । ଥଟ୍ଟା କଲେ । ଡାଇନିଂ ଟେବଲ ନଥିଲା ନାହିଁ । ଏଇଟାରେ ବସି କିଏ ଖାଇବ ।

ଟେବଲଟି ମୁଁ ଚାରିମାସ ପୁଣି ଖରା କାକରରେ ଆମ ଦୁଆରେ ପକାଇଲି । ଦିନେ ଜଣେ ବଢ଼େଇକୁ ଡାକି ତା'ର ଚତୁର୍ଥ ଗୋଡ଼ଟି ଯୋଡ଼ି ଆମ ରୋଷେଇ ଘର ବାରଣ୍ଡାରେ ପକାଇଦେଲି । ତା' ଉପରେ ପୁଣି ଗୋଟାଏ ରେକ୍ସିନ ଚାଦର ପଡ଼ିଲା । ଏବେ ଆମର ସମସ୍ତେ ବସି ଡାଇନିଂ ଟେବଲରେ ଖାଉଛୁ । ଡାଇନିଂ ଟେବଲ ନିଜର ହୋଇଗଲାଣି ।

(ତା୨୯.୧୦.୧୯୮୦ରିଖ)





Digitized by srujanika@gmail.com

# ସାବିତ୍ରୀ ଉପରେ ବାଡୁଅ ପାଣି ପଡ଼ିବ କେବେ ?

ଏମିତି ବି ହୁଏ । ସତକଥା ବିଶ୍ୱାସ କରନ୍ତୁ ବା ନକରନ୍ତୁ । କଥାଟା ଏଇଆ:

ଗାଁର ଝିଅଟି । ନାଁଟି ସାବିତ୍ରୀ ଦେଲେ କ୍ଷତି ନାହିଁ । ଦି' ତିନିଥର ଫେଲ୍ ହୋଇ ସପ୍ଲିମେଣ୍ଟାରୀ ପରୀକ୍ଷାରେ କପି ଯୋଗାଇଲା ପରେ କୌଣସିମତେ ମାଟ୍ରିକ୍ ପାସ୍ କଲା । ପାଖ ଗାଁରେ କଲେଜ ଖୋଲିଥିଲା । ସେଥିରେ ଯାଇ ଚାରି ଛ' ମାସ ବସୁଥିଲା । ପାଠ ହେଲା ନାହିଁ । ଘରେ ବସିଲା ବାଧ ହୋଇ । ଏମିତି କେତେବର୍ଷ କଟିଗଲା । ବୟସ ହେଲା । ବା'ଘର ବୟସ ଗଡ଼ି ଚାଲିଲା । ପାଠ ପଢୁଥିଲେ ଝିଅଙ୍କ ବୟସ ଏବେ ବେଶି ଧରାଯାଉନି । କିନ୍ତୁ ସାବିତ୍ରୀ ଖାଲି ଘରେ ବସିଛି ।

ବା'ଘର ନ ହେବାର କାରଣ ହେଲା ବର୍ଣ୍ଣଟି ନିରସ । ଶ୍ୟାମଳ ଠାରୁ ଆଉ ଟିକେ ନିରସ ଅର୍ଥାତ୍ ଚାଖିଲାବାଲାକୁ କଳା ଦେଖାଯିବ । ମୁହଁର ଗଠନ ସେପରି ଭଲ ନୁହେଁ । ଶିକ୍ଷା କମ୍ । ପ୍ରାଇମେରୀ ସ୍କୁଲ ମାଷ୍ଟ୍ରାଣୀ, ମିଡ୍‌ୱାଇଫ୍, ନର୍ସ କି ଆଉ କିଛି ଛୋଟିଆ ମୋଟିଆ ଚାକିରିଟିଏ କରିଥିଲେ ବା କିଏ ସେଇ ଆଶାରେ ବା' ହୁଅନ୍ତା । ଆଜିକାଲିର ଯୌତୁକ ବଜାରରେ ଚଳିଆ କିରାଣୀ ବି ମଟର ସାଇକେଲ, ଟି.ଭି., ଟୁ-ଇନ୍-ୱାନ୍, ଦଶ ଭରି ଗହଣା ଓ ଆଉ କେତେ କଣ ସାଙ୍ଗକୁ ବାଟଖର୍ଚ୍ଚ ପାଞ୍ଚ ଦଶ ହଜାର ମାଗିଲେଣି । ସେଥିପାଇଁ ସାଣ୍ଟୁ କାହିଁ ?

ଝିଅକୁ ଚବିଶ ପୂରି ପଚିଶ ଚାଲିଲାଣି । ବାପଠାରୁ ମା'ର ଚିନ୍ତା ବେଶି । ଗାଁଠାରୁ ନ' କିଲୋମିଟର ଦୂର ଅଙ୍ଗେଇସପଡ଼ା ମଣି ଅବଧାନଙ୍କ ପାଖକୁ ଗଲେ 'ସାବିତ୍ରୀର ମା' । ମଣି ଅବଧାନ ଓରଫ ଶ୍ରୀ ମଣିମାଧବ ଦାସ, ଜ୍ୟୋତିଷାଚାର୍ଯ୍ୟ କୋଡ଼ିଏଟି ଟଙ୍କା ନେଇ କହିଲେ 'ଝିଅର ବା'ଘର ତମ ଘରର ଉତ୍ତର ପଶ୍ଚିମ କୋଣରେ ଚାରିମାଇଲ୍ ଦୂର ପାତ୍ରପଡ଼ା ଗାଁର ହରିହର ବିଶୋଇଙ୍କ ପୁଅ ଭରତ କୁମାରଙ୍କ ସହ ହେବ । ପିଲାଟି କଟକରେ ବ୍ୟାଙ୍କ ଚାକିରି ପାଇଛି । ତମେ ମଧ୍ୟସ୍ଥ ଖୋଜିବା ଦରକାର ନାହିଁ । ସିଧା ତିଥିବାର ଠିକ୍ କରି ନିମନ୍ତ୍ରଣ ପତ୍ର ଛପେଇ ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରିଦିଅ । ତା'ପରେ ଖବର ପଠେଇବ ହରି ବିଶୋଇଙ୍କ ଘରକୁ । ମନାକଲେ ପାଞ୍ଚଖଣ୍ଡ ଗାଁର ଭଦ୍ରଲୋକ ଡକେଇ ନ୍ୟାୟ ନିଶାପ କରିବ ଯେ ଯୌତୁକ ଟଙ୍କା ଆଗତୁରା ମାଗୁଛନ୍ତି । ନ ଦେଲାରୁ ବା'ଘର ଭାଙ୍ଗୁଛନ୍ତି । ଜବର କରି ଏ କଥାଟାକୁ ଧରିବ । ବା'ଘର ସେଇଠି ନିଶ୍ଚେ ହବ ।' ଏତିକି ପରାମର୍ଶ ଦେଲେ ଜ୍ୟୋତିଷାଚାର୍ଯ୍ୟ ସାବିତ୍ରୀର ମା'କୁ ।

ଜ୍ୟୋତିଷଙ୍କ ବାଣୀ ବେଦଜ୍ଞାନ କରି ସାବିତ୍ରୀର ବାପା ଦୈତାରୀ ଦାସ ମାର୍ଗଶୀର ୨୨ ଦିନକୁ ବିବାହ ସ୍ଥିର କରି ନିମନ୍ତ୍ରଣ ପତ୍ର ଛପାଇ ବାଣ୍ଟିଦେଲେ । ନିମନ୍ତ୍ରଣ ପତ୍ରରୁ ଖଣ୍ଡିଏ ଦେଇ ଜଗୁ ଭଣ୍ଡାରୀ ହାତରେ ସ୍ୱୀକାରପତ୍ର ପଠାଇଲେ ପାତ୍ରପଡ଼ା ଗାଁ ହରିହର ବିଶୋଇଙ୍କ ଘରକୁ । ହରି ବିଶୋଇ ସ୍ୱୀକାରପତ୍ର ପାଇ ତାଟଙ୍ଗା । ଗାଁ ଲୋକେ ଆବାକାବା । ଗାଳିଗୁଲଜ କରି ଜଗୁଆକୁ ଫେରାଇଦେଲେ ।

ଜଗୁଆ ଆସି ଖବର ଦେଲା । ହରି ବିଶୋଇ କହିଲେ ଯେ, 'ତାଙ୍କର ତ ତମ ଘରେ ବା'ଘର କଥା ମୋଟେ ପଡ଼ିନାହିଁ । ତମେ ନିମନ୍ତ୍ରଣ ପତ୍ର କେମିତି ଛାପି ସ୍ୱୀକାର ପଠେଇଲ ? ମତେ ତ ମାରଧର କରିଥାନ୍ତେ । ଗାଁ ଲୋକ ବୁଝେଇବାରୁ ମୁଁ ଛାଡ଼ ପାଇଆସିଲି ।'



Digitized by srujanika@gmail.com

ସାବିତ୍ରୀର ମା' କହିଲେ 'ତମେ ଏସବୁ କଥାରେ ଦବି ଯାଅନି । ଜ୍ୟୋତିଷ କହିଛି ସେଇଠି ବା'ଘର ହବ । ନ୍ୟା-ନିଶାପ କରାଅ ।'

ଗୁଣନିଧି ଆଇ.ଏ. ଫେଲ୍ ହୋଇ ଗାଁରେ ରାଜନୀତି କରୁଛି । ଗତ ପଞ୍ଚାୟତ ଭୋଟରେ ଗୋରୁ ମୁଣ୍ଡ ଚିହ୍ନରେ ଠିଆ ହୋଇ ସରପଞ୍ଚ ପାଇଁ ହାରିଛି । ସେ ପରାମର୍ଶ ଦେଲା 'ନ୍ୟାୟ ନିଶାପକୁ ସେ ପାତ୍ରପଦ୍ରା ଲୋକେ ନ ଆସିଲେ ତମେ କ'ଣ କରିବ ? ତମେ ଏ ନିମନ୍ତ୍ରଣ ପତ୍ରକୁ ନେଇକରି ଥାନାରେ ଗୋଟାଏ ଏତଲା ଦେଇଦିଅ ଯେ ହରି ବିଶୋଇ ଯୌତୁକ ଦାବି କରି ତମ ସହିତ ବା'ଘର ଭାଙ୍ଗି ଦଉଛି । ଯୌତୁକ ଦାବି ବିରୁଦ୍ଧରେ ଗୋଟାଏ କଡ଼ା ଆଇନ ଅଛି । ଦାରୋଗାକୁ କହି ମୁଁ ହରି ବିଶୋଇକୁ ଥାନାକୁ ତଲବ କରିଦେଲେ ସେ ମୋଡ଼ିମାଡ଼ି ହୋଇ ରାଜି ହେବ । ଯିବ କୁଆଡ଼େ ? ଥାନାବାବୁ ଟଙ୍କା ଦି'ଶହ ନବ । ନଉ, ଆମ କାମ ତ ହୋଇଯିବ ।'

ସେଇଆ ହେଲା । ଏହା ଭିତରେ ଥାନାବାବୁ ସାବିତ୍ରୀର ବାପା ଦୈତାରୀ ଦାସ ଓ ଭରତର ବାପା ହରିହର ବିଶୋଇଙ୍କୁ ପାଞ୍ଚ ଛ'ଥର ଥାନାକୁ ଡକେଇଲେଣି । ପ୍ରତିଥର ଉଭୟ ପକ୍ଷ ଟଙ୍କା ପଇସା, ସରୁ ଚାଉଳ, ବିରି, ଘର ଘିଅ ଆଦି ନେଇ ଥାନାକୁ ଯାଉଥିବାର ଲକ୍ଷ୍ୟ କରାଯାଉଛି । ହରି ବିଶୋଇଙ୍କ ପକ୍ଷରେ ନବନିର୍ବାଚିତ ସରପଞ୍ଚ ଜଟାଧାରୀ ପ୍ରଧାନ ଅଛନ୍ତି । ସେ ଆଗେ ଯେଉଁ ଦଳରେ ଥିଲେ ସେ ଦଳ ଛାଡ଼ି ଶାସକ ଦଳରେ ।

ସାବିତ୍ରୀ ଉପରେ କିନ୍ତୁ ବାଡୁଅ ପାଣି କେବେ ପଡ଼ିବ କେଜାଣି ?

(ତା୪.୦୨.୧୯୮୫ରିଖ)





Digitized by srujanika@gmail.com

# ବିଧବାମାନଙ୍କ ପାଇଁ ଉଜ୍ଜ୍ୱଳ ସମ୍ଭାବନା

'ଦେଖାଶିଖା ଓଡ଼ିଶା' ବୋଲି କଥାଟାଏ ଅଛି । କାହିଁକି କିଏ ଏ କଥାଟା କହିଥିଲେ କେଜାଣି । କିନ୍ତୁ ବୋଧେ' କଥାଟାରେ କିଛି ସତ୍ୟତା ଅଛି ।

ବର୍ତ୍ତମାନ ବିଧାନସଭା ନିର୍ବାଚନରେ ସେ କଥା ପ୍ରକାଶିତ ହେଉଛି । ଆନ୍ଧ୍ରପ୍ରଦେଶରେ ଏନ୍.ଟି. ରାମାରାଓ ଗୋଟାଏ ଗାଡ଼ି ଉପରେ ଠିଆ ହୋଇ କିମ୍ବା ବସି ପ୍ରଚାର କରୁଥିଲେ । ଏବେ ଓଡ଼ିଶାର ଜଣେ ନେତା ମଧ ବେଳେ ବେଳେ ଗାଡ଼ି ଉପରେ ବସି ଯାଉଛନ୍ତି ନିର୍ବାଚନ ପ୍ରଚାର ବେଳେ । ଆନ୍ଧ୍ରରେ ରାମାରାଓ ଚାଉଳ କିଲୋ ଦୁଇ ଟଙ୍କାରେ ଦେଇଛନ୍ତି । ଏଠାକାର ମଧ ଜଣେ ନେତା କ୍ଷମତାକୁ ଆସିଲେ ଚାଉଳ କିଲୋ ଦୁଇ ଟଙ୍କା କରି ଦେବେ ବୋଲି ଲୋକଙ୍କୁ ଲୋଭ ଦେଖାଉଛନ୍ତି ।

ସବୁଠାରୁ ହାସ୍ୟାସ୍ପଦ କଥା ହୋଇଛି ବିଧବାମାନଙ୍କୁ ନେଇ । ହଠାତ୍ ଦିନେ ଜଣେ ନେତା ତାଙ୍କ ଦଳର ୨୧ ଦଫା କାର୍ଯ୍ୟକ୍ରମ ଘୋଷଣା କରି ସେଥିରେ ଏକ ନମ୍ବର ଦଫାରେ ରଖିଲେ 'ବିଧବାମାନଙ୍କୁ ପେନ୍‌ସନ୍ ଦିଆଯିବ ।' ସେହିଦିନ ଅଧରାତିରେ ମୁଖ୍ୟମନ୍ତ୍ରୀ ଘୋଷଣା କରିଦେଲେ ଯେ ରାଜ୍ୟ ସରକାର ରାଜ୍ୟର ଅସହାୟା ବିଧବାମାନଙ୍କୁ ପେନ୍‌ସନ୍ ଦେବେ । ଏହି ଘୋଷଣା ମୁଖ୍ୟମନ୍ତ୍ରୀଙ୍କର ଜଣେ ନିକଟ ସମ୍ପର୍କୀୟଙ୍କ ଦ୍ୱାରା ଛାପା ଯାଉଥିବା ଚକଚକିଆ ଦୈନିକ କାଗଜରେ ପ୍ରଧାନ ଓ ପ୍ରଥମ ଖବର ଭାବରେ ପ୍ରକାଶ ପାଇଲା । ପ୍ରତିଶ୍ରୁତି ଦେଇଥିବା ନେତାଙ୍କର ଚକରୁ ହାଓ୍ୱା ବାହାରିଗଲା । ଜଣେ କ୍ଷମତାକୁ ଆସିବା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ଆଉ ଜଣେ ହାତରେ କ୍ଷମତା ଧରି ବସିଛନ୍ତି । ରାଜ୍ୟର ତହବିଲ ତାଙ୍କ ହାତରେ । ସେ ଯାହା କରିପାରିବେ ବାହାରେ ବୁଲୁ ଥିବା ନେତା କେମିତି ପାରିବେ ତାଙ୍କୁ । କିନ୍ତୁ ତଥାପି ଆଶା ଅଛି ଗାଦୀକୁ ଆସିବାକୁ । କାରଣ ମୁଖ୍ୟମନ୍ତ୍ରୀ ଏ ପର୍ଯ୍ୟନ୍ତ ଚାଉଳ ଦି'ଟଙ୍କାରେ ଯୋଗେଇ ପାରିନାହାଁନ୍ତି । ଚାଷ ଅମଳ ବେଳ । ମୋଟା ଦୋଉଁଷା ଚାଉଳ ଏବେ ଦି'ଟଙ୍କା ଷାଠିଏ ପଇସାରେ ସେମିତି ମିଳିଯାଉଛି । ସେମିତି ଆଶାୟୀ ନେତା ଆଉ କେତେ ପ୍ରତିଶ୍ରୁତି ଦେଉଛନ୍ତି । ସେଇଟା ତାଙ୍କର ଅଭ୍ୟାସ । ଆଜିକୁ ପଚିଶ ବର୍ଷ ହେଲା ସେ ଲମ୍ବା-ଚଉଡ଼ା ଡେଙ୍ଗା ମୋଟା କେତେ ପ୍ରତିଶ୍ରୁତି ଦେଇ ଆସିଛନ୍ତି । କ୍ଷମତାକୁ ଆସିପାରୁ ନାହାନ୍ତି । ତେଣୁ ପ୍ରତିଶ୍ରୁତି ପୂରଣ କରିବାର ଅସୁବିଧାରେ ପଡୁନାହାଁନ୍ତି । ତାଙ୍କ ସଭାରେ ଲୋକ ଭଲ ହୁଅନ୍ତି । କିନ୍ତୁ ଭୋଟ ଦେଲାବେଳକୁ ଲୋକେ ଲୁଚନ୍ତି । ଏଥର ନିର୍ବାଚନରେ ସେ ରାମାରାଓଙ୍କୁ ବଳି ଯାଇଛନ୍ତି । ରାମାରାଓ ଆନ୍ଧ୍ରରେ ବିରୋଧିଦଳମାନଙ୍କ ସହିତ ବୁଝାମଣା କରି ୪୪ଟି ଆସନ ଛାଡ଼ି ଦେଇଛନ୍ତି । ଏପରିକି ରାମାରାଓ ହିନ୍ଦୁ ରାଷ୍ଟ୍ରବାଦୀମାନଙ୍କୁ ବାଁ ପାଖରେ ଓ କମ୍ୟୁନିଷ୍ଟମାନଙ୍କୁ ଡାହାଣ କାଖରେ ଯାକି ଚାଲିଛନ୍ତି । ବିଜେପି ଓ କମ୍ୟୁନିଷ୍ଟମାନଙ୍କ ମଧରେ ବୁଝାମଣା ହୋଇ ପାରିବନି । କିନ୍ତୁ ରାମାରାଓଙ୍କ ସହିତ ବୁଝାମଣା କରିବାକୁ ଉଭୟ ପକ୍ଷ ଉଦ୍‌ଗ୍ରୀବ ।

କିନ୍ତୁ ଆମ ଓଡ଼ିଶା ବାବୁ ସେଥିରୁ କିଛି ଶିଖିଲେନି । ସେ କେବଳ ଶାସକ ଦଳର ଟାଣୁଆ ବିକଳ୍ପ ସୃଷ୍ଟି କରିବାକୁ ୧୪୫ଟି ଆସନରେ ଲୋକ ଠିଆ କରାଇଛନ୍ତି । ସେମାନଙ୍କ ମଧରେ ଜଣେ ବିଧବା ମଧ ଅଛନ୍ତି ।



Digitized by srujanika@gmail.com

ଏବେ ପଢ଼ିଲି ଯେ ଇନ୍ଦିରା ଗାନ୍ଧୀଙ୍କ ହତ୍ୟାକାଣ୍ଡ ପରେ ଦିଲ୍ଲୀରେ ଯେଉଁ ଶିଖ୍‌ମାନେ ଦଙ୍ଗାଗୋଳରେ ପ୍ରାଣ ହରାଇଲେ, ସେମାନଙ୍କ ପତ୍ନୀମାନଙ୍କୁ ଗଣବିବାହ ଉତ୍ସବରେ ଏକ ଶିଖ୍ ସଙ୍ଗଠନ ବିବାହ କରାଉଛନ୍ତି । ପ୍ରକୃତରେ ବିଧବାମାନଙ୍କର ସମସ୍ୟା ହେଲା ସ୍ୱାମୀ ହୀନତା । ସେମାନଙ୍କୁ ତିରିଶ ଚାଳିଶ ଟଙ୍କା ହାତଟେକା ପେନ୍‌ସନ୍ ପରିବର୍ତ୍ତେ ସ୍ୱାମୀ ଯୋଗାଇବାର ପ୍ରତିଶ୍ରୁତି କିମ୍ବା କାର୍ଯ୍ୟକ୍ରମ ଚାଲୁ ହେଲେ ସେମାନେ ତାଙ୍କର ସ୍ୱାମୀମାନେ ଓ ଭବିଷ୍ୟତରେ ସେମାନଙ୍କର ସନ୍ତାନମାନେ ସମ୍ପୃକ୍ତ ଦଳର ସ୍ଥାୟୀ ଭୋଟର ହୋଇଯାଆନ୍ତେ । ଆମ ଓଡ଼ିଶା ନେତାଏ ସେମାନଙ୍କଠୁ ଦେଖି ଶିଖି ବିଧବା ବିବାହ କରାଇ ପାରନ୍ତେ ନି ?

(ତା୧୪.୦୨.୧୯୮୫ରିଖ)



# ଚଣ୍ଡୀଗଡ-ଭୁବନେଶ୍ୱର; ବହୁତ ଦୂର

ସ୍ୱାଧୀନତା ପରେ ଓଡ଼ିଶା ସମେତ ଅନେକ ରାଜ୍ୟରେ ଏକ ସମୟରେ ଗୁଡ଼ିଏ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ଉଦାହରଣ ସ୍ୱରୂପ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ଓ ପଞ୍ଜାବର ରାଜଧାନୀ ଭାବେ ଚଣ୍ଡୀଗଡ଼ ସହର ନିର୍ମାଣ ଗୋଟିଏ ନକ୍‌ସାରେ ଓ ଏକ ସମୟରେ ଆରମ୍ଭ ହୋଇଥିଲା । ରାଜଧାନୀ ଦୃଷ୍ଟିରୁ ଏ ଦୁଇ ସହର ଯୋଜନାବଦ୍ଧ ଭାବେ ଓ ନିର୍ଦ୍ଦିଷ୍ଟ ନକ୍‌ସାରେ ଗଢାଯିବାକୁ ସ୍ଥିର ହୋଇଥିଲା ।

ଦୁଇଟି ସହର ନିର୍ମାଣର ୨୦ /୨୫ ବର୍ଷ ବିତିଗଲାଣି । ଏହା ଭିତରେ ଚଣ୍ଡୀଗଡ଼ ସହରର ସୌନ୍ଦର୍ଯ୍ୟ ବଢିଛି ଓ ତାହା ଏକ ଯୋଜନାବଦ୍ଧ ସହରଭାବେ ବଢିଛି । ଅନ୍ୟପକ୍ଷରେ ଭୁବନେଶ୍ୱର ଯେଉଁ ଯୋଜନା ବା ନକ୍‌ସା ଅନୁସାରେ ନିର୍ମିତ ହେବ ବୋଲି ପ୍ରଥମରୁ ସ୍ଥିର ହୋଇଥିଲା, ତାହା ଲଂଘନ କରାଯାଇଛି ।

ଭୁବନେଶ୍ୱରରେ ପ୍ରସ୍ତାବିତ ହ୍ରଦ, ପ୍ରତି ୟୁନିଟରେ ସ୍କୁଲ, କ୍ଲବ, ପାର୍କ ବଡ଼ଡାକ୍ତରଖାନା କୁଆଡେଗଲା । ସେଥିପାଇଁ ଉଦ୍ଦିଷ୍ଟ ଜାଗାଗୁଡ଼ିକ ଆଇ.ଏ. ଏସ. ଅଫିସର, ଅନ୍ୟ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ, ମନ୍ତ୍ରୀ, ଏମ.ଏଲ. ଏ. ଅବା ବିଶିଷ୍ଟ ବ୍ୟବସାୟୀଙ୍କୁ ଦିଆଯାଇଛି ।

ଫରେଷ୍ଟ ପାର୍କ ଅଂଚଳ ସଙ୍କୁଚିତ ହୋଇଗଲା । ସେଠାରେ ବି, ଉପରୋକ୍ତ ମୁଷ୍ଟିମେୟ ସୁବିଧାବାଦୀ ଶ୍ରେଣୀର ଲୋକଙ୍କୁ ଜାଗା ବାଣ୍ଟି ଦିଆଯାଇଛି । ୟୁନିଟ-୩ରେ ଥିବା ପ୍ରଦର୍ଶନୀ ପଡ଼ିଆରୁ କିଛିଭାଗ କରିତକର୍ମା ଲୋକମାନଙ୍କୁ ଦିଆଗଲା । ଶେଷକୁ ସମୟ ଆସିବ, ପ୍ୟାରେଡ ପଡ଼ିଆକୁ ବି କିଛି ଉପର ଶ୍ରେଣୀର ଲୋକଙ୍କୁ ବାଣ୍ଟି ଦିଆଯିବ ।

ଖାଲି ସଚିବାଳୟ ଦଳା ଘଣ୍ଟା ନଗଲେ ରକ୍ଷା । ଭୁବନେଶ୍ୱର ଓ ଚଣ୍ଡୀଗଡ ମଧ୍ୟରେ ମାଇଲର ଦୂରତା ଯେ, ବେଶୀ ତା' ନୁହେଁ । ବାସ୍ତବ କାର୍ଯ୍ୟକ୍ଷେତ୍ରରେ ଚଣ୍ଡୀଗଡ ବହୁବାଟ ଆଗେଇଗଲା ବେଳେ, ଭୁବନେଶ୍ୱର ଯେ କେବଳ ଆଗେଇବାରେ ବିଫଳ ହୋଇଛି ତା' ନୁହେଁ- ପୃଷ୍ଠଗତିବି କରିଛି ।

ଏଥିପାଇଁ ଦାୟୀ କିଏ, ସମସ୍ତେ ଜାଣନ୍ତି ।

(ତା୧୯.୦୫.୧୯୮୭ରିଖ)





Digitized by srujanika@gmail.com

# ଜୀବନ ପାଇଁ ସମୟ କାହିଁ ?

ଡାକ୍ତରମାନଙ୍କର ଘରୋଇ ଚିକିତ୍ସା ବ୍ୟବସ୍ଥା ଉଠାଇ ଦେଇ ସରକାର ଠିକ୍ କରିଛନ୍ତି କି ଭୁଲ କରିଛନ୍ତି, ଏ ପ୍ରକାର ଯୁକ୍ତି ଶୁଣିବାକୁ ଅବଶ୍ୟ ମିଳିବ । କିନ୍ତୁ ଚିକିତ୍ସା ଜଗତରେ ସାଧାରଣ ରୋଗୀ ଯେଉଁଠି ସେଇଠି । ଯେତେ ଦେଲେ ବି ପାଇଲାବାଲାର ମନ ସନ୍ତୁଷ୍ଟ ନୁହେଁ ।

ଯେଉଁମାନେ ଆଗେ ଘରୋଇ ଚିକିତ୍ସା କରୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏବେବି କରୁଛନ୍ତି । ଫରକ ଏଇଆ ଯେ ଏବେ ଡାକ୍ତରମାନେ ଘରୋଇ ଚିକିତ୍ସା କରିବା ବେଆଇନ ହୋଇଯାଇଛି । ଆଗେ ଆଇନ ଅନୁସାରେ ଡାକ୍ତରମାନେ ଯାହା ଫିସ୍ ନେଉଥିଲେ ଏବେ ସେହି କାମ କରିବା ବେଆଇନ ଘୋଷିତ ହୋଇଥିବା ଯୋଗୁଁ ଅଧିକା ଫିସ୍ ନେଉଛନ୍ତି । କାରଣ ହେଲା ଦୁଇଟା । ପ୍ରଥମଟା ହେଲା ସେ ରୋଗୀକୁ ଦୟା କରୁଛନ୍ତି ଏବଂ ବିପଦ ବରଣ କରି ଘରୋଇ ଭାବରେ ଚିକିତ୍ସା କରୁଛନ୍ତି । ଡାକ୍ତରଖାନାରେ ସେହି ରୋଗୀ ଏହି ବଡ଼ ଡାକ୍ତରଙ୍କ ଦେଖା କିମ୍ବା ଧ୍ୟାନ ପାଇବା ଅସମ୍ଭବ କିମ୍ବା କଷ୍ଟସାଧ୍ୟ । ଦ୍ୱିତୀୟ କାରଣ ହେଲା ଯେ ଯଦି ଅବସ୍ଥାଚକ୍ରରେ ପଡ଼ି ଡାକ୍ତର ଭିଜିଲାନ୍ସ ପୋଲିସ ହାତରେ ଧରାପଡ଼ିଲେ ସେଥିପାଇଁ ହୁଏତ ମୋଟା କିଛି ଖର୍ଚ୍ଚ କରିବାକୁ ପଡ଼ିବ । ସେ ଆଶଙ୍କା ଓ ଖର୍ଚ୍ଚ ପାଇଁ ଅଧିକ ଫିସ୍ ଦରକାର ।

ଏ ଦୁଇଟି କାରଣ ଛଡ଼ା ଅନ୍ୟ ଗୋଟିଏ କାରଣ ଅଦୃଶ୍ୟ ଭାବରେ ରହିଛି । ଘରୋଇ ଚିକିତ୍ସା ପାଇଁ ଲୋକେ ଅଧିକ ପଇସା ଦେଲେ ହୁଏତ ସରକାରଙ୍କ ଏତାଦୃଶ ନୀତି ବିରୁଦ୍ଧରେ ଜନମତ ବୃଦ୍ଧି ପାଇବ ଏବଂ ଲୋକେ ହୁଏତ ସରକାର ଏ ନୀତି ପରିବର୍ତ୍ତନ କରିବାକୁ ଚାପ ସୃଷ୍ଟି କରିବେ ।

ଏ ସବୁ କଥା କହିବାର କାରଣ ହେଲା ମୁଁ ଦିନେ ମୋର ରକ୍ତ ଓ ପରିସ୍ରା ପରୀକ୍ଷା ପାଇଁ ଜଣେ ମହିଳା ଘରୋଇ ଚିକିତ୍ସକଙ୍କ ପାଖକୁ ଯାଇଥିଲି । ସେଠି ବଡ଼ ଭିଡ଼ । ମୋର ଯେତେବେଳେ କାମ ପଡ଼େ ମୁଁ ସେଠାକୁ ଯାଏ ବୋଲି ମହିଳା ଡାକ୍ତର ମତେ ଟିକେ ସମ୍ମାନ ଦିଅନ୍ତି । ଚଉକୀ ଦିଅନ୍ତି ବସିବାକୁ । କିନ୍ତୁ ସେଠାରେ ମଳମୂତ୍ର ରକ୍ତ ଇତ୍ୟାଦିର ପରୀକ୍ଷା ପାଇଁ ଯେତେ ଲୋକ ଭିଡ଼ କରନ୍ତି, ସେମାନଙ୍କ ପାଇଁ ସେଠାରେ ଏତେ ଚଉକୀ ବେଞ୍ଚ ନାହିଁ ।

ସମସ୍ତେ ତରତର । 'ଆଜ୍ଞା, କେତେବେଳେ ରିପୋର୍ଟ ମିଳିବ ? କେତେ ସମୟ ପରେ ଆସିବି ?' ମୁଁ ଟିକେ ବସୁଛି । ଆପଣମୋ କାମଟା ଟିକେ ଆଗେ କରିଦିଅନ୍ତୁ' ଆଉ କିଏ ବ୍ୟସ୍ତ ହୋଇ କହି ପକାଉଛନ୍ତି 'ମୋର ଆଜ୍ଞା ଅଫିସ୍ ବେଳ ହୋଇଗଲାଣି । ଆଜିକାଲି ନୂଆ ଭାବମୂର୍ତ୍ତି ସରକାର । ଡେରିରେ ଗଲେ ଅସୁବିଧା । ସି.ଏଲ୍. ନେବାକୁ ପଡ଼ିବ ନଚେତ୍ ।'' ଇତ୍ୟାଦି ଇତ୍ୟାଦି ସମସ୍ତେ ଜଲ୍‌ଦି ଯିବାକୁ ବ୍ୟସ୍ତ ।

ଡାକ୍ତର ଭଦ୍ର ମହିଳା ବ୍ୟସ୍ତ ହୋଇ ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଥାନ୍ତି । କିନ୍ତୁ ଜଣେ ମଣିଷ ତ । ଲୋକେ କାଉଳା ବାଉଳା କରିବାରୁ କହିଲେ-

''ଆଜ୍ଞା ଆପଣମାନେ ଏତେ ବ୍ୟସ୍ତ ହେଉଛନ୍ତି । ଡାକ୍ତରଖାନାରେ ଏଇ କାମ କରାଇ ପାରିବେନି ବୋଲି ଏଠାକୁ ଆସିଛନ୍ତି । ମୁଁ ତ ଆଉ କମ୍ପ୍ୟୁଟର ନୁହେଁ । କମ୍ପ୍ୟୁଟର ବି କିଛି ସମୟ ନିଅନ୍ତା । ତା'ଛଡ଼ା



Digitized by srujanika@gmail.com

ଆପଣମାନେ ନିଜର ସ୍ୱାସ୍ଥ୍ୟ ପାଇଁ ଏତେ ଟିକଏ ସମୟ ଦେବାକୁ କୁଣ୍ଠିତ କାହିଁକି ? ବସ୍‌ଷ୍ଟାଣ୍ଡରେ, ରେଳ ଷ୍ଟେସନରେ ଗାଡ଼ି ପାଇଁ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରୁଛନ୍ତି । ସିନେମା ହଲ୍‌ରେ ପଶିଗଲେ ତିନିଘଣ୍ଟା । ପରିବା ଦୋକାନରେ କେତେ ସମୟ ଠିଆହେବାକୁ ପଡୁଛି । ରିକ୍ସା ନ ମିଳିଲେ କେତେ ଡେରି ହେଉଛି । ମଟର ଗାଡ଼ି ଏପରିକି ସାଇକେଲ୍‌ଟା ମରାମତି କରିବାକୁ ହେଲେ ଠିଆ ହେବାକୁ ପଡୁଛି । କଣ୍ଟ୍ରୋଲ ଦୋକାନରୁ ଗହମ, ଚିନି ଆଣିବାକୁ ପାଞ୍ଚଥର ଦଉଡୁଛନ୍ତି । ରୋଷେଇ ପାଇଁ କାଠ ଆଣିବାକୁ କେତେ ସମୟ ଠିଆ ହେବାକୁ ପଡୁଛି ।

"ଆଉ ମଣିଷ ଜୀବନ । ଜୀବନ ରହିଲେ ଆଉସବୁ । ବଞ୍ଚିଲେ ସବୁ । ନିଜ ଦେହ ପାଇଁ ବଞ୍ଚିବା ପାଇଁ ଏଠିକୁ ଆସିଛନ୍ତି । ଆପଣମାନଙ୍କର ଧୈର୍ଯ୍ୟ ନାହିଁ ଟିକେ ଅପେକ୍ଷା କରିବାକୁ । ଅବଶ୍ୟ ଆପଣ ଚାହିଁଲେ ମୁଁ ମିନିଟିଏ ଦୁଇ ମିନିଟ୍‌ରେ କିଛି ପରୀକ୍ଷା ନକରି ରିପୋର୍ଟଟାଏ ଦେଇ ଦେଇପାରିବି । ମୋର ତକଲିଫ୍ କମ୍ । ପଇସା ରୋଜଗାର ହେବ । ଆପଣଙ୍କର କଣ ଲାଭ ହେବ ସେଥିରେ ?" ଭଦ୍ର ମହିଳା ସରକାରୀ ଚାକିରି ନକରି ଘରୋଇ ପ୍ରାକ୍ଟିସ୍ କରୁଛନ୍ତି ।

ମୋର ମନେପଡ଼ିଲା ଆଉ ଜଣେ ପାଥୋଲୋଜି ପ୍ରଫେସରଙ୍କ କଥା । ସେତେବେଳେ ଘରୋଇ ଚିକିତ୍ସା ଆଇନ ଅନୁସାରେ ଚାଲୁଥିଲା । ସେ କେବଳ ସକାଳ ବେଳା ପ୍ରାୟ ଦୁଇଶହ ସାମ୍ପଲ ପରୀକ୍ଷା କରି ଦଶଟା ବେଳକୁ ଅଧାପନା କରିବାକୁ ଯାଉଥିଲେ । ତାଙ୍କର ବହୁତ ପଇସା ।

(ତା୨୬.୦୩.୧୯୮୪ରିଖ)





Digitized by srujanika@gmail.com

# ନିରୁଦ୍ଦିଷ୍ଟ- ମହିଳା କୁକୁର

ନଭେମ୍ବର ୧୦ ତାରିଖ ୧୯୮୩ ଦିଲ୍ଲୀରୁ ପ୍ରକାଶିତ ସର୍ବୋଚ୍ଚ ପ୍ରସାରିତ ଇଂରାଜୀ ଦୈନିକ 'ହିନ୍ଦୁସ୍ଥାନ ଟାଇମସ୍'ର ଚତୁର୍ଥ ପୃଷ୍ଠା ପଞ୍ଚମ ଓ ଷଷ୍ଠ ସ୍ତମ୍ଭର ଠିକ୍ ମଧ୍ୟଭାଗରେ ପ୍ରକାଶିତ ଏକ ବିଜ୍ଞାପନ । ଉପରେ ଶୀର୍ଷକ 'ହଜିଛି' ଅଥବା 'ନିରୁଦ୍ଦିଷ୍ଟ' । ତା ତଳକୁ ଏକ କଳା ମୁଚୁ ମୁଚୁ ଚେହେରାର ହୃଷ୍ଟପୁଷ୍ଟ କୁକୁରର ଚିତ୍ର । ଚିତ୍ର ତଳେ ବିବରଣୀ ।

''ହଜିଛି ମହିଳା କୁକୁର (ଅର୍ଥାତ କୁତୀ), ନାମ 'ସୌ ସୌ' ଜାତି ଦାସବୁଣ୍ଡ, ୫ବର୍ଷ ବୟସ, ରଙ୍ଗ କଳା ଓ ଧୂସର । ୨୧, ବି-୩ ଫ୍ରେଣ୍ଡସ୍ କଲୋନୀ (ପଶ୍ଚିମ)ର ୫.୧୧.୮୩ ତାରିଖରୁ ହଜିଛି । ପାଇଲା ବାଲାକୁ ଯଥାରୀତି ପୁରସ୍କୃତ କରାଯିବ । ଦୟାକରି ୬୩୬୩୫୦ କିମ୍ବା ୬୪୬୮୭୨ ଫୋନ୍ ନମ୍ବର ସହିତ କିମ୍ବା ଉପରଲିଖିତ ଠିକଣାରେ ଯୋଗାଯୋଗ କରନ୍ତୁ ।

'ହିନ୍ଦୁସ୍ଥାନ ଟାଇମସ୍' ବିରଳାଙ୍କ କାଗଜ । ଦିଲ୍ଲୀ ଓ ଉତ୍ତର ଭାରତରେ ପ୍ରସାର ସବୁଠାରୁ ଅଧିକ । ପ୍ରତିଦିନ ପ୍ରାୟ ୨ ଲକ୍ଷ ୬୦ ହଜାରରୁ ଊର୍ଦ୍ଧ୍ୱ କପି ବିକ୍ରି ହୁଏ । କୁକୁରର ମାଲିକଙ୍କୁ ଏହି ବିଜ୍ଞାପନଟି ପାଇଁ ଅନ୍ତତଃ ଷୋଳଶହ ଟଙ୍କା ଖର୍ଚ୍ଚ କରିବାକୁ ପଡିଥିବ ।

ରେଡ଼ିଓରେ ଏବଂ ଟେଲିଭିଜନରେ ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ ଘୋଷଣା କରାଯାଏ । ଏ କୁକୁରର ମାଲିକ ଯେ ପଇସା ଦେଇ ଦିଲ୍ଲୀର 'ଆକାଶବାଣୀ' ଓ ଦୂରଦର୍ଶନ କେନ୍ଦ୍ରରୁ ନିରୁଦ୍ଦିଷ୍ଟ କୁକୁର ସମ୍ପର୍କରେ ଘୋଷଣା କରାଇ ନଥିବେ ଏ କଥା କିଏ କହିବ ।

ଏହି 'ସୌ ସୌ' ନାମକ ମହିଳା କୁକୁର ପାଇଁ ମାଲିକଙ୍କର ଯେଉଁ ଉଦ୍‌ବେଗ ହେଉଥିବ ମୁଁ ବୁଝି ପାରୁଛି । ବଡ଼ ଦାମିକା କୁକୁର ହୋଇଥିବ ନିଶ୍ଚୟ । ଏ କୁକୁର ବଡ଼ ଭାଗ୍ୟବାନ ।

ମୋର କୁକୁର ବିଲେଇ ସଉକ ମୋଟେ ନାହିଁ । ମୁଁ ସେମାନଙ୍କୁ ଗୃହପାଳିତ ପଶୁ ଭାବରେ ସମ୍ମାନ କିମ୍ବା ସ୍ନେହ ଦେଇ ପାରେନା । ବିଶେଷ କରି କୁକୁର କାମୁଡାକୁ ମୋର ଭାରି ଡର । କୁକୁର କାମୁଡି ଦେଲେ ଯେଉଁ ଖଣ୍ଡିଆ ହେବ ସେ ଘା ସମ୍ପର୍କରେ ମୁଁ ଉଦ୍‌ବିଗ୍ନ ନୁହେଁ । ଉଦ୍‌ବିଗ୍ନ ଜଳାତଙ୍କ ରୋଗରୁ ରକ୍ଷା ପାଇଁ ପେଟର ଉପର ଚମଡା ତଳେ ଯେଉଁ ବିରାଟ ସିରିଞ୍ଜରେ ମୋଟା ଛୁଞ୍ଚ ଲଗେଇ ଚଉଦଟା ଇଂଜକସନ୍ ନେବାକୁ ପଡେ, ସେଥିପାଇଁ । କୁକୁର କାମୁଡାଠାରୁ ସେ ଇଞ୍ଜେକ୍‌ସନ ଆହୁରି ଭୟଙ୍କର । ଏବେ ପୁଣି ସେ ଇଞ୍ଜେକ୍‌ସନ ଭେଜାଲ ହେଲାଣି ଯେ ଇଞ୍ଜେକସନ ନେଲାପରେ ମଧ ଲୋକେ ମରୁଛନ୍ତି । ଆଉ ବିଲେଇ । ବିଲେଇ ଅଗଁଠାରୁ ଭୟଙ୍କର ଡିପଥେରିଆ ରୋଗ ହୁଏ । ସେ ବିଜ୍ଞାପନଟି ପ୍ରତି ମୁଁ ବା କାହିଁକି ଆକୃଷ୍ଟ ହୋଇଯାନ୍ତି ? ଯଦି କୁକୁରର ଫଟୋଚିତ୍ରଟି ଛପାଯାଇ ନଥାନ୍ତା । ଏବେ ସମ୍ବାଦ ପ୍ରକାଶ ପାଇଛି ଯେ, ଭୁବନେଶ୍ୱର ମହିଳା କଲେଜରୁ ଜଣେ ଛାତ୍ରୀ ନିଖୋଜ ହୋଇଯାଇଛନ୍ତି । ତାଙ୍କୁ କୁଆଡେ କୋଉ ମନ୍ତ୍ରୀ ଗାଡ଼ିରେ ହରଣଚାଲ କରି ନିଆଯାଇଛି । ସେ ଝିଅଟିର ବାପ ମା କେତେ ଉଦ୍‌ବିଗ୍ନ ହୋଇ ତାକୁ ଖୋଜୁ ନଥିବେ ?

କିନ୍ତୁ ମଣିଷଟିଏ ବିଶେଷ କରି ଆମର ସ୍ତ୍ରୀଟିଏ ହଜିଲେ କଣ ଆମେ ଏତେ ପଇସା ଖର୍ଚ୍ଚ କରି ବିଜ୍ଞାପନ ଦେଇ ତାକୁ ଖୋଜା ଖୋଜି କରୁ ?



Digitized by srujanika@gmail.com

କୁକୁରଟି କିନ୍ତୁ ଏତେ ବଡ ବିଶ୍ୱାସୀ ପ୍ରାଣୀ । ମାଲିକ ପାଇଁ ସେ ପ୍ରାଣ ଦିଏ । ମାଲିକର ସ୍ୱାର୍ଥରକ୍ଷା ପାଇଁ ଚୋରକୁ ଦେଖିଲେ ଭୁକେ, କାମୁଡେ । ଘରକୁ କେହି କୁଣିଆ ଆସିଲେ ବି ସହଜରେ ଢୁକେଇ ଦିଏନା । ମଣିଷଟା କିନ୍ତୁ ବଡ ଦହଗଞ୍ଜ କରେ ଅନ୍ୟ ମଣିଷକୁ । ପୁଣି ମହିଳା ମଣିଷ ଯେତିକି ଭଲ ସେତିକି ଖତରନାକ ।

ଆଜିକାଲି ଯୋଉ ଅଫିସକୁ ଯିବ ମହିଳା ପ୍ରଧାନମନ୍ତ୍ରୀଙ୍କ ଫଟୋ ଚିତ୍ର କାନ୍ଥରେ ଝୁଲୁଛି । କେତେ ବିଶ୍ୱାସରେ ଭାରତର ଲୋକେ ନିଶ୍ଚିନ୍ତରେ ଏହି ମହିଳା ମଣିଷ ହାତରେ ଦେଶଟିକୁ ଟେକି ଦେଇଛନ୍ତି । ଭାବନ୍ତୁ ଯଦି ପ୍ରଧାନମନ୍ତ୍ରୀ ଆମର ପ୍ରଧାନ ମହିଳା ପ୍ରଧାନମନ୍ତ୍ରୀ ଯଦି ଆମ ମନ ବିଡ଼ିବା 'ଉଦ୍ଦେଶ୍ୟ'ରେ 'ନିରୁଦ୍ଦିଷ୍ଟ' ହୋଇଯାଆନ୍ତି କିଛି ଦିନ ପାଇଁ, କଣ ହବ ଅବସ୍ଥା ଆମର ?

(ତା୧୪.୧୧.୧୯୮୩ରିଖ)





Digitized by srujanika@gmail.com

# କଷ୍ଟ ପ୍ରଶ୍ନର ସହଜ ଉତ୍ତର

ସେଦିନ ବଡ଼ି ସକାଳୁ ମୁଁ ଉଠିଲା ବେଳକୁ ଆମ ବାରିପଛ ପଟେ ସେଇ ଛୋଟ ଝୋପଡିରେ ରହୁଥିବା ସ୍ତ୍ରୀ ଲୋକଟି ଚାପା ଗଳାରେ କୁଁ କୁଁ ହୋଇ କାନ୍ଦୁଥିଲା । ମୁଁ ଭାବିଲି ଯେ ତା ସ୍ୱାମୀ ସହିତ ପୁଣି ସେଦିନ କଣ କଳିଆ ହୋଇଥିବ । ସ୍ୱାମୀଟି ମାଲିକାମ କରେ । ମୂଲ ଲାଗେ । ସ୍ତ୍ରୀଟି ତା'ର ଘରର କାମ ପାଇଟି କରେ । କିନ୍ତୁ ଦାମ୍ପତ୍ୟଜୀବନ ବଡ଼ ଅଶାନ୍ତିରେ କଟେ । ସବୁଦିନେ କଳିଆ ।

ମରଦର ରୋଜଗାର କମ୍ । ସ୍ତ୍ରୀଟି ବିଶେଷ କର୍ମଠ ନୁହେଁ । ତେଣୁ ଆର୍ଥିକ ସମସ୍ୟା ହିଁ ପ୍ରଧାନ । ପୁରୁଷ କହେ ''ତୁ ଯା ତୋ ବାପ ଘରେ ରହିବୁ ମୁଁ ତତେ ପୋଷି ପାରିବିନି ।''

ପତ୍ନୀ କହେ 'ସାଣ୍ଢ ନଥେଲା ତ ବାହା ହେଉଥିଲୁ କାହିଁକି ହାତ ଧରି ।''

ସ୍ତ୍ରୀଟି ଉପରେ ବେଳେ ବେଳେ କିଛି ଉତ୍ତମ ମଧ୍ୟମ ବି ବସେ । କିନ୍ତୁ ଭାରତୀୟ ଜୀବନ ତଳ ଭାଗରେ ଏସବୁ ନିତିଦିନିଆ କଥା ।

ସ୍ତ୍ରୀଟି ବେଳେ ବେଳେ ଆମ ଘରକୁ ଆସେ । କେତେବେଳେ ତରକାରୀ ଟିକିଏ ବା କେତେବେଳେ ପଖାଳ ଭାତ ଗଣ୍ଡିଏ ନିଏ । ଆମ ଘରେ ପୂଜା ପାର୍ବଣ କମ୍ । ତେଣୁ ଓଡ଼ିଆ ଘର ଭଳି ଦିନବାର ନେଇ ପିଠାପଣା ଆମର ହୁଏନି । ଯେବେ ପିଠାପିଠି ହୁଏ କଳହମୟ ଜୀବନରେ ସେମାନଙ୍କୁ କିଛି ବାହାରୁ ଖାଇବାକୁ ମିଳେ । ସେମାନେ ରୋଷେଇ ପାଇଁ କାଠର ଚୁଲି ଜଳାନ୍ତି । ତେଣୁ ଆମର ଘରେ ପଖାଳ ଖାଇବାର ହେଲେ ତାଙ୍କଘରୁ ସକାଳୁ ବି ଜହ୍ନି ପୋଡ଼ାଇ ଆଣୁ । ଏହା ଥିଲା ସମାଜର ପଡୋଶୀ ପଣିଆ । ଆମ ଘର ପଛ ଚଉତରା ଉପରେ ଖଟା କି ଆଚାର ଖରାରେ ଶୁଖାଇଲେ ସେ ସ୍ତ୍ରୀ ଲୋକଟି ହାତ ପୂରେଇ ଖାଇ ଯାଏ । ତେଣୁ ନଜଗିଲେ ଆଚାର ତିଆରି ପୂର୍ବରୁ ଶେଷ ହୋଇଯାଏ ।

ମୋ ପତ୍ନୀଙ୍କୁ ମୁଁ କହିଲି ଦେଖ ସେ ପୁଣି କାହିଁକି ଏତେ ସକାଳୁ ଆଜି କାନ୍ଦିଲାଣି ।'' ମୋ ପତ୍ନୀ କହିଲେ ''ସେ ମାଡ଼ ଖାଇଥିବ ।''

ମୁଁ ଜଳଖିଆ ଖାଇଲା ବେଳକୁ ସ୍ତ୍ରୀ ଲୋକଟି ଆସି ମୋ ସ୍ତ୍ରୀକୁ ମୁଣ୍ଡିଆ ମାରି କହିଲା ''ମା ଯାଉଛି ।''

''କୁଆଡେ ଯାଉଛୁ'' । ''ମୋ ବାପ ଘରକୁ । ଆଜି ସକାଳୁ ମଲା ପିଲାଟା ଜନ୍ମ ହେଲା । ଇଏ (ମାନେ ତା ସ୍ୱାମୀ) ମତେ ଆଉ ରଖିବନି କହି ପୁଣି କାନ୍ଦି ପକାଇଲା ସ୍ତ୍ରୀ ଲୋକଟି ।

''ତୋର ପିଲା ହବା କଣ ଏତେ ପାଖ ହୋଇଯାଇଥିଲା ?'' ମୋ ସ୍ତ୍ରୀ ତାଙ୍କୁ ପ୍ରଶ୍ନ କଲେ । 'ହଁ ମା ଦଶମାସ ହେଇଥେଲା ।

ମୋର ମନେ ଅଛି ମୋ ପତ୍ନୀ ତାକୁ କେତେ ଥର ଡାକ୍ତରଖାନାକୁ ପଠାଇଛନ୍ତି । ପେଟ ଦେଖେଇବାକୁ ଯେତେବେଳେ ସେ କହେ ଯେ ଛୁଆଟା ତା ପେଟ ଭିତରେ ଆଉ ବୁଲୁନି ବୋଲି । କିନ୍ତୁ ରାଜଧାନୀର ଡାକ୍ତରଖାନାରେ ଚିକିତ୍ସା ବ୍ୟବସ୍ଥା ଯାହା ସେଥିରେ ସାମାନ୍ୟ ଦେହ ଖରାପ ହେଲେବଡ ଲୋକ କଟକ ଯାଆନ୍ତି । ଦେହର ଅସୁବିଧା ହେଲେ ଆଉ ଏ ସ୍ତ୍ରୀ ଲୋକ ପାଇଁ କି ବ୍ୟବସ୍ଥା ହୋଇପାରିଥାନ୍ତା ।



Digitized by srujanika@gmail.com

କିନ୍ତୁ କଥାଟା ହେଲା କେତେ ସହଜରେ ଏତେ ସବୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଗୁଡିକର ସମାଧାନ ହୋଇ ଯାଉଛି ତଳିଆ ଜୀବନରେ । ମଲା ପିଲା ଜନ୍ମହେବା ଓ ସ୍ତ୍ରୀକୁ ପୋଷିବା ଅସୁବିଧା ହେଲା ବୋଲି ଛାଡିଦେବା (ଛାଡ଼ପତ୍ର ନଦେଇ କିମ୍ବା ଭରଣ ପୋଷଣ ନଦେଇ) ଆଜି । ଜୀବନର ଏତେ ସଙ୍ଗୀନ ମାମଲାର ଫଏସଲା ଏପରି ସହଜ ଢ଼ଙ୍ଗରେ ଏମାନେ ଗ୍ରହଣ କରିନେଇ ପାରୁଛନ୍ତି ।

(ତା୭.୧୧.୧୯୮୩ରିଖ)



# ବାଡ଼ପୋତା ଓ ଗାଡ଼ତୋଳା

ତିନି ଦିନ ତଳେ ଦେଖିଲି ରାଜଧାନୀର ମୁଖ୍ୟ ରାଜପଥରେ ଯାହାର ଆନୁଷ୍ଠାନିକ ନାମ ମଧ ରାଜପଥ ଦୁଇପାଖ ଫୁଟପାଥ ଖୋଳା ହୋଇ ଛୋଟ କାଠ ବହ୍ଲାସବୁ ପୋତା ହୋଇ କାଠ ବାଡ଼ ରାସ୍ତାର ଦୁଇ ପାଖରେ ଦିଆ ହୋଇଗଲା । ସେଥିରେ ଧଳା ରଙ୍ଗ ଦିଆଯାଇଛି ।

କାହାକୁ ପଚାରିବି ବୋଲି ଭାବୁଥିଲି ଯେ କାଠ ବାଡ଼ର ଆୟୋଜନ କାହିଁକି । ମନେ ପଡ଼ିଗଲା ପ୍ରଧାନମନ୍ତ୍ରୀ ଆସିବେ ପରା ।

ପ୍ରଧାନମନ୍ତ୍ରୀ ଏହି ରାସ୍ତାରେ ଗଲାବେଳେ ଦୁଇ ପାଖରେ ଲୋକ ତାଙ୍କୁ ଦେଖିବାକୁ ଭିଡ଼ ହେବା ଆଶା କରିବା ସ୍ୱାଭାବିକ । ଜନସାଧାରଣଙ୍କୁ ଶୃଙ୍ଖଳିତ କରିବା ପାଇଁ ଏବଂ ପ୍ରଧାନମନ୍ତ୍ରୀଙ୍କ ନିରାପତ୍ତା ପାଇଁ ଏ ସବୁ ଆଗୁଆ ବ୍ୟବସ୍ଥା ହେବା ଉଚିତ ବୋଲି ପ୍ରଶାସକମାନେ ଭାବିଥିବେ । ଭାବିବା ସ୍ୱାଭାବିକ ।

ଫୁଟପାଥରେ ସିମେଣ୍ଟ, ଗୋଡ଼ି, ବାଲି ମିଶି ଯେଉଁ ଟାଣୁଆ ଚଟାଣ ତିଆରି ହୋଇଥିଲା ତାହା ଖୋଳା ଯାଇ ଗାତୁଆ ଗାତ ସବୁ ହୋଇ ଗଲା । ସେ ବାଡ଼ ନିଶ୍ଚୟ ଦୁଇ ତିନି ଦିନ ଭିତରେ ଉଠିଯିବ । କଣ୍ଟ୍ରାକ୍ଟର ତା ମଜୁରୀ ସିନା ପାଇବ । ସେ କାଠବାଡ଼କୁ ତ ଆଉ ଜନସାଧାରଣ ଚାଳ କରିବାକୁ ଛାଡ଼ି ଦେଇଯିବନି ।

କିନ୍ତୁ ମୋର ଆଶଙ୍କା ସେହି ଗାତ ଗୁଡ଼ାକ ଠିକ କରି ନ ପୋତି ଛାଡ଼ି ଦେଇଯିବ । କାରଣ ଗାଢ଼ ପୋତିବାକୁ ସେ ହୁଏତ କୌଣସି ରାଜିନାମା କରି ନଥିବ । କରିଥିଲେ ବି ନ ପୋତିଲେ କିଏ ତା'ର କଣ କରିବ ?

ପ୍ରଧାନମନ୍ତ୍ରୀ ଯେଉଁ ରାଜ୍ୟକୁ ଆସିବେ ଏବଂ ଯେଉଁଆଡ଼େ ସବୁ ଯିବେ କେତେ ତନାଘନା ଲାଗିବ ସିଆଡ଼େ । କେତେ ପଇସା ଖର୍ଚ୍ଚ ହୋଇ ଅସ୍ଥାୟୀ ଭାବରେ କେତେ କଣ ତିଆରି ହେବ । ତାଙ୍କର ଯେପରି ଅସୁବିଧା ନ ହେଉ କିମ୍ବା ତାଙ୍କ ଆଖିରେ ଭୁଲ ଜିନିଷ ନ ପଡୁ ଏଥିପାଇଁ ସମସ୍ତେ ଚେଷ୍ଟା କରିବେ ।

ସର୍ବସାଧାରଣଙ୍କୁ ଅଟକେଇବା ପାଇଁ ଯେଉଁ ବାଡ଼ ପୋତାଯିବ ଏବଂ ପରେ ଯେଉଁ ଗାଢ଼ରେ ସେମାନେ ପଡ଼ିବେ ସେ କଥା ଭାବିବାକୁ ଅବସର ନାହିଁ । ଭାରତ ବର୍ଷର ପ୍ରଧାନମନ୍ତ୍ରୀ ଯିଏ ହେବେ ସିଏ କିପରି ଜାଣିବେ ତାଙ୍କ ପାଇଁ ବାଡ଼ ପୋତା ହେଉଛି ଏବଂ ଗାଡ଼ ଖୋଳା ହେଉଛି ବୋଲି ।

(ତା୦୪.୦୫.୧୯୮୭ରିଖ)





Digitized by srujanika@gmail.com

# ମଣିଷ ମାଂସ ପାଇଁ ନୂଆ ପ୍ରଣାଳୀ

ଏବେ ନୂଆଦିଲ୍ଲୀରେ ବିଶ୍ୱ ଜେନେଟିକ୍ସ ବିଶାରଦ ମାନଙ୍କର ସମ୍ମିଳନୀ ଶେଷ ହୋଇଛି । ଜେନେଟିକ୍ସର ଠିକ୍ ଓଡିଆ ଶବ୍ଦ କ'ଣ ହେବ ମୁଁ ଜାଣିନି । କେହି ଜାଣିଥିଲେ ସମ୍ପାଦକଙ୍କ ଜରିଆରେ ଜଣାଇଲେ ଉପକୃତ ହେବି । ମୁଁ ତାହାର ଭାବାର୍ଥ ବୁଝାଇବାକୁ ଯାଇ କହିବି ଯେ ଜନ୍ମର ଅସଲ ଭେଦକୁ ହିଁ ମୋଟାମୋଟି ଜେନେଟିକସ କୁହାଯାଇପାରେ ।

ଏଡେନବର୍ଗ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଜ୍ଞାନୀ ଡକ୍ଟର ଜୋନସ ଏହି ସଂକ୍ରାନ୍ତରେ କହିଛନ୍ତି ଯେ, ମାତୃଗର୍ଭରେ ସନ୍ତାନ ଅଙ୍କୁର ହେଲାମାତ୍ରେ ତାହାର ଲିଙ୍ଗ ନିର୍ଣ୍ଣୟ ପାଇଁ ଏକ ସୂତ୍ର ବାହାରିଲାଣି । ଗୋଟିଏ ଭାରତୀୟ ସାପ, ବିଟ୍ରିଶ ପ୍ରାଣୀ ବିଜ୍ଞାନୀ ଓ ଆମେରିକାର ଅର୍ଥ ମିଶିବା ଦ୍ୱାରା ଏହି ସୂତ୍ର ବାହାର କରିବା ସମ୍ଭବ ହୋଇଛି ।

ଏହି ଅବକାଶରେ ଡକ୍ଟର କେନେଥ ଜୋନସ କହିଛନ୍ତି ଯେ ଆମେ ଏ କ୍ଷେତ୍ରରେ ଗୃହପାଳିତ ଗୋରୁଗାଈଙ୍କ ଉପରେ ଏହି ଗବେଷଣା ପ୍ରଥମେ ପ୍ରୟୋଗ କରିବୁ । ଏହି ସୂତ୍ରରେ ଗର୍ଭବତୀ ଗାଈଟି ଅଣ୍ଡିରାକି ମାଈ ବାଛୁରୀ ଜନ୍ମ କରିବ ତାହା ଆଗରୁ ଜଣାପଡିଯିବ । ଏହି ଉପାୟରେ ଏପରି ଯୋଜନା କରାଯାଇ ପାରିବ ଯେ ମାଈ ବାଛୁରୀ ଗୁଡିକ ଦୁଧ ଉତ୍ପାଦନ ପାଇଁ ଉଦ୍ଦିଷ୍ଟ ହେବେ ଓ ଅଣ୍ଡିରା ବାଛୁରୀ ଗୁଡିକ ଗୋମାଂସ ଉତ୍ପାଦନ ପାଇଁ କଂସେଇଖାନାକୁ ଯିବେ ।

ଏହି ବ୍ୟବସ୍ଥା ଆହୁରି ଆଗକୁ ନେଲେ ମାଈ ଛେଳି ଆହୁରି ଛୁଆ ଜନ୍ମ କରିବାକୁ ରହିବେ । ଅଣ୍ଡିରା ଖାସି ଓ ବୋଦାଗୁଡାକ କଟା ହେବାକୁ ଯିବେ । ଦେଶରେ ଦୁଧ ଘିଅ ମାଂସ ଆଦିର ପର୍ଯ୍ୟାପ୍ତ ବ୍ୟବସ୍ଥା ଏହି ବୈପ୍ଳବିକ ବିଜ୍ଞାନ ମାଧ୍ୟମରେ ସାଧିତ ହେବ ।

କିନ୍ତୁ ମୁଁ ଏହି ଲିଙ୍ଗ ନିର୍ଣ୍ଣୟର ଯୋଜନାତ୍ମକ ସମ୍ଭାବନା ସମ୍ପର୍କରେ ଟିକେ ବେଶୀ ଭାବିଲାରୁ ମୁଣ୍ଡଟା ଗୋଳମାଳିଆ ଧରିଗଲା । ଧର ଯେବେ ମଣିଷ ଭ୍ରୁଣର ଲିଙ୍ଗ ନିର୍ଣ୍ଣୟ ସହଜ ହୋଇଯିବ ସେତେବେଳେ ଯଦି କାହାରିମୁଣ୍ଡକୁ ପଶିଗଲା ଯେ ସ୍ତ୍ରୀ ଲୋକମାନଙ୍କୁ କେବଳ ମଣିଷର ବଂଶରକ୍ଷା ପାଇଁ ରଖି ପୁରୁଷମାନଙ୍କୁ ଅନାୟାସରେ କାଟି ଖାଇବାର ଯୋଜନା କରାଗଲେ କିଛି କ୍ଷତି ନାହିଁ ସେତେ ବେଳେ କ'ଣ ହେବ ?

ପୁରୁଷ ପିଲାଟି ମା' ପେଟରେ ରହିଲା ଦିନୁ ଜନ୍ମ ନେଇ। ପର୍ଯ୍ୟନ୍ତ ତାକୁ ମାଂସଳ କରିବା ପାଇଁ ଯଦି ଭିଟାମିନ ଯୁକ୍ତ ଖାଦ୍ୟର ଯଥେଷ୍ଟ ବ୍ୟବସ୍ଥା ହୋଇପାରନ୍ତା ତେବେ ଖାଦ୍ୟ ସମସ୍ୟା ମଧ ସମାଧାନ ହୋଇଯାଆନ୍ତା । ମଣିଷଙ୍କ ସଂଖ୍ୟା ଯେପରି ବଢୁଛି ଏବଂ ପ୍ରାଣୀ ଜଗତରେ ଅଣ୍ଡିରା ପ୍ରାଣୀଙ୍କର ଯେପରି ଉପାଦେୟତା ରହିଛି ଯଦି ମଣିଷକୁ ଗାଈ ଓ ଛେଳି ପରି ଫାର୍ମ କରି ଉତ୍ପାଦନ କରି ମଣିଷ ସମାଜର ଖାଦ୍ୟ ସମସ୍ୟା ସମାଧାନ ପାଇଁ ଲଗାଯାଇ ପାରନ୍ତା ତା ହେଲେ ମଣିଷର ଖାଦ୍ୟ ପାଇଁ ଆଉ ଚିନ୍ତା ରହନ୍ତା ନାହିଁ । ମଣିଷ କେବଳ ପୁରୁଷଙ୍କୁ ଖାଦ୍ୟ ଭାବରେ ବ୍ୟବହାର କରି ମହିଳା ମାନଙ୍କୁ ଆହୁରି ସୃଷ୍ଟି କରିବାକୁ ସୁଯୋଗ ଦେବାକୁ ଏକ କାର୍ଯ୍ୟକ୍ରମ ଭାବରେ ଗ୍ରହଣ କରି ନିଅନ୍ତା । ମଣିଷକୁ ଲାବେରେଟରୀରେ ତିଆରି କରି କଂସେଇ ଖାନାରେ ଚାମ୍ପ, ସିନା ଆଗଫଡିଆ କିମା କରିବା ପାଇଁ ପଛ ଫଡ଼ିଆ ଆଦି କାଟିଲେ ନିଜେ ସୃଷ୍ଟି କରୁଥିବା ଯାବତୀୟ ସମସ୍ୟାର ଅବସାନ ଘଟନ୍ତା ବୋଲି ମୋର ମନେ ହେଉଛି ।

(ତା୨୬.୧୨.୧୯୮୩ରିଖ)





Digitized by srujanika@gmail.com

# ଶାଗୁଣାର ଶୋକ

ଜଣେ କିଏ ବଡ ମଣିଷ ମରି ଗଲେ 'ଅପୂରଣୀୟ' କ୍ଷତି ଘଟେ । ରିକ୍ସାବାଲାଟିଏ ଦୁର୍ଘଟଣାରେ ମରିଗଲେ ତା' ପରିବାର ପାଇଁ କ'ଣ 'ଅପୂରଣୀୟ କ୍ଷତି' ଘଟେ ନାହିଁ ? ଯେ କୌଣସି ମୃତ୍ୟୁରେ ଶୂନ୍ୟ ହେଉଥିବା ଯାଗାଟି ପୂରଣ କରିହୁଏ ନାହିଁ । ବରଂ ବଡ ମଣିଷଟିଏ ଚାଲି ଗଲେ ବହୁ ଉଚ୍ଚାଭିଳାଷୀ ଲୋକ ସେ ଯାଗା ପୂରଣ କରିବାକୁ ଆଗେଇ ଆସନ୍ତି । ଗରିବ ଲୋକର ଘରେ ପୋଷଣାହାରୀ ପୁଅ କି ସ୍ୱାମୀ ମରିଗଲେ ସେମାନଙ୍କର ଯାହା କ୍ଷତି ହୁଏ ତାହା ପ୍ରକୃତରେ ଅପୂରଣୀୟ । କାରଣ କେହି ନେତା କିମ୍ବା ଶିଳ୍ପପତି କିମ୍ବା ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ମରିଗଲେ ସେ ଯାଗା ସହଜରେ ପୂରଣ କରିବା ପାଇଁ କେତେ ଲୋକ ପ୍ରତିଯୋଗୀତା ଆରମ୍ଭ କରନ୍ତି । ଆଉ ଯିଏ ମରିଯାଆନ୍ତି ତାଙ୍କ ପିଲାଛୁଆ ଅଧିକାଂଶ କ୍ଷେତ୍ରରେ ଗଡି ମରନ୍ତିନାହିଁ । ଛୋଟ ମଣିଷଟିଏ ମରିଗଲେ ତା'ର ପିଲା କବିଲାଙ୍କ ଦାୟିତ୍ୱ ନେବାପାଇଁ କ'ଣ ପ୍ରତିଦ୍ୱନ୍ଦ୍ୱିତା ହୁଏ ନେତୃତ୍ୱ ନେବାପାଇଁ ଯାହା ହୁଏ ? ମଢ ଖାଇବାକୁ ଶାଗୁଣା ମାନେ କେତେ ବେଳେ କେମିତି ଟିକେ ଖୁମ୍ପା ଖୁମ୍ପି ହୁଅନ୍ତି । କିନ୍ତୁ ପ୍ରାୟ ସବୁବେଳେ ସେମାନେ ମଧ ସହାବସ୍ଥାନ ନୀତିରେ ଆଗ୍ରହ ଦେଖାନ୍ତି ।

ବଡ ମଣିଷଟିଏ ମଲେ କିନ୍ତୁ ବହୁଲୋକ ପ୍ରକାଶ୍ୟ 'ଶୋକପ୍ରକାଶ' କରନ୍ତି । 'ସମବେଦନା' ଜଣାନ୍ତି ଜ୍ଞାତି କୁଟୁମ୍ବଙ୍କୁ । କେହି କେହି 'ଦୁଃଖରେ ଅଭିଭୂତ' ହୋଇ ପଡନ୍ତି । ଅନେକ ଲୋକ ଶୋକୋଚ୍ଛ୍ୱାସରେ ଆଉଟ ପାଉଟ ହୁଅନ୍ତି ଓ ସମ୍ବାଦପତ୍ରମାନଙ୍କରେ ବିବୃତି ଦେଇ ତାହା ସକାଳେ ଉଠି ନିଜେ ଦୁଇ ତିନିବାର ପଢି ନିଅନ୍ତି । ଯେଉଁମାନଙ୍କ ନାମ ଏମିତି ଆଉ କୋଉ ବାଟରେ ସହଜ ଉପାୟରେ ସମ୍ବାଦପତ୍ରରେ ପ୍ରକାଶ ପାଇବାର ସୁଯୋଗ ନଥାଏ ସେମାନେ ବଡ ମଣିଷଟିଏ ଉର୍ଦ୍ଧ୍ୱକୁ ଗଲେ ଶୋକପ୍ରକାଶକୁ ମାଧମ କରି ଖବରକାଗଜକୁ ଦଉଡା ଧପଡା କରନ୍ତି । ଦେଶର ଅଭାବ ପୂରଣ ହେବନାହିଁ ଚିନ୍ତା କ'ଣ ପ୍ରକୃତରେ ଘାରୁଥାଏ ? ନିଜକୁ ଲୋକ ଲୋଚନରେ ରଖିବାପାଇଁ ତାହା ଏକ ଅପୂର୍ବ ସୁଯୋଗ । ଆଉ କିଛି ତଳିଆଲୋକେ ସ୍ମୃତିରକ୍ଷା ପାଇଁ ସ୍ମରଣିକା ଆଦି ବାହାର କରନ୍ତି । ବିଜ୍ଞାପନ ସଂଗ୍ରହ କରି ହାତ ଚିକ୍କଣ କରନ୍ତି ।

କିନ୍ତୁ କେହି ମରିଗଲେ କଣ ଯେତେ ଲୋକଙ୍କର ସମ୍ବାଦପତ୍ରରେ ଶୋକପ୍ରକାଶ ପାଏ ସେମାନେ ସତରେ ଏତେ ବେଶୀ ଘାରି ହେଉଥାନ୍ତି । ବାପମଲେ ସବୁ ପୁଅ ସମାନ ଦୁଃଖ ପାଂଉନାହାନ୍ତି । ତେଣୁ 'ସମବେଦନା' କେବଳ ଗୋଟାଏ ଶବ୍ଦାଡମ୍ବର ମାତ୍ର । ଆତ୍ମାର ସଦଗତି କାମନା କରିଦେଲେ କଣ ଆତ୍ମାର ବଦଗତିକୁ ରୋକିଦେଇ ହେବ ?

ଯଦି ପ୍ରତିଦିନ କେହି ବଡ ମଣିଷ ମରୁଥାନ୍ତେ ତେବେ କୁସୁମ ପରଶେ ପସରାମେଲା ନୀତି କାଏମ କରିବାକୁ ଗୁଡାଏ ଲୋକ ଏମିତି ଠେଲାପେଲା ଲଗାଉଥାନ୍ତେ । ସ୍ତମ୍ଭ ସ୍ତମ୍ଭ ଧରିଶୋକପ୍ରକାଶ ଓ ଲମ୍ଫଳମ୍ଫ ଭାଷଣ ଗୁଡାକ ଯଦି ସଦଗତିପଥର ପଥିକ ନିଜେ ଶୁଣିପାରୁଥାନ୍ତେ ତେବେ ଏ କସରତର କିଛି ମାନେ ଥାଆନ୍ତା ।

ତଥାପି ଗୋଟାଏ ବିଧିତ । ଚାଲିଥାଉ ଏମିତି ।

(ତା୨୩.୧୨.୧୯୮୩ରିଖ)





Digitized by srujanika@gmail.com

# ଶିକ୍ଷା, ସଂଯମ ଓ ଶୃଙ୍ଖଳା

ଆଗେ ଲୋକେ ପାରିବାରିକ ନିମନ୍ତ୍ରଣ କରୁଥିଲେ 'ସପରିବାରେ' ଓ 'ସବାନ୍ଧବେ' ଖାଇବାକୁ ଆସିବାକୁ । ଏବେ ନିମନ୍ତ୍ରଣ ପତ୍ରରେ ଅଧିକାଂଶ ସ୍ଥଳରେ ଲେଖାଯାଉଛି 'ଆପଣ' ଆସିବେ । କେବଳ ଲଫାପା ଉପରେ ଶ୍ରୀମତୀ ଓ ଶ୍ରୀ ଅମୁକ ବୋଲି ଲେଖାଯାଉଛି ।

ଏବେ ମୋର ଜଣେ ବନ୍ଧୁଙ୍କ ଘରକୁ ମୁଁ ଓ ମୋର ଧର୍ମପତ୍ନୀ ସନ୍ଧ୍ୟାବେଳେ ବୁଲି ଯାଇଥିଲୁ । କିଛି ସମୟ ପରେ ବନ୍ଧୁ ଓ ବନ୍ଧୁପତ୍ନୀ ବେଶଭୂଷା ହେବା ଆରମ୍ଭ କଲେ । କାରଣ କଣ ବୁଝୁ ବୁଝୁ ସେମାନଙ୍କୁ ପଡ଼ିଶାରେ ଥିବା ଜଣେ ବନ୍ଧୁ ରାତ୍ରି ଭୋଜନ ଅର୍ଥାତ୍ ଡିନରକୁ ଡାକିଛନ୍ତି ବୋଲି ଜଣାପଡ଼ିଲା । ସେମାନଙ୍କ ବେଶଭୂଷା ଦେଖି ସେମାନଙ୍କର ପାଞ୍ଚବର୍ଷର ପୁଅ ବି ବେଶ ପୋଷାକ ପିନ୍ଧି ବାହାରିଲା । ସେ ପବ୍ଲିକ ସ୍କୁଲକୁ ଗଲାଣି । ତେଣୁ ଡିନରରେ ଚିକେନ କୁଲଫି ନଇଲେ ଆଇସକ୍ରିମ, ସୁପ୍, ପୁଡ଼ିଂ ଇତ୍ୟାଦି ବଢିଆ ବଢିଆ ଖାଦ୍ୟ ମିଳେ ଏକଥାଏ ପିଲାମାନେ ଜାଣିଲେଣି ।

କିନ୍ତୁ ବନ୍ଧୁ କହିଲେ ''ଆରେ ସେ ତ ସ୍ପେସିଫିକାଲି କହିନାହାନ୍ତି ଟୁଟୁକୁ ନେବାକୁ । ଟୁଟୁ ନଯାଉ ତେବେ ।''

ବନ୍ଧୁପତ୍ନୀ ପୁଅକୁ କହି ଦେଇଛନ୍ତି ''ଆଜି ଡିନର ଖାଇବାକୁ ଯିବୁ ।'' ବର୍ତ୍ତମାନ ତା'କୁ ସମ୍ଭାଳିବ କିଏ ।

ବନ୍ଧୁ ପୁଅକୁ ନାଲି ଆଖି ଦେଖାଇଲେ । ପୁଅ ବାଧ୍ୟ ହୋଇ ଘରେ ସା'ନ୍ତଙ୍କ ପାଖରେ ରହିଲା । ବାପା ମା ଚାଲିଗଲା ପରେ ଟୁଟୁ କିଛି ସମୟ ପାଇଁ ଚୁପ୍ ରହିଲା । ତା'ପରେ ସା'ନ୍ତମାଙ୍କୁ କହିଲା 'ମା ! ମୁଁ ଯିବି ବାପାଙ୍କ ପାଖକୁ ।

ମା ବୁଝାଇଲେ । ସେ ବୁଝିଲାନି । ଆହୁରି ପାଟି କଲା । ଆମେ ବୁଝାଇଲୁ । ସେ କାନ୍ଦିଲା । ଘର ଆର ପାଖରେ ବାପାମା ଡିନର ଖାଇବେ । ସେ କାହିଁକି ରୁଟି ଆଉ ଆଳୁଭଜା ଖାଇବ ?

ମା କହିଲେ ଘରେ ଅଣ୍ଡା ଅଛି । ମାଛ ଅଛି । ତା' ପାଇଁ ଭାଜିଦେବେ । ଫ୍ରିଜ୍‌ରେ ପୁଡିଂ ବି ଅଛି ।

କିନ୍ତୁ ଟୁଟୁ ଜିଦ କଲା 'କାହିଁକି ସେମାନେ ଚିକେନ ଖାଇବେ ଆଉ କେତେ ଭଲ ଜିନିଷ ଖାଇବେ । ମୁଁ ରୁଟି ଖାଇବିନି ।'

ଆମ ବୁଝାଇଲୁ ''ଚାଲ ଆମ ଘରକୁ ଯିବା । ଆମ ଘରେ ଚିକେନ ଅଛି ଖାଇବ ।

''ନା ମୁଁ ତାଙ୍କ ଘରକୁ ଯିବି । ମା ବଡ଼ ବ୍ୟସ୍ତ ହେଲେ । ପିଲାଟା ବୁଝୁନି । ଅଝଟ ହେଉଛି । ମୁଁ ଭାବୁଥିଲି । ଯେ ପିଲାମାନେ ଏବେ କାହିଁକି ଏତେ ଅମାନିଆ ହେଉଛନ୍ତି । ସଂଯମ ଶୃଙ୍ଖଳା ବାପ ମାଙ୍କର ନାହିଁ । ଶିକ୍ଷକ ଶିକ୍ଷୟିତ୍ରୀଙ୍କର କୌଣସି ମୂଲ୍ୟବୋଧ ପ୍ରତି ଖାତିର ନାହିଁ । ଆମ ବାପାମା ଯେମିତି ପିଲାଦିନୁ ସମୟ ଓ ଧୈର୍ଯ୍ୟ ଖର୍ଚ୍ଚ କରି ଆମକୁ ତିଆରି କରୁଥିଲେ ଶିଷ୍ଟାଚାର ଓ ନୀତି ଆଦି ଶିଖାଉଥିଲେ ସେ କଥା ଆଜି କାହିଁ ? ପିଲାମାନେ ଆଉ କେତେଦିନରେ ଡିନର ଟେବୁଲରେ ଠିପିଖୋଲି ବାପାମାଙ୍କୁ ଡ୍ରିଙ୍କ ଅଫର କରିବେ ଏକଥା ମଧ ଘଟିବାକୁ ଆଉ ବେଶୀ ଦିନ ନାହିଁ ।

(ତା୧୩.୦୯.୧୯୮୩ରିଖ)





Digitized by srujanika@gmail.com

# ପୁଣି ହବାକୁ ମନ

ଦିନେ ରାସ୍ତାରେ ଯାଉ ଯାଉ ଦେଖାଗଲା ଗାଁ ତଳି ବଜାରର ଶେଷ ମୁଣ୍ଡରେ ଗୋଟାଏ କାଠ କାବିନ ପାନ ଦୋକାନ ସାମନାରେ ବେଞ୍ଚ ଉପରେ ଚେକାମାରି ପକାଇ ଜଣେ ଖଦଡ଼ ଧୋତି ପଞ୍ଜାବୀ ପିନ୍ଧା ଭଦ୍ରଲୋକ ବସିଛନ୍ତି । ଦ୍ୱିତୀୟ ଚାହାଣୀରେ ଦେଖିଲା ବେଳକୁ ସେ ଜଣେ ପୂର୍ବତନ ମନ୍ତ୍ରୀ । ମାନେ ଖାଲି ସାଧାରଣିଆ ପୂର୍ବତନ ମନ୍ତ୍ରୀ ନୁହନ୍ତି । ସେ ତାଙ୍କ ଜମାନାରେ ଭଲ ଟାଣୁଆ ମନ୍ତ୍ରୀ ଥିଲେ । ଟାଣୁଆମାନେ ପ୍ରଭାବଶାଳୀ ମନ୍ତ୍ରୀ ବୋଲି ତାଙ୍କର ଖ୍ୟାତି ଥିଲା ।

ହଠାତ୍ ପାନ ଦୋକାନ ଆଗରେ ଏପରି ଏକଲା କାହିଁକି ବସିଛନ୍ତି ? ଆମେ ଗାଡିରୁ ଓହ୍ଲାଇ ବୁଝିବାକୁ ଗଲୁ କଥାଟା କଣ ? ଆମକୁ ଦେଖି ସେ କିଞ୍ଚିତ ଆଶ୍ଚର୍ଯ୍ୟର ସହିତ ଖୁସି ହେଲାଭଳି ଜଣା ପଡ଼ିଲେ । ପ୍ରକୃତରେ ଖୁସି ହେଲେ କି ଅଭିନୟ କଲେ ସେ କେବଳ କହିପାରନ୍ତେ ।

କଥାରୁ ବୁଝାପଡିଲା ଯେ ସେ ପଦଯାତ୍ରା କରୁଛନ୍ତି । ତାଙ୍କ ଦଳର ନେତା ଚନ୍ଦ୍ରଶେଖର କନ୍ୟା କୁମାରୀଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଭାରତ ଯାତ୍ରା କଲାପରେ ପଦଯାତ୍ରାର ରାଜନୈତିକ ମୂଲ୍ୟ ବଢିଛି । ନଇଲେ ଦେଶର ୭୦ ରୁ ୮୦ଭାଗ ଲୋକ ତ ଜୀବନସାରା ଚାଲୁଛନ୍ତି ନିଜ ଗୋଡ଼ରେ । ଚାଲିବା ପାଇଁ ତ ଭଗବାନ ଗୋଡ଼ ଦେଇଛନ୍ତି ମଣିଷକୁ । ମଣିଷଟାକୁ ମାଂସ ଆଉ ଚମଡାର ଏମିତି ଗୋଡ଼ ଦିଟା ଦେଇଛନ୍ତି ଯେ, ସେଗୁଡାକ ଘୋରି ନହୋଇ ମଣିଷ ଯେତେ ଦିନ ଯାଏ ବଞ୍ଚିବ ସେ ଯାଏ ଚାଲିବ । ଭଗବାନ ନଇଲେ ମଣିଷର ନାକ, ଆଖି, ପାଟି, ପେଟ, ହାତ, କାନ, ମୁଣ୍ଡ ଆଦି ଏତେ ସବୁ ଯନ୍ତ୍ର ଖଞ୍ଜିଲେ, କଣ ପାଦତଳେ ଚକ ଦିଟାରିଟା ଛୋଟିଆ କରି ଖଞ୍ଜିବାକୁ ତାଙ୍କୁ ବଳାଇ ପଡିଥାନ୍ତା । ମଣିଷ ସିନା ପାଦରେ ନଚାଲି ଚକ ଖୋଜୁଛି । ଏହି ଚକଲଗା ମଣିଷଗୁଡାକ ଏବେ 'ପଦାଯାତ୍ରା' କରି ଯେପରି କଣ ଗୋଟାଏ ଅସାଧାରଣ କାମ କରୁଛନ୍ତି ଏକଥା ଲୋକଙ୍କ ଆଗରେ ପ୍ରମାଣିତ କରିବାକୁ ଚାହୁଁଛନ୍ତି ।

କିନ୍ତୁ ଗୋଟାଏ କଥା ଅଡୁଆ ଅଡୁଆ ଲାଗିଲା । ପୂର୍ବତନ ମନ୍ତ୍ରୀ ପୁଣି ହୁଏତ ଆଗିଲା ଭୋଟରେ ଜିତି ମନ୍ତ୍ରୀ ହେବେ । ତାଙ୍କୁ ଯିଏ ହରାଇଛନ୍ତି ସେ ଏବେ ମନ୍ତ୍ରୀ । ଖୁବ୍ ପାରିଲା ବାଲା ମନ୍ତ୍ରୀ । କିନ୍ତୁ ପଦ ଯାତ୍ରା ପାଇଁ ଆଉ ବେଶୀ କେହି ସହଯୋଗୀ ଦେଖାଗଲେ ନାହିଁ । ତାଙ୍କର ପୂର୍ବତନ ସହକର୍ମୀ ବା କର୍ମୀମାନେ ଉଭାନ ହୋଇଗଲେଣି । ଜଣେ ଯୁବକ ଯେ କି ତାଙ୍କ ପାଖ ଲୋକ ଏବଂ ସେ ମନ୍ତ୍ରୀ ଥିଲା କାଳରେ କିଛି ଫାୟଦା ଉଠାଇ ନାହିଁ ସେ କେବଳ ସେଠାରେ ଉପସ୍ଥିତ ଥିଲେ । ଆମକୁ ଦେଖି ଯୁବକ ହସିଲେ । ଅର୍ଥ ପୂର୍ଣ୍ଣ ହସ ।

ମନ୍ତ୍ରୀ ହେବାରେ ଗୋଟାଏ ମାଦକତା ଅଛି ନିଶ୍ଚୟ । ଯେତେ ସବୁ ନିଶା ଦ୍ରବ୍ୟ ଅଛି ଦୁନିଆରେ ସବୁ ମିଶାଇ ଭୁଞ୍ଜିଲେ ଯେତେ ନିଶା ହୁଏ ତାଠୁ ଶହେଗୁଣରୁ ବି ବେଶୀ ନିଶା କ୍ଷମତା ଲାଭରେ । କ୍ଷମତା ଲୋଭରେ ଚକଲଗା ମଣିଷ ମଧ୍ୟ ନିଜର ଅନିଚ୍ଛା ସତ୍ତ୍ୱେ ପାଦରେ ପାଣି କାଦୁଅରେ ବିଲ ବାଡ଼ିରେ କୃତ୍ରିମ ହସଟାଏ ମୁହଁରେ ଲଗାଇ ଲୋକସେବା କାମରେ (ବା ନାମରେ) ସବୁ ଲଜ୍ଜ୍ୟା ପରିତ୍ୟାଗ କରି ନିଜ ଗୋଡ଼ରେ ଚାଲିବାକୁ ଆରମ୍ଭ କରେ । ସେ ଚାଲିବାକୁ ଗୋଟାଏ ଐତିହାସିକ ଘଟଣା ବୋଲି



Digitized by srujanika@gmail.com

ମନେ କରି କିମ୍ବା ବିଚାରି କରି ଖବରକାଗଜମାନଙ୍କରେ ସମ୍ବାଦ କରି ଛାପିବାକୁ ଚାହେଁ । ଖବର ଛାପା ହେଲେ ତାକୁ ପଢି ଆତ୍ମ ପ୍ରସାଦ ଲାଭ କରିବା ସାଙ୍ଗେ ସାଙ୍ଗେ ଆଗାମୀ କ୍ଷମତାର ସ୍ୱପ୍ନ ଦେଖେ ।

ରାଜନୀତି ଗୋଟାଏ ନାଟୁଆଙ୍କ କାମ ହୋଇଗଲାଣି । ଅପେରା ପାର୍ଟି ପରି ଏ ପାର୍ଟିଗୁଡାକ ଦଳ ଦଳ ହୋଇ ଲୋକଙ୍କ ପାଇଁ ସବୁ ଅଭିନୟ କରିଯାଉଛନ୍ତି । ତାରପୁର ଯାତ୍ରା ପାର୍ଟି ଓ ସାହାଣି ଅପେରା ରାଜାରାଣୀ ଓ ବିଦୁଷକ ଆଉ ଏ ପାର୍ଟିର ନାଟୁଆଙ୍କ ଭିତରେ ଫରକ କ'ଣ ସେ କଥା ଲୋକେ କଣ ଜାଣିଛନ୍ତି ।

(ତା୨୪.୧୦.୧୯୮୩ରିଖ)



# କାହାର 'ହୁକୁମ'କୁ ମାନିବ ?

ଆଧୁନିକ ଜୀବନରେ ମଣିଷ ଯେତିକି ଆଗଉଛି ସେତିକି ସେ ଅନାଶ୍ରୟ ଏବଂ ଅସହାୟ ମନେ କରୁଛି । ଚିକିତ୍ସା ବିଜ୍ଞାନ ଯେତିକି ଶକ୍ତିଶାଳୀ ହେଉଛି ଶକ୍ତିଶାଳୀ ଔଷଧର ବ୍ୟବହାର ମଣିଷ ଶରୀରର ସବୁ ତନ୍ତ୍ରୀକୁ ସେତିକି ଦୁର୍ବଳ କରିବାରେ ଲାଗିଛି ।

ଜଣେ ଭଦ୍ରଲୋକଙ୍କ ଝିଅର 'ଆଲେର୍ଜି' ହେଉଛି । ବହୁଦିନ ଚିକିତ୍ସା ପରେ ଆରୋଗ୍ୟ ହେଉ ନାହିଁ । ଆଲେର୍ଜି କାରଣ ଜଣାପଡୁନାହିଁ । ଡାକ୍ତରମାନେ କହୁଛନ୍ତି ଯେ ଆଲେର୍ଜିର କାରଣ ସୂର୍ଯ୍ୟକିରଣଠାରୁ ଆରମ୍ଭ କରି ଲାଉ ଏବଂ ଅଣ୍ଡା ଖାଇବା ପର୍ଯ୍ୟନ୍ତ ମଧ ହୋଇପାରେ । କେମିତି ନିର୍ଣ୍ଣୟ କରାଯିବ ଆଲେର୍ଜିର କାରଣ । ତେଣୁ ରୋଗର ଜଡ଼ ମାରିବା ପାଇଁ ଔଷଧ ଦିଆଯାଇପାରୁନି । ଉପସର୍ଗକୁ ଦେଖି ଔଷଧ ଦିଅ । ସେଥିରେ ଫଳ ହେଉନାହିଁ ।

ଭଦ୍ରଲୋକଙ୍କ ବାପାଙ୍କୁ କିଏ କହିଲା 'ମୋର ପୁଅର ସେମିତି ଆଲେର୍ଜି ହେଉଥିଲା । ମୁଁ ବହୁତ ପଇସାପତ୍ର ଖର୍ଚ୍ଚ କରି ନିରାଶ ହେଲି । ଶେଷରେ ବିରୂପା ନଦୀ କୂଳରେ ବସିଥିବା କେହି ଜଣେ ସାଧକଙ୍କ ଠାରୁ ହୁକୁମ ଔଷଧ ଆଣି ଖାଇବାରୁ ଭଲ ହେଲା, ଏହା ସତ୍ୟ ହୋଇପାରେ । କାହାର ଧୈର୍ଯ୍ୟ କିମ୍ବା ସମୟ ଅଛି ଏହିସବୁ କଥାର ସତ୍ୟତାକୁ ଅନୁସନ୍ଧାନ କରିବାକୁ ।

ଭଦ୍ରଲୋକଙ୍କ ବାପା ନିଜ ନାତୁଣୀ ପାଇଁ ସେହି ହୁକୁମ ଔଷଧ ଆଣି ଖୁଆଇ ଦେଲେ ।'ହୁକୁମ' ଔଷଧ ଖାଇବା ବେଳକୁ ନାତୁଣୀକୁ ଜର ଆସିଲାଣି । ଜର ୧୦୪ ଡିଗ୍ରୀ ଦୁଇଦିନ ରହିଲା ପରେ ପୁଣି ଡାକ୍ତରୀ ଔଷଧ ଖାଇବାକୁ ପଡ଼ିଲା । ଏବେ ଜର ପାଇଁ ଡାକ୍ତରୀ ଔଷଧ ଖାଇବାକୁ ପଡୁଛି । ଆଲେର୍ଜି ପାଇଁ 'ହୁକୁମ' ଔଷଧ ଖାଇବାକୁ ମଧ ପଡିବ ।

ଏହି ହେଲା ଭାରତୀୟ ଜୀବନର ଦ୍ୱନ୍ଦ୍ୱ । ନୂଆ ଉପରେ ଆସ୍ଥା ରଖି ଫଳ ମିଳୁନାହିଁ । ପୁରୁଣା ଜିନିଷ ଉପରେ ବିଶ୍ୱାସ ନାହିଁ ।

(ତା୦୮.୦୫.୧୯୮୭ରିଖ)





Digitized by srujanika@gmail.com

# ରାମବାବୁଙ୍କ ସଚ୍ଚୋଟପଣିଆ

ରାମବାବୁ ଜଣେ ପାରିବାର ଲୋକ । ସହଜ ଉପାୟରେ କିପରି ଭଲ ରୋଜଗାର କରିବାକୁ ହୁଏ, ତାହା ତାଙ୍କୁ ମାଲୁମ । ଥରେ ବାତ୍ୟା ଯୋଗୁ ସବୁ ଫସଲ ଗୋଟାଏ ଅଞ୍ଚଳରେ ଲୁଣା ମାଡ଼ି ନଷ୍ଟ ହୋଇଗଲା । ଲୋକଙ୍କ ପାଇଁ କାଳ ପଡ଼ିଗଲା, ସରକାର ଚାଉଳ ଯୋଗେଇ ପାରିଲେନି । ଲୋକେ ଦୂର ଅଞ୍ଚଳରୁ ଧାନ କିଣି ଚାଉଳ କୁଟି ଖାଇଲେ ।

ରାମବାବୁଙ୍କର ଗୋଟିଏ ଧାନକଳ ଥିଲା । ତାଙ୍କ ଗାଁରେ ଓ ପାଖ ଗାଁମାନଙ୍କରେ ଗୁଡ଼ାଏ ଧାନକଳ ଥିଲା । ତେଣୁ ରାମବାବୁ ନିଜ କଳରୁ ବେଶୀ ଲାଭ କରିପାରୁ ନଥିଲେ । ବେଶୀ ଲାଭ ଆଶାରେ ବାତ୍ୟା ବିଧ୍ୱସ୍ତ ଅଞ୍ଚଳକୁ କଳଟି ଉଠାଇ ନେଇ ଧାନ କୁଟିବା ଆରମ୍ଭ କଲେ । ରାମବାବୁ ଟିକେ ସେତେ ସଚ୍ଚୋଟ ଲୋକ ନୁହନ୍ତି । ଧାନ କୁଟିବା ପାଇଁ ନିଜ ଅଞ୍ଚଳ ଅପେକ୍ଷା ଅଧିକା ପଇସା ନେଇ ମଧ୍ୟ ତାଙ୍କ ମନ ସନ୍ତୁଷ୍ଟ ହେଲାନାହିଁ । ସେ କଳ ପକାଇବା ବେଳେ ମେସିନ ତଳେ ଏକ ବିରାଟ କୁଣ୍ଡ ତିଆରି କରିଥିଲେ । ଧାନକଳ ଚଳେଇଲା ବେଳେ କଳ ଭିତରୁ ସେ କୁଣ୍ଡ ଭିତରକୁ ବେଶ୍ କିଛି କୁଟା ଧାନ ଗଳିପଡେ । ଶତକଡ଼ା ୧୦ରୁ ୧୫ ଭାଗ ଚାଉଳ ଓ କୁଣ୍ଡା ରାମବାବୁଙ୍କ ଭାଗରେ ପଡେ ।

ଲୋକେ ଜାଣିଛନ୍ତି ଯେ, ଗୌଣିଏ ଧାନରୁ କେତେ ଚାଉଳ ବାହାରିବ । କଳରେ ଧାନ କୁଟିଲେ ସେମାନଙ୍କର ଚାଉଳ କମିଲା, କିନ୍ତୁ ଉପାୟ ନାହିଁ । ମନେ ମନେ ନଚେତ୍ ନିଜ ଭିତରେ ଭୁଟଭାଟ ହେଲେ । ସେ ଅଂଚଳରେ ଜଣେ ଅଧା କଲେଜ ପଢୁଆ ଟୋକା ଗାଁରେ ରହି ରାଜନୀତି ଆରମ୍ଭ କରିଥାଏ । କମ୍ୟୁନିଷ୍ଟ ଛାତ୍ର ସଂଗଠନର ସଭ୍ୟ ଥିଲା ବୋଲି ନିଜକୁ ବିପ୍ଳବୀ ଭାବୁଥାଏ । ତା' କାନକୁ ଏକଥା ଗଲାମାତ୍ରେ ସେ ଭାବିଲା ଏ ଗୋଟାଏ ଅପୂର୍ବ ସୁଯୋଗ । ରାମବାବୁଙ୍କ ଧାନଚୋରି ତଦନ୍ତ ପାଇଁ ଏକ ନାଗରିକ କମିଟି ଗଠନ କରାଗଲା । ଲୋକ ପଠାଗଲେ ରାମବାବୁଙ୍କୁ ଡକାଇବା ପାଇଁ ।

''ଆପଣଙ୍କୁ ନାଗରିକ କମିଟି ଡକାଇଛନ୍ତି'' ଶୁଣି ରାମବାବୁ ଜାଣିଲେ ଯେ ତାଙ୍କର ଧାନ ଚୋରି ସମ୍ପର୍କରେ ନିଶ୍ଚୟ କିଛି ଗୋଟାଏ ଗଣ୍ଡଗୋଳ ହେବାକୁ ଯାଉଛି । କାରଣ ଆଗରୁ ଏ ବିଷୟରେ ସେ ଟିକେ ଖବର ପାଇଥିଲେ । ତାଙ୍କ ଜୀବନରେ ଏହିପରି ସଂକଟ ବହୁବାର ଆସିଛି ଏବଂ ସେ କିଛିନା କିଛି ବାଟ ବାହାର କରିଛନ୍ତି ।

ନାଗରିକ କମିଟିରେ ରାମବାବୁଙ୍କୁ ତାଙ୍କ କଳରେ ଧାନ ମାରି ନେଉଛନ୍ତି ବୋଲି ଅଭିଯୁକ୍ତ କରାଗଲା । ରାମବାବୁ ସଫେଇଦେଲେ ଯେ ସେ ନିର୍ଦ୍ଦୋଷ । ନାଗରିକ କମିଟି ଚାହିଁଲେ ସେମାନଙ୍କ ମଧ୍ୟରୁ ଲୋକ ପଠାନ୍ତୁ । ଲୋକମାନେ ଧାନ ଆଣନ୍ତୁ କୁଟିବାକୁ । ସମସ୍ତଙ୍କ ସାମନାରେ କଳ ଚଳାଯିବ । ସମସ୍ତେ ଦେଖନ୍ତୁ ଏବଂ କହନ୍ତୁ ଯେ କେମିତି ଲୋକଙ୍କ ଧାନ ମାରିଦେଉଛନ୍ତି । ଯଦି ପ୍ରମାଣିତ ହେବ ଯେ ସେ ଧାନ ଚୋରି କରୁଛନ୍ତି, ତେବେ ନାଗରିକ କମିଟି ଯାହା ଦଣ୍ଡ ଦେବେ ସେ ସହିବାକୁ ପ୍ରସ୍ତୁତ ।

ସେଇଆ ହେଲା । ନାଗରିକ କମିଟି ତରଫରୁ କମ୍ୟୁନିଷ୍ଟ ବୋଲାଉଥିବା ଟୋକା ସମେତ ପାଞ୍ଚଜଣ ପରିଦର୍ଶକ ଯାଇ ତହିଁ ଆରଦିନ ଧାନକଳରେ ଉପସ୍ଥିତ ରହିଲେ । ନାଗରିକ କମିଟି ନିଷ୍ପତ୍ତି ଅନୁସାରେ ବହୁତ ଲୋକ ନିଜ ନିଜର ଧାନ ଆଣି କଳଠାରେ ପହଞ୍ଚିଲେ ।



Digitized by srujanika@gmail.com

ରାମବାବୁ କଳ ଚାଲୁକଲେ । ଯେତିକି ବେଗରେ କଳ ଚାଲୁହେବା କଥା ତାହାର ଦେଢ଼ଗୁଣ କି ଦୁଇଗୁଣ ବେଗରେ କଳ ଚଳାଇଲେ । ଉପର ଡାଲାରେ ଧାନ ଢାଳିଦେଲା ବେଳକୁ ଏତେ ଜୋରରେ ଭୁସ.. ଭୁସ ହୋଇ କୁଣ୍ଡାମିଶା ଚାଉଳ ତଳମୁହଁରେ ଗଦା ହୋଇଗଲା ଯେ ଲୋକେ ଏତେ ତରବରରେ ନିଜର ଚାଉଳ ଗୋଟାଇବାକୁ ଅସ୍ତବ୍ୟସ୍ତ ହୋଇଗଲେ । ରାମବାବୁ ସମସ୍ତଙ୍କ ସାମନାରେ ଧମାଧମ ଧାନ କୁଟିଲେ । କଳତଳର ଗାତକୁ ପୂର୍ବଦିନ ରାତିରେ ସଫା କରେଇ ଦେଇଥିଲେ । ତେଣୁ ସେ କୁଣ୍ଡରେ ତିନି ଚାରି କ୍ୱିଣ୍ଟାଲ ଧାନ କିମ୍ୱା ଚାଉଳ ରହିବାକୁ ଜାଗାଥିଲା । କେବଳ ଚୋରିର କଣାଟିକୁ ଟିକେ ଅଧିକ ବଢ଼ାଇ ଦେଇଥିଲେ । ସକାଳୁ ଗାଧୁଆ ବେଳ ଯାଏ କଳ ଚାଲିଲା ।

ନାଗରିକ କମିଟିର ସବ୍‌କମିଟି ଠିଆହୋଇ ଦେଖିଲେ ଯେ ରାମବାବୁ ଚୋର ନୁହନ୍ତି । ସେ ନିର୍ଦ୍ଦୋଷ ବୋଲି ଘୋଷିତ ହେଲେ । ନଈକୂଳରେ କଳଘର ଗାଁରୁ ବଡ଼ ଡଙ୍ଗା ନେଇ ରାତାରାତି ୫୮ କ୍ୱିଣ୍ଟାଲ ଧାନ ଗାଁକୁ ପଠାଇଦେଲେ । କଳ ତିନିମାସ ପରେ ନିଜ ଗାଁକୁ ଉଠାଇ ଆଣିଲେ ଓ ଆସିଲାବେଳେ ଟଙ୍କା ଆଣିଲେ ୭ ହଜାର ୬ ଶହ ।

(ତା୧୨.୦୩.୧୯୮୫ରିଖ)





Digitized by srujanika@gmail.com

# ଆଗେ ଥିଲା ଅଖା, ଏବେ ଗାମୁଛା...

ଜୀବନଟା ସାରା ବୁଲିବାକୁ ପଡ଼ିଛି । ସେଦିନ ସକାଳୁ ବାହାରିଲା ବେଳକୁ ଗାଧୁଆ ସାରି ଶୁଖାଇଥିବା ତଉଲିଆଟା ଟୋକି ଆଣିବାକୁ ଭୁଲିଗଲି । ମଫସଲରେ ଅବଶ୍ୟ ଲୋକେ ଅନ୍ୟର ଗାମୁଛା, ତଉଲିଆ ବ୍ୟବହାର କରି କାମ ଚଳାଇ ନିଅନ୍ତି । ମୁଁ କିନ୍ତୁ ଅନ୍ୟ କାହାରି ତଉଲିଆ, ଲୁଙ୍ଗି ଆଦି ବ୍ୟବହାର କରିପାରେନା । ତେଣୁ ଭାବିଲି ତଉଲିଆ ପରିବର୍ତ୍ତେ ଓଡ଼ିଶାର ଐତିହ୍ୟପୂର୍ଣ୍ଣ ଗାମୁଛାଟିଏ କିଣିବି ।

ଅର୍ଦ୍ଧସହରୀ ବଜାରରୁ ଗାମୁଛାଟିଏକିଣିବାକୁ ଚାହିଁବାରୁ ସାଙ୍ଗରେ ଥିବା ଲୋକମାନଙ୍କ ମଧ୍ୟରୁ ବିଭିନ୍ନ ଗାମୁଛାର ଉପାଦେୟତା ସମ୍ପର୍କରେ ପ୍ରଚାର ଶୁଣିଲି । କେନ୍ଦ୍ରାପଡ଼ାର ସରକାରୀ 'ବଳଦେଉଜୀ ଗାମୁଛା', ପୁରୀ ଗାମୁଛା ଓ କଲିକତି ଗାମୁଛା ମଧ୍ୟରେ ପ୍ରତିଯୋଗିତା ହୋଇ ଶେଷରେ ସାଢ଼େ ଛ' ଟଙ୍କାରେ ଚାରିହାତି ବଳଦେଉଜୀ ଗାମୁଛାର କ୍ରୟ ହେଲା । ଭଲ କମଳାରଙ୍ଗ ଦେହରେ ଦୁଇପଟରେ ଇଞ୍ଚେ ଚଉଡ଼ାର ଫୁଲଧଡ଼ି ମନକୁ ପାଇଲା । ରଙ୍ଗ ପକ୍କା ବୋଲି ଦୋକାନୀ ଓ ସାଙ୍ଗରେ ଥିବା ଲୋକ ଗ୍ୟାରେଣ୍ଟି ଦେଲେ ।

ପ୍ରଥମେ ଧୋଇଲା ବେଳକୁ ବାଲଟିରେ ରଙ୍ଗ ପାଣି ଦେଖି ମନରେ ଟିକେ ଧୋକା ଆସିଲା । ସାଙ୍ଗ ଲୋକେ ଆଶ୍ୱାସନା ଦେଲେ: 'ଆଜ୍ଞା ନୂଆ ଗାମୁଛାଟା । ଟିକେ କସ ପାଣି ଛାଡ଼ିବନି ?' କିନ୍ତୁ କସପାଣିଟି ଅନେକ ଦିନ ପର୍ଯ୍ୟନ୍ତ ଛାଡ଼ିଲାନି ।

ଦିନେ ବୁଲା ଜୀବନର ଫାନ୍ଦ ଭିତରେ ମୋର ଜଣେ ସମ୍ପର୍କୀୟଙ୍କ ଘରେ ଉଠିଥିଲି । ମୋର ପ୍ରତିଦିନ ନିଜର ଗେଞ୍ଜି, ଚଡ଼ି ଓ ଲୁଙ୍ଗି ଇତ୍ୟାଦି କାଚିବାର ଅଭ୍ୟାସ । ଗୃହକର୍ତ୍ତ୍ରୀ ମୋର ମାଈଁ ହେବେ । ସେ ଆଦେଶ ଦେଲେ ସେଗୁଡ଼ାକ ତମର କାଚିବା ଦରକାର ନାହିଁ । ପକେଇ ଦେଇ ଯାଅ । ମୁଁ କାଚି ଦେବି । ସେଦିନର ଲୁଗାକଚା ବୋଝ ଉଶ୍ୱାସ ହେଲା ଭାବି ମୁଁ ନୀରବରେ ସମ୍ମତି ଜଣାଇ ମୋ କାମରେ ବାହାରକୁ ଚାଲିଗଲି ।

ସଂଧ୍ୟା ବେଳେ କଚାଲୁଗାଗୁଡ଼ିକ ଦେଖିଲାବେଳକୁ ମୋର ଧଳାଲୁଙ୍ଗି, ଗେଞ୍ଜି ଓ ଚଡ଼ିରେ ଗାମୁଛାରୁ ଛାଡ଼ିଥିବା ବିଭିନ୍ନ ଧରଣର ଚିତ୍ର-ରଙ୍ଗ । ପାଖରେ ଗାମୁଛାଟା ଯେମିତି ମୋର ଅଙ୍ଗବାସ ସହିତ ମତେ ମିଶାଇ ଥଟ୍ଟା କରୁଛି । ମାଈଁ ଦୁଃଖିତ ହୋଇ କହିଲେ ମୁଁ ଜାଣିନି ଏ ଗାମୁଛାଟାରୁ ଏତେ ରଙ୍ଗ ଛାଡୁଛି । ମୁଁ ସାବୁନ ଦେଇ ଏକାଠି ବାଲ୍‌ଟିରେ ରଖି ଦେଇଥିଲି । କାଚିଲାବେଳକୁ ଗାମୁଛାରୁ ରଙ୍ଗସବୁ ଉଠିଗଲାଣି । ପରେ କାଚିଦେଲେ ବୋଧେ ଲୁଙ୍ଗି ହେରିକାରୁ ରଙ୍ଗ ଛାଡ଼ିଯିବ ।

ପ୍ରାୟ ଦୁଇମାସ ହେଲାଣି । ବଳଦେଉଜୀ ଗାମୁଛାରୁ ଏବେ ବି ରଙ୍ଗ ବୋହୁଛି । କେତେ ରଙ୍ଗ ସେଥିରେ ପଶିଛି କେଜାଣି । କିନ୍ତୁ ମଜାକଥା ହେଲା: ମୋ ଗେଞ୍ଜି, ଲୁଙ୍ଗି ଆଦିରୁ ସେ ଗାମୁଛାର କଚାରଙ୍ଗ ଛାଡୁନି । ବରଂ ପ୍ରତିଥର କାଚିଲା ପରେ ବେଶୀ ପକ୍‌କା ହୋଇଗଲା ପରି ଲାଗୁଛି । ତା'ଠାରୁ ଆହୁରି ମଜାକଥା ଯେ ସେ ଗାମୁଛା ବଳଦେଉଜୀ କାରଖାନାର ତିଆରି ବୋଲି ସନ୍ତକ ଭାବରେ ଯେଉଁସବୁ କଥା ଛପା ହୋଇଥିଲା, ତାହା ଏତେଥର ଧୋଇଲା ପରେ ବି ଛାଡୁନି । ଅବଶ୍ୟ ଆଗ ଅପେକ୍ଷା ଅସ୍ପଷ୍ଟ ହୋଇଗଲାଣି । କିନ୍ତୁ ସେ ନୀଳରଙ୍ଗର ଛାପାଗୁଡ଼ାକ ଗାମୁଛାର କମଳାରଙ୍ଗ ପାଣି ସହିତ ଧୋଇ ଏପର୍ଯ୍ୟନ୍ତ ଲିଭିଯାଇନି ।

ମୁଁ ଏହା ଭିତରେ ବହୁତ ଲୋକଙ୍କର ଗାମୁଛା ଦେଖି ସେଥିରୁ ରଙ୍ଗ ଛାଡୁଛି କି ନାହିଁ ବାରମ୍ବାର



Digitized by srujanika@gmail.com

ପଚାରୁଛି । କିଏ କଲିକଟି, କିଏ ପୁରୀ, କିଏ ବଡ଼ବାଗ, କିଏ ହରିଆନା, ଗାମୁଛା ସବୁ କିଣିଛନ୍ତି । ସେ ଗାମୁଛାଗୁଡ଼ିକର ଦାମ ମଧ୍ୟ ମୋ ଗାମୁଛାଠାରୁ କମ୍ । କିନ୍ତୁ ରଙ୍ଗ ପକ୍କା । ଯେ କେହି ଚାହିଁଲେ ମୋ ଗାମୁଛା ପରିଦର୍ଶନରେ ଆସିପାରନ୍ତି ।

(ତା୨୩.୦୪.୧୯୮୩ରିଖ)



# କିଏ କାହା ପାଇଁ ବଡ !

ରାକ୍ଷୀ ପୂର୍ଣ୍ଣମୀ ଦିନ ମୋ ଝିଅ ମୋ ପୁଅମାନଙ୍କ ହାତରେ ରାକ୍ଷୀ ଗୁଡିଏ ଆଣି ବାନ୍ଧିଲା । କୌଣସି ରାକ୍ଷୀର ଦାମ ତିନି ଟଙ୍କାରୁ କମ୍ ନୁହେଁ । ଭାଇମାନେ ଯେହେତୁ ସମସ୍ତେ ଭଉଣୀଠାରୁ ସାନ ସେଥିପାଇଁ ସେମାନଙ୍କୁ ଭଉଣୀକୁ କିଛି ଦବାକୁ ପଡିଲାନି ।

ଆମ ଘରେ ଗୋଟିଏ ତେଲେଙ୍ଗା ସ୍ତ୍ରୀ ଲୋକ ବାସନ ମାଜେ । ମାସକୁ ପନ୍ଦର ଟଙ୍କା ନିଏ । ସକାଳ ସଂଧ୍ୟା ଦୁଇବେଳା ସେ ଆସେ ବାସନ ମାଜିବାକୁ । ତା ପଛେ ପଛେ ତା'ର ଆଠ ଦଶବର୍ଷର ପୁଅଟିଏ । ତାର ଗୋଟିଏ ଦେଢ ବର୍ଷର ଝିଅଟିକୁ କାଖେଇ କରି ଆସେ । ମା ବାସନ ମାଜିବ । ବରାଗୁଲଗୁଲା ଦୋକାନ ପାଇଁ ଚାଉଳ ବିରି ବାଟିବ । ତେଣୁ ସାନ ପିଲାକୁ ରଖିବା ଭାର ବଡ ପୁଅ ଉପରେ । ସେ ସ୍କୁଲକୁ ଯାଏନି । କୋଉ ସ୍କୁଲକୁ ଯିବ ସେ ?

ସେ ଦିନ ଗୋଟିଏ ସୂତା ଭଳିଆ ରାକ୍ଷୀଟିଏ ଆଣି ଆମ ବାସନ ମଜାଳୀର ପୁଅଟି ମୋ ହାତରେ ବାନ୍ଧିଲା । ସେ ଭଉଣୀ ନୁହେ କି ମୁଁ ତା ଭାଇ ନୁହେଁ । ତଥାପି ରାକ୍ଷୀଟିଏ ବାନ୍ଧିଲା କାହିଁକି ? ବକସିସ ପାଇବା ଆଶାରେ ନିଶ୍ଚୟ । ମୁଁ ତା'କୁ ଦୁଇଟଙ୍କିଆ ନୋଟ ଖଣ୍ଡିଏ ଦେଲି । ସେ ନେଇ ରଖିଥିଲା ତା ଛିଣ୍ଡା ପକେଟରେ । ତା' ମା ପାଟି କଲା । 'ମତେ ଦେ' ବୋଲି କହିଲା । ବାଧ ହୋଇ ପିଲାଟି ଗୁଁ ଗୁଁ ହୋଇ ମା'କୁ ଟଙ୍କା ଦେଇଦେଲା । ମା' ତାକୁ ଅଣ୍ଟାରେ ମାରିଲା ।

ତା'ପରେ ସେ ପିଲାଟି ଆମର ରୋଷେୟା ଚାକର ପିଲାଟି ହାତରେ ଆଉ ଗୋଟିଏ ସେମିତି ରାକ୍ଷୀ ବାନ୍ଧିବାକୁ ଯାଉଥିଲା । ଆମ ରୋଷେୟା ପିଲାଟିର ଜମିବାଡି କିଛି ନାହିଁ । ଘରେ ବିଧବା ମା ଓ ସ୍ତ୍ରୀକୁ ପୋଷିବାକୁ ପଡୁଛି । ଏଠୁ କେତେଟା ଟଙ୍କା ସେ ପଠାଉଛି ସେମାନେ ସେଇଥିରେ ଚଳୁଥିବେ ।

ତେଲେଙ୍ଗା ପିଲାର ରାକ୍ଷୀ ଦେଖି ରୋଷେୟା ପିଲା ଡରିଲା । ତା'କୁ ପଇସା ଦେବାକୁ ପଡିବ । ପିଲାଟି କିନ୍ତୁ ରାକ୍ଷୀ ବାନ୍ଧିବାକୁ ଜିଗର କରୁଛି । ତା' ଆଖିରେ ଆମର ଚାକର ପିଲାଟି ମଧ ବାବୁ । କାରଣ ସେ ଆମ ସହିତ ସମାନ ଖାଉଛି । ପ୍ୟାଣ୍ଟ, ସାର୍ଟ, ଯୋତା ପିନ୍ଧି ମୁଣ୍ଡ ଚିକ୍କଣ କୁଣ୍ଡେଇ ସାଇକେଲ ନେଇ ଇଆଡେ ସିଆଡେ ବାହାରି ଯାଉଛି । ମୋ ଘରଣୀ ତା'କୁ ବାରଣ ନକରିଥିଲେ ପିଲାଟି ଆମ ଚାକର ବେକରେ ହାତରେ କିନ୍ତୁ ଘଣ୍ଟିଟିଏ ବାନ୍ଧି ଦେଇଥାନ୍ତା ସେ ଦିନ ।

(ତା୦୯.୦୯.୧୯୮୦ରିଖ)





Digitized by srujanika@gmail.com

# ଦୁର୍ଲଭ ଶୌଚାଳୟରେ ଦୂଷଣ ନିଷ୍କାସନ

ଯାଜପୁର ଅଞ୍ଚଳରୁ ଜଣେ ଛୋଟକାଟିଆ ଦୋକାନୀ କଟକ ଆସି ତାଙ୍କର ଗାଁ ଅଞ୍ଚଳର ଜଣେ ସରକାରୀ କର୍ମଚାରୀଙ୍କ ପାଖରେ ରହିଥିଲେ । ସେ ଦିନ ସନ୍ଧ୍ୟା ବେଳେ କଟକରେ କାମ କରୁଥିବା ସରକାରୀ କର୍ମଚାରୀ ଓ ଯାଜପୁର ଅଞ୍ଚଳର ସେ ଦୋକାନୀ ଲିଙ୍କ୍‌ରୋଡ଼ରେ କଣ କାମରେ ଯାଉଥିବା ବେଳେ ଦୋକାନୀଙ୍କୁ ବଡ଼ 'ତଲବ' ମାଡ଼ିଲା । ଏହି ତଲବକୁ ତ ଆକବର ବାଦଶା' ମଧ୍ୟ ଖାତିର କରନ୍ତି ବୋଲି ଜଣାଅଛି । ସେ ବ୍ୟସ୍ତ ହେବାରୁ ତାଙ୍କ ବନ୍ଧୁ ସରକାରୀ କର୍ମଚାରୀ ତାଙ୍କୁ ନଗର ଉନ୍ନୟନ ମନ୍ତ୍ରୀ କର୍ତ୍ତୃକ ଉଦ୍‌ଘାଟିତ ସୁଲଭ ଶୌଚାଳୟକୁ ନେଇଗଲେ ।

ତରବରରେ ଗୋଟାଏ ଫୁଟା ମଗରେ ମଗେ ପାଣି ଧରି ଯାଜପୁରର ସେ ଦୋକାନୀ ମହାଶୟ ଗୋଟାଏ ପାଇଖାନା ଭିତରକୁ ପଶି କବାଟ ବନ୍ଦ କଲେ । ଭିତରଟା କିଟି କିଟି ଅନ୍ଧାର କାରଣ ମଳମୂତ୍ର ନିଷ୍କାସନ କରୁଥିବା ଲୋକେ ବଲ୍‌ବ ଚୋରାଇ ନେଉଛନ୍ତି । ପାଇଖାନା ଭିତରେ ପାଣି ଟ୍ୟାପ ନାହିଁ, କାରଣ ଲୋକେ ଟ୍ୟାପ୍ ଖୋଲା ଛାଡ଼ି ଚାଲିଯିବେ ।

ସରକାରୀ କର୍ମଚାରୀ ଭଦ୍ର ଲୋକ ବନ୍ଧୁଙ୍କ ପାଇଁ ଶୌଚାଳୟ ବାହାରେ ଅପେକ୍ଷା କରି ରହିଲେ । ଏତେ ଜୋରରେ ତଲବ ମାଡୁଥିବା ବନ୍ଧୁ ବହୁସମୟ ପର୍ଯ୍ୟନ୍ତ ପାଇଖାନାରୁ ବାହାରିଲେ ନାହିଁ । ଅଧିକ ବିଳମ୍ବ ହେବାରୁ ବନ୍ଧୁ ଯାଇ ବାହାରୁ ଡାକ ମାରିଲେ ''କିହୋ ! କଣ ଏତେ ସମୟ ସେଠି କରୁଛ ?''

ଦୋକାନୀ ବନ୍ଧୁ ଭିତରୁ କରୁଣ ସ୍ୱରରେ କହିଲେ ''ମୁଁ ଏଠି ଫସିଯାଇଛି ।''

''ମାନେ ?''

''ପାଇଖାନା ଭିତରେ ମୋ ଗୋଡ଼ଟା ପଶିଯାଇଛି । ମୁଁ ଏଠି ବାହାରି ପାରୁନାହିଁ । କବାଟ ପର୍ଯ୍ୟନ୍ତ ହାତ ପାଉନାହିଁ ଖୋଲିବାକୁ ।'' ଆର୍ତ୍ତ କଣ୍ଠରେ ଦୋକାନୀ ଉତ୍ତର ଦେଲେ । ବିଚାରା ନିଜ ହାତରେ ନିଜେ ବନ୍ଦୀ ।

ବହୁତ କଷ୍ଟରେ କବାଟ ଖୋଲା ହେଲା ବେଳକୁ ଯାହା ଜଣାପଡ଼ିଲା ତାହା ହେଲା ଏଇଆ:

ଦୋକାନୀ ମହାଶୟ କବାଟ ବନ୍ଦକଲା ପରେ ପାଇଖାନା ଉପରେ ଆଗରୁ କେହି ତ୍ୟାଗ କରିଥିବା ମଳ ଉପରେ ତାଙ୍କର ଗୋଡ଼ଟି ପଡ଼ି ଖସିଗଲା ଝାଡ଼ା ପ୍ୟାନ ଭିତରକୁ । ସେଠାରେ ମଧ୍ୟ ଥାକେ ବିଷ୍ଠା । ପ୍ୟାନଟି ଭଙ୍ଗା । ମହାଶୟଙ୍କ ଗୋଡ଼ଟି କଟି ରକ୍ତ ପିଚ୍‌କା ମାରୁଛି । ଏଣେ ଗୋଡ଼ଟି ସେହି ବିଷ୍ଠାଭରା ଭଙ୍ଗା ପ୍ୟାନ୍ ଭିତରେ ଫସିଯାଇଛି ଯେ, ସେଠୁ ମୁକୁଳିବାର ଆଉ ବାଟ ନାହିଁ । ନିଜର ମଳତ୍ୟାଗ କଥା ଆଉ ତାଙ୍କର ମନେ ନାହିଁ ।

ସରକାରୀ କର୍ମଚାରୀ ତାଙ୍କୁ ଧୂଆ ଧୋଇ କରି ଆଣିଲେ ଡାକ୍ତରଙ୍କ ପାଖକୁ । ଗୋଡ଼ର ଦୁଇ ତିନିଟି ସ୍ଥାନରେ କ୍ଷତକୁ ସିଲେଇ କରିବାକୁ ପଡ଼ିଲା । ଔଷଧ ଇତ୍ୟାଦି ବାବଦରେ ଶହେରୁ ଅଧିକ ମୁଦ୍ରା ଖର୍ଚ୍ଚ ହେଲା । ଆଜିକାଲି ଶହେ ଟଙ୍କାର ମୂଲ୍ୟ ବା କେତେ ?

ଯାଜପୁରିଆ ଲୋକ ହେଲେ ବି ଏ ମାମଲାରେ କଚେରୀକୁ ଯାଇ ହୁଏ ସେ କଥା ଦୋକାନୀ ଜାଣିନାହାଁନ୍ତି । ନଗର ଉନ୍ନୟନ ମନ୍ତ୍ରୀ ଚାହିଁଲେ ତାଙ୍କୁ ସବୁ ବିବରଣୀ ଯୋଗାଇ ଦିଆଯାଇପାରେ ।

(ତା୨୧.୧୧.୧୯୮୩ରିଖ)





Digitized by srujanika@gmail.com

# ବଡ଼ ପେଟ କି ଅସୁବିଧା କରେ ?

ମଣିଷଟା ପେଟୁଆ ହେଲେ କି ଅସୁବିଧା ହୁଏ ତାହାର ଏକ ନମୁନା ସେଦିନ ରାଜଧାନୀର ବାଣୀବିହାର ଛକରେ ଦେଖିବାକୁ ମିଳିଲା । ପୁଣି ପେଟୁଆ ମଣିଷଟା ଯଦି ପୋଲିସ ଚାକିରି କରେ, ତେବେ ଅଧିକ ଅସୁବିଧା ।

ମୁଁ ପେଟ୍ରୋଲ ପମ୍ପରେ ମୋ ଗାଡ଼ିରେ ତେଲ ନେଉଥିଲି । ହଠାତ୍ ଦେଖିଲି ଗୋଟାଏ ସାଇକେଲରେ ଯୁବକ ଜଣେ ସାମ୍ନାରେ ଆଉ ଜଣେ ଯୁବକକୁ ବସାଇ ଖୁବ୍ ଜୋରରେ ପ୍ୟାଡେଲ ମାରୁଛି । ସାଇକେଲ ପଛରେ ଦଉଡୁଛି ଜଣେ ଟ୍ରାଫିକ ପୋଲିସ କନ୍‌ଷ୍ଟେବଲ । କନ୍‌ଷ୍ଟେବଲ୍‌ଟି ଖାଇ ପିଇ ଟିକେ ବେଶି ମୋଟେଇଛି । ଧଳା ପ୍ୟାଣ୍ଟ ଭିତରେ ଧଳା ପୋଲିସ ସାର୍ଟ ଗୁଞ୍ଜା ହୋଇଛି । ପେଟ ଉପରେ ଚଉଡ଼ା ଚମଡ଼ା ବେଲ୍‌ଟ ସତ୍ତ୍ୱେ ପ୍ୟାଣ୍ଟଟା ତଳକୁ ଖସିପଡୁଛି । ବୁଟ ଜୋତା ଏବଂ ଓହଳି ପଡ଼ିଥିବା କଖାରୁ ପେଟକୁ ନେଇ ଟ୍ରାଫିକ ଜଗୁଆଳୀ ପୋଲିସ ଜଣକ ସାଇକେଲ ଆରୋହୀ ପଛରେ ଶହେ ଫୁଟ ଦଉଡ଼ିବା ମଧ୍ୟ ସମ୍ଭବ ହେଲାନି । ପୋଲିସ ବାପୁଡ଼ା ଧଇଁସଇଁ ହୋଇ ଅଟକିଗଲା ଓ ପଛକୁ ଫେରିଲା । ମୁଁ ଭାବୁଥାଏ ରାସ୍ତାରେ ଖରାରେ ବର୍ଷାରେ ଠିଆ ହୋଇ ଡିଉଟି କରିବା ଲୋକଟା ଏତେ ପେଟୁଆ ହେଲା କେମିତି ଓ କାହିଁକି ?

ଏତିକି ବେଳେ କଟକ ଆଡୁ ଗୋଟାଏ ଟ୍ରେକର ଆସିଲା, ଯେଉଁଥିରେ ଯାତ୍ରୀ ପିଚ୍‌କି ପଡୁଥିଲେ ବାହାରକୁ । ଯଦି ଗୋଟାଏ ଲମ୍ବା ଖଣ୍ଡାରେ ଚୋଟେ ପକେଇବ ତେବେ ତିନିଟା ଆଣ୍ଠୁ, ଚାରିଟା ବାହୁ, ଚାଳିଶଟା ଗୋଡ଼ ଆଙ୍ଗୁଠି, ଦି ଚାରିଟା କାନ ଓ କେଇଟା ଛେଲା ମୁଣ୍ଡ ଖସିପଡ଼ିବ ଟ୍ରେକରରୁ । ପେଟୁଆ ପୋଲିସ ସେ ଟ୍ରେକରକୁ ହାତ ଦେଖାଇ ଅଟକାଇ ସେଥିରେ ଗୋଟାଏ ଗୋଡ଼ ପୂରାଇ ଝୁଲିବାକୁ ଆରମ୍ଭ କଲା ଓ ଟ୍ରେକର ଚାଲିଲା ରୂପାଲି ଛକ ଆଡ଼କୁ ।

ମୋର ଗାଡ଼ିରେ ତେଲ ଭରିବା କାମ ସରିଥିଲା । ମୁଁ ମଧ୍ୟ ରାଜଧାନୀ ଭିତରକୁ ମୁହାଁଇଲି । ବାଟରେ ଭଗ୍ନ ମନୋରଥ ପେଟୁଆ ପୋଲିସ ଧୀର ମନ୍ଥର ଗତିରେ ପଛକୁ ଅନାଇ ଅନାଇ ଫେରୁଥିବାର ଦେଖିଲି । ପଚାରିଲି, 'କଣ କିହୋ ! କାହିଁକି ସେ ଟୋକାଙ୍କୁ ଗୋଡ଼ଉଥିଲ ?''

ପୋଲିସ ବାବୁ ଉତ୍ତର ଦେଲେ ''ଆଜ୍ଞା ଦେଖନ୍ତୁ, ଦିନବେଳା ଏ ବାଟେ ଲୋଡ଼ିଂ ଟ୍ରକ କ୍ୟାପିଟାଲ ଭିତରକୁ ଛାଡ଼ିବା ମନା । ମୁଁ ଗୋଟାଏ ଟ୍ରକକୁ ଛକରେ ଅଟକାଇ ଥିଲି । ଏ ଚେଙ୍ଗଡ଼ା ଟୋକା ଦିଟା ମତେ ଦେଖେଇ କହୁଛନ୍ତି 'ଶଳା ପୋଲିସ ଟ୍ରକବାଲାଠୁ ପଇସା ଅସୁଲ କରୁଛି ।' ଆମେ ଆଜ୍ଞା କି ଡିଉଟି କରିବୁ କହନ୍ତୁ ।''

ଏତିକିବେଳେ ଗୋଟାଏ ବୋଝେଇ ଜାଳେଣି କାଠ ଟ୍ରକ ସାଏଁ କରି ସେବାଟେ ଦ୍ରୁତଗତିରେ ରାଜଧାନୀ ଭିତରକୁ ଚାଲିଗଲା ।

''କ'ଣ ଧରି ପାରିଲେନି ସେ ଟୋକା ଦି'ଟାଙ୍କୁ ?'' ମୁଁ ପଚାରିଲି । ''ନାଇଁ ଆଜ୍ଞା, ମତେ ଦେଖି ଶହୀଦନଗରର ଗୋଟାଏ ଗଳି ଭିତରକୁ ପଶିଗଲେ ସେମାନେ ମୁଁ ଆଉ କେତେ ଦଉଡ଼ିଥାନ୍ତି ?''

''ଟ୍ରାଫିକ ପୋଲିସ ଚାକିରିକୁ ପେଟଟା ତମର ଟିକେ ବହକି ପଡ଼ିଛି'' କହି ମୁଁ ଆଗକୁ ଚାଲିଲି ।

(ତା୦୫.୧୨.୧୯୮୩ରିଖ)





Digitized by srujanika@gmail.com

# କ୍ଷୀର-ନୀରର ସମ୍ପର୍କ

ଦୁନିଆରେ ଦୁଇଜଣଙ୍କ ମଧ୍ୟରେ ସମ୍ପର୍କ ଅତି ଘନିଷ୍ଠ ହେଲେ କୁହାଯାଏ ଯେ, ସେମାନଙ୍କର କ୍ଷୀର ନୀରର ସମ୍ପର୍କ । କ୍ଷୀର ଓରଫ ଦୁଧ ନିତିଆନି ଓରଫ ଗୋରସ ଓରଫ ଆଉ କେତେ ନାଁ'ରେ ଏହାକୁ ଡକାଯାଏ । ଯେଉଁ ନାଁରେ କ୍ଷୀରକୁ ଡକାଯାଉ ପଛେ ନୀର ଓରଫ ପାଣି ସହିତ ତାର ସମ୍ପର୍କ ଅଚ୍ଛେଦ୍ୟ ଓ ଅବିଚ୍ଛେଦ୍ୟ । ବିଶେଷ କରି ଭାରତବର୍ଷରେ ଯେତେବେଳେ ସବୁ ମିଶ୍ରିତ ଏଠାରେ ଦୁଧ ଓ ପାଣିର ସମ୍ପର୍କ ଅପରିହାର୍ଯ୍ୟ । ଏକକୁ ଛାଡ଼ି ଅପରର ସ୍ଥିତି ଅସମ୍ଭବ ।

ଏଠାରେ ମିଶ୍ରିତ ଅର୍ଥନୀତି, ମିଶ୍ରିତ ରାଜନୀତି, ମିଶ୍ରିତ ସାମାଜିକତା, ମିଶ୍ରିତ ଶାସନ । ଆଜି ସବୁକିଛି ମିଶ୍ରିତ । ବଡ଼ଲୋକର ବିରାଟ କୋଠା ଉପରୁ ନଳାବାଟେ ତଳକୁ ଗରିବର ଝୋପଡ଼ି ଉପରେ ବର୍ଷା ପାଣି ପଡ଼ି ଛପର କଣା ହୋଇଯିବା ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପ୍ରତୀକ । ତେଣୁ ଏଠାରେ ଚାଉଳ, ଡାଲି ଓ ଗହମରେ ବାଲିଗୋଡ଼ି ମିଶିବା, ବନସ୍ପତି ଘିଅରେ ଗୋରୁ ଓ ଘୁଷୁରୀ ଚର୍ବି ମିଶିବା, ସୋରିଷ ତେଲରେ ଅଗରା ମିଶିବା, ଔଷଧ ବଟିକାରେ ଚକଖଡ଼ି ମିଶିବା, ମସଲାଗୁଣ୍ଡରେ କରତଗୁଣ୍ଡି ଓ ଚା' ଗୁଣ୍ଡରେ ଚମଡ଼ାଗୁଣ୍ଡ ମିଶିବା ନିତିଦିନିଆ ମିଶ୍ରଣ ଓ ସହାବସ୍ଥାନର ନମୁନା । ମଦ ଖାଇବା ଲୋକେ ଏବେ ବେଳେବେଳେ ଅଭିଯୋଗ କଲେଣି ଯେ 'ସ୍କଚ ହୁଇସ୍କି'ରେ ମଧ୍ୟ ପାଣି ମିଶାଇ ବିକ୍ରି କରାଯାଉଛି ।

ଏଠାରେ କମ୍ୟୁନିଷ୍ଟଙ୍କ ସହିତ ଜନସଂଘ ଓ ମୁସ୍‌ଲିମ୍ ଲିଗ୍‌ର ବୁଝାମଣା ଜରିଆରେ ମିଶ୍ରିତ ରାଜନୀତି ସମ୍ଭବ । ସମାଜବାଦୀ କଂଗ୍ରେସ(ଇ) ମଧ୍ୟ ଖ୍ରୀଷ୍ଟିଆନ୍ ରାଜନୀତି ଓ ମୁସ୍‌ଲମାନ ରାଜନୀତିରେ ଜଡ଼ିତ ଥିବା ଦଳ ଓ ଲୋକଙ୍କୁ ନେଇ ସରକାର ଗଠନ କରିପାରୁଛନ୍ତି । ପୁଞ୍ଜିପତିର ଘରୋଇ ଉଦ୍ୟୋଗ ଏବଂ ସରକାରଙ୍କର ରାଷ୍ଟ୍ରୀୟ ଉଦ୍ୟୋଗ ମଧ୍ୟରେ ସେତୁ ସ୍ଥାପନ ହେବାରେ ଅସୁବିଧା ରହୁନାହିଁ । ତେଣୁ କ୍ଷୀରରେ ନୀର ମିଶିଲା ବା ଦୁଧରେ ପାଣି ମିଶିଲା ବୋଲି ଦୁଃଖ କରିବାର ନାହିଁ । ଏହା ଭାରତୀୟ ପରମ୍ପରା ବୋଲି ଧରିନେବାକୁ ହେବ ।

କଥାଟା କାହିଁକି ଉଠିଲା କହିଦିଏ । ଆମ ଗଉଡ଼ ଓରଫ ଆମ ବେହେରା ଓରଫ ଆଧକୁ ଦୁଧ ଯୋଗାଇଲାବାଲା ଏବେ ଆମକୁ ପାଣି ନଦେଇ କ'ଣ ସବୁ ଗୁଣ୍ଡ ମିଶାଇ ଦୁଧ ଦେଉଛି । ଦୁଧ ପାଣିଆ ହେବା ପରିବର୍ତ୍ତେ ଖୁବ୍ ବହଳିଆ ହେଉଛି । ଦୁଧ ଗରମ କରି ରଖିଦେଲା ପରେ ଉପରେ ସରପଡ଼ିବା ପରିବର୍ତ୍ତେ ଡେକିଚିର ତଳଭାଗରେ ଗୋଟାଏ ମୋଟା ଆସ୍ତରଣ ଜମିଯାଉଛି ।

ଗଉଡ଼ ଓରଫ ବେହେରା ଓରଫ ଦୁଧବାଲା ସମସ୍ତେ ଭାରତୀୟ ପରମ୍ପରାର ଅନୁସରଣକାରୀ । ଆଜିକାଲି ଭଦ୍ର ଲୋକମାନେ ଘରେ ଗାଈ ରଖି ଭଲ ଦୁଧ ଖାଉଛନ୍ତି । ବଳକା ଦୁଧ ବିକ୍ରି କରୁଛନ୍ତି । ଆମେ ପୂର୍ବରୁ ଯେଉଁଠି ଥିଲୁ ସେଠିଜଣେ ଇଞ୍ଜିନିୟରଙ୍କ ଘରୁ ଦୁଧ କିଣୁଥିଲୁ । ସେ ପ୍ରଥମେ ପାଣି ମିଶାଇଲେ । ଇଙ୍ଗିତ ଦେଲାରୁ ପୁଣି କ'ଣ ପାଉଡର ମିଶାଇଲେ । ରାଜଧାନୀରେ ତାଙ୍କର ମାତ୍ର ତିନୋଟି କୋଠା । ପୁରୀରେ କୋଠା ତୋଳା ହେଉଛି ।

ଆମ ବେହେରା ତା ଗାଁକୁ ଯାଇଥିଲା । ଆମେ ବି ତିନିଦିନ ଦୁଧ ଆଣିବା ବନ୍ଦ କରିଦେଲୁ । ସେ



Digitized by srujanika@gmail.com

ଗାଁରୁ ଫେରି କହିଲା ଯେ, ମୁଁ ନଥିଲି । ମୋ ଲୋକ କ'ଣ କିଏ କରିଦେଉଥିବ । ଏଣିକି ଦୁଧ ଖରାପ ପଡ଼ିବନି । ଆପଣ ନିଅନ୍ତୁ ।''

ପୁଣି ବହଳିଆ ଦୁଧ ଆସିଲା । ବେହେରା କହେ ଯେ, ଆମକୁ ଭଲ ପାଇ ସେ ଯେଉଁ ଗାଈ ବହଳିଆ ଦୁଧ ଦିଏ ତାର ଦୁଧ ଦେଉଛି । ଅନ୍ୟ ଗାଈ ଦୁଧ ଟିକେ ପତଳା ହେବ । ଆମେ ବୁଝିପାରିଲୁ । ପାଉଡର ମିଶା ଦୁଧ ଦରକାର ହେଲେ ବହଳିଆ ଗାଈ ଦୁଧ ନଇଲେ ନୀର ମିଶ୍ରିତ କ୍ଷୀର ହେଲେ ପତଳା ଗାଈଠୁ ଦୁଧ ପିଇବା କଥା । ଆମେ ଭାବିଲୁ ଚକଖଡ଼ି ଗୁଣ୍ଡଠାରୁ ପାଣି ବୋଧେ ଅପେକ୍ଷାକୃତ ସ୍ୱାସ୍ଥ୍ୟକାରକ । କାରଣ ବେହେରା ଆମକୁ ଛାଡ଼ିବନି ।

ସେ କୋଠାଘରର ଇଞ୍ଜିନିୟର 'ବେହେରା' ଓ ଏ ଚାଳଘରର ଗଉଡ଼ ଭିତରେ କାହାକୁ ଆପଣ ବାଛିବେ ବାଛନ୍ତୁ ।

(ତା୧୨.୧୨.୧୯୮୩ରିଖ)





Digitized by srujanika@gmail.com

# କଳ୍ପନା ଓ ବାସ୍ତବତାର ଲୁଚକାଳି

ସେଦିନ ଦିନ ବାରଟା ବେଳଟାରେ ମୁଁ ଓ ମୋର ଧର୍ମପତ୍ନୀଙ୍କ ସହିତ ମୋର ପ୍ରାପ୍ତବୟସ୍କା ଝିଅଟି ଅଢେଇ ଘଣ୍ଟା ପର୍ଯ୍ୟନ୍ତ ହଜିଗଲୁ । ଅଳ୍ପ ସମୟ ଟିକକରେ ଓ ପରସ୍ପର ଠାରୁ ଅଳ୍ପ ଦୂରରେ ମୁଁ ଅଲଗା ହୋଇଗଲି ସେମାନଙ୍କ ଠାରୁ ।

କଥାଟା ଏମିତିଆ:

ଖୁବ୍ କମ ହିନ୍ଦିଚିତ୍ର ଏବେ 'ଆମ' ଦେଖିଲା ଭଳିଆ । 'ମାସୁମ୍' ଚିତ୍ର ଭଲ ହୋଇଛି ମୋର ପତ୍ନୀ କହିଲେ 'ଯିବାକୁ ହେବ ।' 'ମୋର ସମୟ ଅଭାବ । ତୁମେ ଦେଖିଆସ ।' କିନ୍ତୁ ସେ କଥା କି ହୁଏ ? ମୁଁ ରାଜି ହେଲି ଯିବାକୁ । ମଧ୍ୟାହ୍ନ ସୋ । ଟିକେଟ ମିଳିଯିବ ଭାବି ଆମେ ଟିକେ ଡେରିରେ ଗଲୁ । ସିନେମା ହଲ୍ ପାଖରେ ପହଞ୍ଚିଲା ବେଳକୁ ଦେଖିଲୁ ଲୋକାରଣ୍ୟ । ମନେପଡ଼ିଲା ଆଜି ଛୁଟି ଦିନଟାଏ । ତେଣୁ ଟିକେଟ ମିଳିବାର ଆଶା ବଡ଼ କମ ଦେଖି ମୋ ପତ୍ନୀଙ୍କୁ କହିଲି 'ମୁଁ ଗାଡ଼ିଟା ସେ ଦୋକାନ ପାଖରେ ପାର୍କି କରିଆସୁଛି । ଜଣେ ଚିହ୍ନା ଲୋକଙ୍କର ସେପଟରେ ଦୋକାନ ଅଛି । ତାଙ୍କ ଜରିଆରେ ଟିକେଟ ପାଇଁ ଚେଷ୍ଟା କରିବା । ତୁମେ ଟିକେଟ ବୁକିଂ ଅଫିସ୍‌ରେ ଚେଷ୍ଟା କରୁଥାଅ ।'

ମୁଁ ଗାଡ଼ିଟି ରଖିବାରେ ଟିକେ ଡେରି ହେଲା ଲୋକଙ୍କ ଭିଡ଼ ଯୋଗୁ । ମୋର ଚିହ୍ନା ଭଦ୍ରଲୋକଙ୍କୁ ଟିକେଟ ତିନିଖଣ୍ଡି ଯୋଗାଡ଼ କରିଦେବା ପାଇଁ କହୁଛି, ଏହି ସମୟରେ ମୋର ସାନପୁଅ କୁଆଡୁ ଆସି ମତେ ଖଣ୍ଡିଏ ଟିକେଟ ଧରାଇ କହିଲା, 'ବାପା, ଆପଣ ଶୀଘ୍ର ଯାଆନ୍ତୁ । ଫିଲ୍ମ ଆରମ୍ଭ ହୋଇଗଲାଣି ।' ମୁଁ ତାହା ଆଡ଼କୁ ପ୍ରଶ୍ନବାଚୀ ଦୃଷ୍ଟିରେ ଅନେଇଲା ବେଳକୁ ସେ କହିଲା, 'ବୋଉ ମତେ କହିଥିଲା ଆସି ଟିକେଟ କରିଦେବାକୁ । ମୁଁ ଆସିଥିଲି ।'

ମୁଁ କହିଲି 'କଣ ଟିକେଟ ମିଳିଗଲା ?'

ପୁଅ କହିଲା 'ନାହିଁ ହାଉସ୍ ଫୁଲ୍ ଯେ । ମୁଁ 'ବ୍ଲାକର'ଠୁ ଆଣିଲି ।'

ମୁଁ ବିରକ୍ତ ହୋଇ କହିଲି 'ବ୍ଲାକରମାନେ ଯିଏ ସିନେମା ଟିକେଟ ବ୍ଲାକ ମାର୍କେଟିଂ କରୁଛନ୍ତି, ତା'ଠୁ ଆଣିଲୁ ବେଶି ପଇସା ଦେଇ...'

'ନାଇଁ ନାଇଁ, ମୁଁ ସେମ୍ ରେଟ୍‌ରେ ଆଣିଛି । ଅଧିକା ଦେଇନି । ସେ ବ୍ଲାକର ମୋର ଚିହ୍ନା'

ମୋର ଚଉଦ ବର୍ଷର ସାନପୁଅଟା ସିନେମା ଟିକେଟ କଳାବଜାର କରୁଥିବା ଲୋକସହ ଚିହ୍ନା ହେଲା କିପରି ? ଏଇଆ ଭାବୁ ଭାବୁ ମୁଁ ପଚାରିଲି ସିନେମା ବ୍ଲାକରକୁ ତୁ ଚିହ୍ନିଲୁ କେମିତି ?

ପୁଅ କହିଲା 'ବୁବୁଭାଇର ସାଙ୍ଗ । ବୁବୁଭାଇ ଚିହ୍ନେଇ ଦେଇଥିଲେ ।'

ବୁବୁ ମୋର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କର ଦ୍ୱିତୀୟ ପୁତ୍ର । ମୋର ସାଙ୍ଗ ରାଜ୍ୟ ସରକାରଙ୍କର ଜଣେ ବେଶ ଉଚ୍ଚପଦସ୍ଥ ଅଫିସର । ତାଙ୍କ ପୁଅ ବୁବୁର ସାଙ୍ଗ ସିନେମା କଳାବଜାର କରୁଛି । ସମାଜର ଗତି ଯେତେବେଳେ ଯୁଆଡ଼େ ।



Digitized by srujanika@gmail.com

ସିନେମା ହଲ ଭିତରକୁ ପଶିଲି । ଅନ୍ଧାରରେ କିଛି ଦେଖି ହେଉନି । ବହୁତ ଡେରିରେ ଟର୍ଚ୍ଚ ପକେଇ ମତେ ସିଟ୍ ଦେଖାଇଦେଲା ସିନେମା ହଲ୍ ଲୋକଟା । ସେତେବେଳକୁ ଆଖିଟା ଟିକେ ଅନ୍ଧାରରେ ମଣ ହୋଇଗଲାଣି । ମୋ ସିଟ୍‌ରେ ବସିଲାବେଳକୁ ଦେଖିଲି ମୋ ଦୁଇପାଖରେ ଟୋକାମାନେ ।

ଇରେ ମୋ ସ୍ତ୍ରୀ କନ୍ୟା ଗଲେ କୁଆଡ଼େ ? ଫିଲ୍ମଟା ସେତେବେଳକୁ କେତେ ଆଗେଇ ଗଲାଣି । କାହାଣୀ ବୁଝିପାରିବିନି ଭାବି ପରଦା ଉପରେ ମନ ଦେଲି । ମନଟା ଏଣେ ଛନ ଛନ । ଯାହାଙ୍କ ପାଇଁ ସିନେମା ଆସିଲି ସେମାନେ ପାଖରେ ନାହାନ୍ତି । ଚିତ୍ରର କାହାଣୀ ଓ ଅଭିନୟ ଖୁବ୍ ସୁନ୍ଦର । ମୋ ନିଜ ଜୀବନ ସହିତ କାହାଣୀର ପ୍ରଥମ ଭାଗ କେତେ ମିଳୁଛି । ଇଣ୍ଟରଭାଲ ହେଲାବେଳକୁ ଚିତ୍ରରେ ସ୍ୱାମୀ ସ୍ତ୍ରୀ (ନାୟକ- ନାୟିକା) କେତେ ଦୂରେଇ ଗଲେଣି । ମୁଁ ଭାବୁଥାଏ ଚିତ୍ରର ଆରମ୍ଭରୁ ହିଁ ଏ ବ୍ଲାକର ଯୁବକ ଓ ମୋ ସାନପୁଅ ମୋ ପତ୍ନୀ-କନ୍ୟାଙ୍କ ଠାରୁ ମତେ ଦୂରେଇ ଦେଇଛନ୍ତି ।

ଇଣ୍ଟରଭାଲରେ ବାହାରକୁ ଆସିବା ବାହାନାରେ କନ୍ କନ୍ ହୋଇ ସ୍ତ୍ରୀ କନ୍ୟାଙ୍କୁ ଟିକେ ଖୋଜିଲି । ବଲ ବଲ କରି ଅନେଇ ତନ୍ନ ତନ୍ନ କରି ସ୍ତ୍ରୀ ଲୋକଙ୍କୁ ଖୋଜିବାର ଅଭଦ୍ରତା କେତେ ! କିଏ ବୁଝିବ ମୁଁ କାହିଁକି ଆଖି ମେଲେଇ ମୁଭି କ୍ୟାମେରା ପରି ବୁଲାଉଛି ।

ସିନେମା ସରିଲା ପରେ ବହୁ କଷ୍ଟରେ ପରିବାର ଉଦ୍ଧାର କରି ଫେରିଲା ବାଟରେ କଥା ହେଲୁ । ସେମାନଙ୍କ ପାଖରେ ବହୁତ ଡେରିରେ ପିଲାଟିଏ ଯାଇ ବସିଲା । ପନ୍ଦର କି ଷୋହଳ ବର୍ଷର ପୁଅଟିଏ । ମୋ ପତ୍ନୀ ଭାବୁଥିଲେ 'କୁଆଡ଼େ ଗଲେ ଇଏ ?'

ବହୁତ ଭଲ ସିନେମାଟା ଆମର ଏମିତି ପାଣିଚିଆ ହୋଇଗଲା । ଅବଶ୍ୟ ସିନେମା ଚିତ୍ରରେ ବି ଶେଷବେଳକୁ ନାୟକ- ନାୟିକା ତାଙ୍କ ପିଲାଙ୍କୁ ଧରି ଇମ୍ପୋଟେଡ୍ ମଟରଗାଡ଼ିରେମନ ବିଚ୍ଛେଦ ଦୂର କରି ଘରକୁ ଫେରୁଥିଲେ ।

(ତା୧୦.୧୦.୧୯୮୩ରିଖ)





Digitized by srujanika@gmail.com

# ଏ ଆକ୍ରମଣରୁ ରକ୍ଷା କାହିଁ

ଟିଭି ଓରଫ ଟେଲିଭିଜନ ଓରଫ ଦୂରଦର୍ଶନ ଓରଫ ସତ୍ୟାନାଶୀ ଯନ୍ତ୍ର ଏବେ ଆମ ଜୀବନଟାକୁ ହାରାମ କରିଦେଲାଣି । ମୋ ଘରେ ମୁଁ ଆଉଟ୍‌ଡେଟେଡ୍ । ମୁଁ ଅକାଳୀ ଦଳ ସଭାପତି ତଥା ମୋରଚା ଡିକ୍ଟେଟର ନ ହୋଇ ଥିଲେ କୋଉ କାଳରୁ ଟିଭି ମୋ ଘରେ ପଶି ମତେ ବାହାରକୁ ଠେଲି ସାରନ୍ତାଣି ଯେମିତି ଓଟଟାଏ କାହାର ତମ୍ବୁ ଭିତରେ ପଶି ତା'କୁ ପଦାକୁ ପେଲିଥିଲା ।

ବର୍ତ୍ତମାନର ଦୁନିଆରେ ଯାହା ଲୋଭନୀୟ ତାହା ମିଳିବ ଏତେ ନିକଟରେ । ତା ନାଁଟା ତ ନିକଟ ଦର୍ଶନ ହେବା ଦରକାର । ସପ୍ତାହକୁ ଏବେ ଦୁଇଟି ପୂରା ହିନ୍ଦି ଚିତ୍ର । ଗୁରୁବାର ଓ ରବିବାର ସନ୍ଧ୍ୟାରେ । ପୁଣି ଆଞ୍ଚଳିକ ଚିତ୍ର । କୋଉ ଚିତ୍ରର ଭାଷା ବୁଝି ନହେଲେ ବି ମୁହଁର ଭାବଭଙ୍ଗୀ ହିରୋ ହିରୋଇନ୍‌ଙ୍କ ଆଖିର ଆଖିଏ ପ୍ରେମ, ଲଙ୍ଗଳା କିମ୍ୱା ଅଳ୍ପ ଭାଗ ଆବୃତ ଥିବା ଅଙ୍ଗ ପ୍ରତ୍ୟଙ୍ଗ କଣ ଲୋଭନୀୟ ନୁହେଁ ।

କାଲି ଗାଭାସ୍କର- ଏଇ ସୁନୀଲ ଗାଭାସ୍କର- ଓ୍ୱେଷ୍ଟଇଣ୍ଡିଜ୍ ବିରୁଦ୍ଧରେ ସେଞ୍ଚୁରି କଲା । ମୋ ମଝିଆ ପୁଅ କଲେଜରେ ପରୀକ୍ଷା ଦେବାକୁ ଯାଇଥିଲା । ଫେରିଲା ଧଇଁ ସଇଁ ହୋଇ । ତା ବଡ଼ ଭଉଣୀକୁ କୁଣ୍ଢେଇ ପକେଇ ଗେହ୍ଲା କରୁଛି । ଗାଭାସ୍କର ଶହେ ବାଡ଼େଇଲା କ୍ରିକେଟ୍‌ରେ । ଏ କାହିଁକି ଏତେ ଖୁସି ? ଆଗେ ଶୀତଦିନେ କ୍ରିକେଟ ଖେଳ ହେଉଥିଲା । ଏବେ ସବୁ ଦିନେ ବିଶେଷତଃ ବର୍ଷାଦିନେ ବି କ୍ରିକେଟ ଖେଳ ଚାଲିଛି ।

ଅଷ୍ଟ୍ରେଲିଆରେ, ଇଂଲଣ୍ଡରେ, ନିଉଜିଲାଣ୍ଡରେ, ପାକିସ୍ତାନରେ ଆଉ ଯୋଉଠି କ୍ରିକେଟ ଖେଳ ହେଉଛି ସେସବୁ ଘରେ ବସି ନିକଟ ଦର୍ଶନ କରିହେବ । କ୍ରିକେଟ ଖେଳ ଦେଖିବାକୁ ଲୋକେ (ଉଇଦାଉଟ୍ ପେ) ଦରମାହୀନ ଛୁଟି ନେଇ ଘରେ ରହୁଛନ୍ତି । ସେକ୍ରେଟେରୀଙ୍କ ଡ୍ରୟରରେ ମିନି ରେଡିଓ । ପାନ ଦୋକାନରେ ରେଡିଓ ଚାଲିଛି କମେଣ୍ଟରୀ ନେଇ ।

ଟି.ଭି.ରୁ ଯାଇ ରେଡିଓରେ ପହଞ୍ଚିଲିଣି । ଦିଟାଯାକ ସତ୍ୟାନାଶୀ ଭଉଣୀ ତ । ସପ୍ତାହରେ ଦି ଦିନ ଚିତ୍ରହାର । ପୁରୁଣା ନୂଆ ଚିତ୍ରର ହିରୋ ହିରୋଇନ ନାଚିକୁଦି ଗୀତ ଜରିଆରେ ଦଉଡ଼ା ଧପଡ଼ା କରି ପ୍ରେମ କରୁଥିବେ ।

ଦେଶଟା ଆମର ଖେଳ, ଗୀତ ଆଉ ପ୍ରେମରେ ମସ୍‌ଗୁଲ । ଆମ ଘରେ ଟି.ଭି. ନିଶ୍ଚୟ ଦିନେ ଆସି ଯିବ । ମୁଁ ସେ ଯନ୍ତ୍ରଟାକୁ ଘୃଣା କରେ । ସୁନୀଲ ଗାଭାସ୍କର ଆଉ ଅମିତାଭ ବଚନଙ୍କୁ ମୋ ପିଲା ବେଶୀ ଭଲ ପାଉଛନ୍ତି ବୋଲି ମୋର ମନେ ହେଉଛି । ଖାଲି ସେମାନଙ୍କୁ ଈର୍ଷା କଲେ କଣ ହେବ । ମୁଁ ସିନା ଜନ୍ମର ମାଧମ । ଏ ଫିଲ୍ମ ଷ୍ଟାର ଓ କ୍ରିକେଟ ଷ୍ଟାରମାନେ ତ ମନକୁ ଛାଇ ରହିଛନ୍ତି । ଟି.ଭି. ମତେ ବସ୍ତୁତଃ ପରାସ୍ତ କରିସାରିଲାଣି । ଦିନେ ମୋ ଘରକୁ ସିଧାସଳଖ ଆକ୍ରମଣ କରି ଅଧିକାର କରି ନେବ । ଯେମିତି ଚାରିଦିନ ତଳେ ବିପୁଳ ଶକ୍ତିମାନ ଆମେରିକା ଗ୍ରେନେଡା ପରି କୁନି ରାଷ୍ଟ୍ରଟିକୁ ଅଧିକାର କରି ନେଲା । ମୁଁ କାହାକୁ ଗୁହାରୀ କରିବି ?

(ତା୩୧.୧୦.୧୯୮୩ରିଖ)





Digitized by srujanika@gmail.com

# 'ବନ୍ଦ' ଆନ୍ଦୋଳନର ନେପଥ୍ୟରେ

ଗତ ୯ ତାରିଖରେ 'ଓଡ଼ିଶା ବନ୍ଦ' ଉପଲକ୍ଷେ କେତେ ପ୍ରକାରର ଘଟଣା ଘଟିଗଲା । ତା' ଭିତରୁ ଗୋଟିଏ ଶୁଣନ୍ତୁ ।

ଭାରତ ସରକାରଙ୍କର ଗୋଟିଏ ଉଦ୍ୟୋଗରେ କର୍ମଚାରୀମାନଙ୍କର ବଡ଼ ୟୁନିଅନ ନିଷ୍ପତ୍ତି ନେଲେ ଯେ, ସେମାନେ 'ବନ୍ଦ' ପାଳନ କରିବେ । ସେଦିନ ସେମାନେ ଅଫିସ ଆସିବେ ନାହିଁ । ଏହି ୟୁନିଅନ ଗୋଟିଏ ବାମପନ୍ଥୀ ଦଳ ଦ୍ୱାରା ନିୟନ୍ତ୍ରିତ । ଏହାଛଡ଼ା ଆଉ ଦୁଇଟି ଛୋଟ ୟୁନିଅନ ମଧ୍ୟ ସେ ସଂସ୍ଥାରେ ଅଛି । ସେମାନେ ମଧ୍ୟ 'ବନ୍ଦ' ସପକ୍ଷରେ । କିନ୍ତୁ ଯେହେତୁ ସେମାନଙ୍କର ସଭ୍ୟ ସଂଖ୍ୟା କମ୍ ସେମାନଙ୍କର ପ୍ରଭାବ ବିଶେଷ ନାହିଁ ।

ବଡ଼ ୟୁନିଅନର ନେତାଙ୍କୁ ସରକାର 'ବନ୍ଦ'ର ଦୁଇ ଦିନ ଆଗରୁ ଗିରଫ କରିନେଲେ । 'ବନ୍ଦ' ଶେଷ ହେଲାବେଳକୁ ସେମାନେ ବିଚାରାଧୀନ ବନ୍ଦୀ ଭାବରେ ୪୮ ଘଣ୍ଟାରୁ ବେଶି ସମୟ ଗିରଫ ଅବସ୍ଥାରେ ରହିଯିବେ । ଏହି ସଂସ୍ଥାର ନିୟମ ଅନୁସାରେ ଯେଉଁ କର୍ମଚାରୀ ୪୮ ଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ପୋଲିସ ହେପାଜତରେ ରହିବେ, ସେମାନେ ଚାକିରିରୁ ସସ୍‌ପେଣ୍ଡ ହେବେ । ତେଣୁ ଭାଳେଣି ପଡ଼ିଲା ଯେ, ଯଥାଶୀଘ୍ର ନେତାମାନଙ୍କୁ ଜାମିନରେ ନ ଆଣିଲେ ଚାକିରିରୁ କର୍ତ୍ତୃପକ୍ଷ ସସ୍‌ପେଣ୍ଡ କରିଦେବେ ।

ବାମପନ୍ଥୀ ଦଳର ଜଣେ ଓକିଲଙ୍କୁ ଲଗାଇ ୪୮ ଘଣ୍ଟା ପୂର୍ବରୁ ନେତାମାନଙ୍କୁ କୌଣସିମତେ ଜାମିନରେ ଖଲାସ କରି ଆଣିବାକୁ ପ୍ରବଳ ଧାଁଧପଡ଼ ହେଲା । ବହୁ କଷ୍ଟରେ ନେତାମାନେ ନିଜର 'ବନ୍ଦ' ଅବସ୍ଥାରୁ ମୁକ୍ତି ପାଇଲେ ।

'ବନ୍ଦ' ପରଦିନ କର୍ତ୍ତୃପକ୍ଷଙ୍କ ତରଫରୁ ନେତା ଓ ପୂର୍ବଦିନ ଅଫିସ୍‌ରେ ଅନୁପସ୍ଥିତ ଥିବା କର୍ମଚାରୀମାନଙ୍କୁ ଯେତେବେଳେ ପଚରାଗଲା ଯେ, ଗତକାଲିର ଅନୁପସ୍ଥିତିକୁ କାଜୁଆଲ ଲିଭ୍ ଭାବରେ ନିଆଯିବ ନା ଧର୍ମଘଟ ଭାବରେ ନିଆଯିବ ୟୁନିୟନ ନେତା କହିଲେ 'ଆମେ ସେ ବିଷୟରେ କିଛି କହିବୁନି । ତମର ଯାହା ଇଚ୍ଛା ତାହା କର । ଆମେ ନୋଟିସ୍ ଦେଇ ଧର୍ମଘଟ କରିବୁ ବୋଲି ତୁମକୁ କହିନାହୁଁ, ଏବେ ଧର୍ମଘଟ କରିଥିଲୁ ବୋଲି ମଧ୍ୟ କହିବୁ ନାହିଁ ।

ଅସଲ କଥା ହେଲା ଚାକିରିଟା ରହିବ । ନିୟମ ଅନୁସାରେ ଅଫିସ୍ ତା' ବାଟରେ କାମ କରିବ । 'ଓଡ଼ିଶା ବନ୍ଦ' ପାଇଁ ଧର୍ମଘଟ ଜନିତ ବିପ୍ଳବ ମଧ୍ୟ ହେବ । କିନ୍ତୁ ଦରମା କଟିବ ନାହିଁ ।

ଅନ୍ୟ ପକ୍ଷରେ ଛୋଟ ୟୁନିଅନର ନେତାମାନଙ୍କୁ ପୋଲିସ ଗିରଫ ନ କରିବା ଫଳରେ ସେମାନଙ୍କ ନେତୃତ୍ୱ ସଫଳ ହୋଇପାରୁ ନାହିଁ । ତେଣୁ ସେମାନେ ପୋଲିସ କର୍ତ୍ତୃପକ୍ଷଙ୍କ ସହିତ ଭଲ ଚିହ୍ନା ପରିଚୟ ଥିବା ଜଣେ ସହଯୋଗୀ ବନ୍ଧୁଙ୍କୁ ବାରମ୍ବାର ଅନୁରୋଧ କଲେ ଯେ କେମିତି ହେଲେ ପୋଲିସକୁ ଧରାଧରି କୁହାବୋଲା କରି ଏ ନେତାମାନଙ୍କୁ ଗିରଫ କରାଇବା ପାଇଁ । ପୋଲିସ କିନ୍ତୁ ଛୋଟ ନେତାଙ୍କୁ ଗିରଫର ସମ୍ମାନ ଦେବାକୁ ରାଜି ହେଲେ ନାହିଁ ।

(ତା୧୫.୮.୧୯୮୩ରିଖ)





Digitized by srujanika@gmail.com

# ନଈକେ ବାଂକ୍, ଦେଶ୍‌କେ ଫାଂକ୍

ଆମ ଦେଶରେ ପୁରୁଷ-ସ୍ତ୍ରୀ ସମ୍ପର୍କରେ ଗୋଟାଏ ବଡ଼ ବ୍ୟବଧାନ ରକ୍ଷା କରିବାକୁ ପଡ଼େ । ନିଜ ସ୍ତ୍ରୀ ସହିତ ମଧ ସ୍ୱାମୀ ଘର ଭିତରେ ଅବାଧ ମିଳାମିଶା କରିବାରେ ସମ୍ଭ୍ରମ ରକ୍ଷା କରିବାର ଆବଶ୍ୟକତା ଯଥେଷ୍ଟ ବେଶି । ଜଣେ ପୁରୁଷ ଏବଂ ଅନ୍ୟ ଜଣକର ସ୍ତ୍ରୀ ଯେତେ ବନ୍ଧୁତା ଥିଲେ ମଧ ମିଳାମିଶା କରିବାରେ ବହୁ ପ୍ରତିବନ୍ଧକ ରହିଛି । କିନ୍ତୁ ପାଶ୍ଚାତ୍ୟ ଜୀବନରେ ଏହି ଦୃଷ୍ଟିଭଙ୍ଗୀ ରକ୍ଷା କରିବା ଆଦୌ ସହଜ ନୁହେଁ ।

ମୋର ଜଣେ ବନ୍ଧୁ ନିକଟରେ ବିଲାତ ଓରଫ ଲଣ୍ଡନ ଅର୍ଥାତ୍ ଇଂଲଣ୍ଡ ଯାଇଥିଲେ । ବିଲାତ ଫେରନ୍ତା ଲୋକଙ୍କ ଠାରୁ ବହୁତ କଥା ଶୁଣିବାକୁ ମିଳେ । ଏଇ କଥାଟି ମଧ ସେମିତି ରସୁଆଳ ।

ମୋ ବନ୍ଧୁ ତାଙ୍କର ଜଣେ ଇଂରେଜ ବନ୍ଧୁଙ୍କ ଘରେ ରହିଥିଲେ । ଇଂରେଜ ବନ୍ଧୁଙ୍କ ନାମ ଏଡ୍‌ୱାର୍ଡ୍ ଡାକ ନାମ ଏଡ୍ । ତାଙ୍କ ପତ୍ନୀଙ୍କ ନାମ ଏମିଲି । ଡାକ ନାମ ମିଲି । ଏଡ୍ ଏବଂ ମିଲି ଉଭୟଙ୍କର ଗୋଟିଏ ଗୋଟିଏ ମଟର କାର । ଏଡ୍‌ଙ୍କ ଗାଡ଼ିଟି ସେତେବେଳେ ମରାମତ ହେବାକୁ ଗ୍ୟାରେଜ୍‌ରେ ଥାଏ । ମିଲିଙ୍କର ଗାଡ଼ିରେ ଡ୍ରାଇଭର ସିଟ୍‌କୁ ଲାଗି ମାତ୍ର ଗୋଟିଏ ସିଟ୍ । ପଛରେ ସିଟ୍ ନାହିଁ । ଅର୍ଥାତ୍ ସେଥିରେ ଦୁଇ ଜଣ ମାତ୍ର ବସିପାରିବେ । ଗୁଞ୍ଜିଗାଞ୍ଜି ହୋଇ ତିନି ଜଣ ହୁଏତ ବସିପାରିବେ । କିନ୍ତୁ ବ୍ରିଟେନ୍‌ରେ ଆଇନ ଅନୁଯାୟୀ କାରର ସାମ୍ନା ସିଟ୍‌ରେ ଯିଏ ବସିବେ ସେମାନେ କାନ୍ଧରୁ ଅଣ୍ଟା ଯାଏ ବାଁ ଡାହାଣରେ ଦୁଇଟି ବେଲ୍‌ଟ ଭିଡ଼ି ବସିବାକୁ ବାଧ । ଏଇ ବେଲ୍‌ଟ ମଧ ଗାଡ଼ିର ସିଟ୍ ସହିତ ଫିଟ୍ କରାଯାଇଥାଏ ।

ମିଲିଙ୍କ ଗାଡ଼ିରେ ବୁଲିଯିବା ସ୍ଥିର ହେଲା । ମୋ ବନ୍ଧୁ, ଏଡ୍‌ୱାର୍ଡ୍ ଓ ଏମିଲି ଏକାଠି କେମିତି ଲଣ୍ଡନ ଓ ଅନ୍ୟସ୍ଥାନ ସବୁ ସେଇ ଦୁଇ ସିଟ୍‌ବାଲା ଗାଡ଼ିରେ ବୁଲିବେ ବିଚାର ବିମର୍ଷ ହେଲା । ଭାରତ ପରି ସେଠାରେ ଆଇନର ଖିଲାପ କରି ଖସିଯାଇ ହୁଏନି ଏବଂ ସାଧାରଣ ନାଗରିକ ଆଇନକୁ ମନଇଚ୍ଛା ଭାଙ୍ଗିବା ଚିନ୍ତା ମନରେ ହଠାତ୍ ପୂରାଇବ ନାହିଁ । ତେଣୁ ଏଡ୍ କିମ୍ବା ମିଲି କିଏ ଜଣେ ହେଲେ ଆମ ବନ୍ଧୁ ଯୋଗେନ୍ଦ୍ର ଦାସଙ୍କୁ (ଡାକ ନାମ ଯୋଗ) ନେଇ ବୁଲାଇବ । ତିନି ଜଣ ମିଶିଯିବା ସମ୍ଭବ ନୁହେଁ । ବିନା ବେଲ୍‌ଟରେ ଜଣକୁ ନେବା ସମ୍ଭବ ନୁହେଁ । ବାଟରେ ଟ୍ରାଫିକ ୱାଡେନ୍ । ସାଧାରଣତଃ ଗାଢ଼ ନୀଳ ରଙ୍ଗର ପୋଷାକ ପିନ୍ଧି ମହିଳାମାନେ ଟ୍ରାଫିକ୍ ପୁଲିସ କାମ କରନ୍ତି ରାସ୍ତାରେ । ଧରିଲେ ଜୋରିମାନା ସର୍ବନିମ୍ନ ଶହେ ପଚାଶ ଟଙ୍କାରୁ ବେଶି ।

କିନ୍ତୁ ବନ୍ଧୁତା ଏତେ ଗାଢ଼ ହୋଇଗଲାଣି ଯେ ତିନି ଜଣଯାକ ଏକାଠି ବୁଲିବେ । ନଚେତ୍ ମଜା ଆସିବନି । ଭାବିଲେ କୌଣସି ବନ୍ଧୁଙ୍କୁ ମିଲିଙ୍କ ଗାଡ଼ିଟା ଦେଇ ତାଙ୍କ ଠାରୁ ଆଗପଛ ସିଟ୍ ଥିବା ଗାଡ଼ି ଧାର ଆଣିବେ । ଟେଲିଫୋନ୍ କରାଗଲା । ସେମିତି କିଛି ସୁବିଧାଜନକ ପ୍ରସ୍ତାବ ମିଳିଲାନି ।

ଏହି ଆଲୋଚନା ଭିତରେ ହଠାତ୍ ମିଲିଙ୍କ ମୁଣ୍ଡକୁ ଗୋଟାଏ ଚମତ୍କାର ବୁଦ୍ଧି ପଶିଗଲା । ସେ ଚିତ୍କାର କରି ଉଠିଲେ "ହେ-ହେ, ମୁଁ ଗୋଟାଏ ଉପାୟ ପାଇଗଲି ।"

ଯୋଗେନ୍ଦ୍ର ଓରଫ ଯୋଗ୍ ଏବଂ ଏଡ୍‌ୱାଡ୍ ଓରଫ ଏଡ୍ ଉତ୍ସୁକ ହୋଇ ମିଲିଙ୍କ ଆଡ଼କୁ ଅନେଇଲେ ।

ମିଲି ହସରେ କୁରୁଳି ଉଠିଲେଣି । "ସଲ୍ୟୁସନ ଅର୍ଥାତ୍ ସମାଧାନର ସୂତ୍ର ହେଲା ଏଡ୍ ଗାଡ଼ି



Digitized by srujanika@gmail.com

ଚଳେଇବେ । ପାଖ ସିଟ୍‌ରେ ଯୋଗ ବସିବେ । ମୁଁ ତାଙ୍କ କୋଳରେ ବସିଯିବି । ଗୋଟାଏ ସେଟ୍ ବେଲ୍‌ଟରେ ଆମେ ଦୁଇ ଜଣ ବାନ୍ଧି ହୋଇ ବସିଯିବୁ ।''

ମିଲିଙ୍କ ସ୍ୱାମୀ ଠୋ କରି ଉତ୍ତର ଦେଲେ 'ମାର୍ଭେଲସ୍ । ଏକ୍ସଲେଣ୍ଟ ଆଇଡିଆ, ପ୍ରୋବ୍ଲେମ ଓଭର ।''

ଯୋଗେନ୍ଦ୍ର ଭାରତୀୟ ତ । ଏ ପ୍ରସ୍ତାବ ଶୁଣି ଅପ୍ରତିଭ ହେଲେଣି । ''କହିଲେ ନା ନା ସେମିତି କେମିତି ହେବ ।''

ଏମିଲି ଓ ଏଡ୍‌ୱାଡ୍ ଏକ ସମୟରେ 'କାହିଁକି ହେବନି' ବୋଲି କହି ଉଠିଲେ ।

ଯୋଗେନ୍ଦ୍ର ଭାବୁଛାନ୍ତି ''ଆଉ ଜଣଙ୍କର ଯୁବତୀ ସ୍ତ୍ରୀଟା ମୋ କୋଳରେ ବସି ଗୋଟାଏ ବେଲ୍‌ଟରେ ଟାଇଟ୍ ହୋଇ ବନ୍ଧା ହେବ । ସେମାନଙ୍କୁ ସିନା କିଛି ଲାଗୁନି । ପୁରୁଷ ସ୍ତ୍ରୀ ବନ୍ଧୁତା ଏଠି ହୋଇଗଲେ କେତେ କଥା ଚଳିଯାଏ, ଯାହାକି ଭାରତରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ମଧ ଚଳିବା କଷ୍ଟକର ଯଦି ପାଖରେ ପରିବାରର ଲୋକ ଥାଆନ୍ତି । ତା'ଛଡ଼ା ମୁଁ ତ ମୁନୀ ଋଷି ନୁହେଁ ଯେ ଏପରି ପରିସ୍ଥିତି ମୋ ମନରେ ଓ ଦେହରେ କୌଣସି ଉତ୍ତେଜନା ଆଣିବନି ।

ଯୋଗେନ୍ଦ୍ରଙ୍କର ଏହି ଭାବନାକୁ ଭାଙ୍ଗି ମିଲି ତାଙ୍କ ବାହୁରେ ଠେସାଟାଏ ମାରି କହିଲେ ''ଭାବୁ ଚ କ'ଣ ? କିଛି ହବନି । ଦିନେ ବୁଲିଲା ପରେ ଅଭ୍ୟାସ ହୋଇଯିବ । କିଛି ଅଡୁଆ ଲାଗିବନି ।''

ଆମ ବନ୍ଧୁ ଇଂଲଣ୍ଡରେ ଯେଉଁ ତିନି ସପ୍ତାହ ରହିଲେ ପ୍ରାୟ ଦୁଇ ସପ୍ତାହ କାଳ ତାଙ୍କ କୋଳରେ ମିଲି ବସିଲେ । ଭାବନ୍ତୁ ତ ଏଠି ସେ କଥା ହୋଇପାରିଥାନ୍ତା କି ?

(ତା୨୨.୦୮.୧୯୮୩ରିଖ)





Digitized by srujanika@gmail.com

# ଅଷ୍ଟମୀ ଖର୍ଚ୍ଚ

ଦିନେ ଆମେ ଗୋଟାଆଡ଼େ ଯାଉଥିଲୁ ଭୁବନେଶ୍ୱରରୁ । ବାଟରେ ଦୁଇ ତିନିଟି ଥାନା ଅଞ୍ଚଳ ପଡ଼େ । ବିଭିନ୍ନ ସ୍ଥାନରେ ପୋଲିସବାଲା ଗାଡ଼ିସବୁ ବିଶେଷକରି ଟ୍ରକ, ବସ୍, ଟ୍ରେକର ଓ ମାଟାଡର ଆଦି ଅଟକାଇ ଯାଞ୍ଚ କରୁଥାନ୍ତି ।

ଆମ ଗାଡ଼ି ଡ୍ରାଇଭର ହଠାତ୍ କହିଲା, ''ଆଜ୍ଞା, ଅଷ୍ଟମୀ ଖର୍ଚ୍ଚ ଉଠୁଛି ।'' ତହିଁ ଆରଦିନ କି ତା' ପରଦିନ ପ୍ରଥମାଷ୍ଟମୀ ଥାଏ । ଏଣ୍ଡୁରି ପିଠା ସହିତ ବଡ଼ ପୁଅ ଝିଅ ପୋରୁହାଁ ବା ପୋଢୁଆଁ ହେବେ । ରାସ୍ତାରେ ହଳଦୀପତ୍ର ବି ଠାଏ ଠାଏ ବିକ୍ରି ହେଉଥାଏ ।

ଗୋଟାଏ ଜାଗାରେ ଆମ ଗାଡ଼ିକୁ ବି ଅଟକାଇଲେ ପୋଲିସବାଲା । ଡ୍ରାଇଭରକୁ ତା'ର ଲାଇସେନ୍ସ ମାଗିଲେ । ଯାଞ୍ଚ କରି ଫେରାଇଦେଲେ ଓ ଗାଡ଼ିର କାଗଜପତ୍ର ମାଗିଲେ । ଗାଡ଼ିର ରେଜିଷ୍ଟ୍ରେସନ ବହିଟି ଆମେ ନେଇନଥିଲୁ । ଗାଡ଼ିଟିକୁ ରାସ୍ତାକଡ଼ରେ ସାଇଡ୍ କରିବାକୁ କହି ପୋଲିସ ଜଣକ ଆଉ ଗୋଟିଏ ଗାଡ଼ି ପାଖକୁ ଚାଲିଗଲେ । କିଛି ସମୟ କଟିଲା ପରେ ସେ ନ ଫେରିବାରୁ ମୁଁ ଡ୍ରାଇଭରକୁ ପଠାଇଲି କହିବାକୁ ଯେ ଗାଡ଼ିର ଟ୍ୟାକ୍ସ ଟୋକନ ତ ଅଛି । ଆଉ ଗାଡ଼ି ବିଷୟରେ କ'ଣ ତାଙ୍କର ଅଧିକା ଜାଣିବାର ଅଛି ବୁଝିବାକୁ । ପ୍ରାଇଭେଟ୍ କାରରେ ଆମେ ଦି' ଜଣ ଓ ଡ୍ରାଇଭର ।

ଡ୍ରାଇଭର ତାଙ୍କୁ ଯାଇ ଟ୍ୟାକ୍ସ ଟୋକନ ଥିବା କଥା କହିଲା । ପୋଲିସ ବାବୁ କହିଲେ, 'ଟ୍ୟାକ୍ସଟୋକନ ଥିଲେ କ'ଣ ହେଲା ? ବହି କାହିଁ ? ଡ୍ରାଇଭର କାନ ଆଉଁସି ଫେରିଲା । ଗାଡ଼ି ପାଖରେ ଠିଆ ହୋଇ କହିଲା, ''ସାର୍ ଦଶଟା ଟଙ୍କା ନେବେ ।''

ମୁଁ ପଚାରିଲି 'ତତେ କହିଲେ ଦଶ ଟଙ୍କା ନେଲେ ଗାଡ଼ି ଛାଡ଼ିଦେବେ ?''

ଡ୍ରାଇଭର କହିଲା, ''ନାହିଁ ଆଜ୍ଞା ମତେ କହିନାହାନ୍ତି ଯେ, କିନ୍ତୁ ଦଶ ଟଙ୍କା ଦେଲେ ଛାଡ଼ିଦେବେ ମୁଁ ଜାଣିଛି ।'

ମୋ ସାଙ୍ଗରେ ଥିବା ବନ୍ଧୁ ଜଣକ ଦଶ ଟଙ୍କିଆ ନୋଟ୍ ଖଣ୍ଡିଏ ଡ୍ରାଇଭରକୁ ବଢ଼ାଇ ଦେଇ କହିଲେ, 'ଯାଇ ଦେଖିଲ, ହଉଚି କି ନାହିଁ ?''

ଡ୍ରାଇଭର କହିଲା, ''ହେଇଯିବ ଆଜ୍ଞା ।''

ଡ୍ରାଇଭର ଫେରିଆସି ଗାଡ଼ିରେ ବସି ଷ୍ଟାର୍ଟ କଲା । ବନ୍ଧୁ ପଚାରିଲେ, 'କ'ଣ ହେଲା ?' ଡ୍ରାଇଭର କହିଲା ''ମୁଁ ସାର କହୁଥିଲି ପରା ।' ଏତିକି କହି ସେ ଗାଡ଼ି ଚଳେଇଲା ।

ଟିକେ ଆଗକୁ ଗଲା ପରେ ଯେଉଁଠି ପୋଲିସବାବୁ ଠିଆ ହୋଇଥିଲେ ସେଠାରେ ଗାଡ଼ି ଅଟକାଇ ମୁଁ ତାଙ୍କୁ ଡାକିଲି । ପାଖକୁ ଆସିଲାରୁ ମୁଁ ତାଙ୍କୁ ପଚାରିଲି'' ଆଚ୍ଛା ଆଜ୍ଞା ରେଜିଷ୍ଟ୍ରେସନ ବହି ନ ଦେଖେଇଲେ କ'ଣ ମାତ୍ର ଦଶ ଟଙ୍କା ଜୋରିମାନା ବିନା ରସିଦ୍‌ରେ ?'' ସେ ଅପ୍ରତିଭ ହୋଇ କହିଲେ, ''କଣ ଆଜ୍ଞା, ନାହିଁ ଆଜ୍ଞା...'' ଆଉ କ'ଣ କହିବେ କହିବେ ବୋଲି ଭାବି ଇତସ୍ତତଃ ହେଉଥିଲେ ।

ମୋ ବନ୍ଧୁଙ୍କୁ ଇଙ୍ଗିତ କରି ମୁଁ ତାଙ୍କୁ କହିଲି: 'ଇଏ ହେଲେ ତୁମ ନୂଆ ଡି.ଆଇ.ଜି. । ମୁଁ ଅବଶ୍ୟ ଜଣେ ସାମ୍ବାଦିକ ମାତ୍ର ।' ପୋଲିସ ବାବୁ ଫଟକରି ଗୋଡ଼ର ଯୋତାକୁ ପିଟି ସାଲ୍ୟୁଟ୍ ମାରି: ''ସାର



Digitized by srujanika@gmail.com

ଭୁଲ ହୋଇଯାଇଛି ସାର । ସାର ଆଇ ୱଇଲ୍ ନେଭର ଡୁ ଇଟ୍ ସାର । ସାର ମାଫ୍ କରନ୍ତୁ ସାର । ସାର... ସାର'' କହି ତରବରରେ କୋଡ଼ିଏ ଟଙ୍କିଆ ନୋଟଟିଏ ଆମ ଗାଡ଼ିରେ ହାତ ପୂରାଇ ଡ୍ରାଇଭର ପକେଟ୍‌ରେ ଗୁଞ୍ଜି ପକେଇଲେ । ପୁଣି ସାଲ୍ୟୁଟ୍ । ଆଟେନ୍‌ସନ୍ ପୋଜିସନ ।

ମୋ ବନ୍ଧୁ ପ୍ରଥମେ ହସି ଆସୁଥିଲେ । ହଠାତ୍ ମୋ ପ୍ରାକ୍‌ଟିକାଲ ଜୋକ୍ ବୁଝିପାରି ବେଶ୍ ଗମ୍ଭୀର ହୋଇ ବସିଥିଲେ ।

ମୁଁ ପୋଲିସବାବୁଙ୍କୁ ଥଟ୍ଟା କରି କହିଲି 'ଆରେ ଅଧିକା ପଇସା ଫେରେଇଲେ ଯେ । ରଖନ୍ତୁ ଅଷ୍ଟମୀ ଖର୍ଚ୍ଚଟା ଯେ ଆଗରେ ।'

ପୋଲିସବାବୁ ମୋତେ ବି ଗୋଟାଏ ସାଲ୍ୟୁଟ୍ ମାରି 'ସାର ଭୁଲ ହୋଇଯାଇଛି ସାର...' କହୁଥିଲେ । ଡ୍ରାଇଭର ଗାଡ଼ିର ବେଗ ବଢ଼ାଉଥିଲା । ଆମେ ହସି ହସି ପେଟ ପରାସ ।

(ତା୧୩.୧୨.୧୯୮୬ରିଖ)





Digitized by srujanika@gmail.com

# ବ୍ରେନଟ୍ୟୁମର ଓ ପ୍ରପର ଚ୍ୟାନେଲ ଟେକ୍‌ନିକ

ଦିନେ ଏକ ସରକାରୀ ବିଭାଗୀୟ କର୍ମଚାରୀମାନଙ୍କର ୟୁନିୟନର ବାର୍ଷିକ ଅଧିବେଶନକୁ ଯାଇଥିଲି । ସବୁ କର୍ମଚାରୀ ମାନଙ୍କର ଉପରିସ୍ଥ ଅଫିସର ମାନଙ୍କ ବିରୋଧରେ ଅଭିଯୋଗ ବଡ଼ ତୀବ୍ର । କିନ୍ତୁ ଜଣେ ମଧ୍ୟମ ସ୍ତରର ଅଫିସରଙ୍କ ବିରୋଧରେ କର୍ମଚାରୀ ମାନଙ୍କର ଅଭିଯୋଗରେ କ୍ରୋଧ ଭରି ରହିଛି ।

ସେ ଅଫିସରଙ୍କୁ ଏପରି ଏକ ଚାବିକାଠି ସ୍ଥାନରେ ଅବସ୍ଥାପିତ କରାଯାଇଛି ଯେଉଁଥିରେ ପ୍ରତ୍ୟେକ ତୃତୀୟ ଶ୍ରେଣୀ ଓ ଚତୁର୍ଥ ଶ୍ରେଣୀ କର୍ମଚାରୀ ଚାକିରିର ଯେକୌଣସି ଦିଗ ସେହିବାଟ ଦେଇ ଯିବାକୁ ବାଧ । ସେ ଅଫିସରଙ୍କର ମୁଣ୍ଡ ଅର୍ଥାତ ମସ୍ତିଷ୍କରେ ଟ୍ୟୁମର ହୋଇଛି । ଟ୍ୟୁମର ଅପରେସନ୍ ହେଲାପରେ ମଧ୍ୟ ସେ ଅଫିସର ବେଶୀ ମସ୍ତିଷ୍କ କାମ କରିବାକୁ ସମର୍ଥ ନୁହଁନ୍ତି । ତାଙ୍କୁ ବେଶୀ ଅନୁରୋଧ କଲେ ସେ ଚଉକୀରୁ ପଛଆଡ଼କୁ ମୁଣ୍ଡଟାକୁ ଝୁଲେଇ ଦେଇ ଆଖିଦିଟା ଗୁଞ୍ଜୀଦେଇ ମଥାରେ ହାତ ଦେଇ କହନ୍ତି 'ଓଃ ମତେ ଆଉ ବ୍ୟସ୍ତ କରନା । ମୋର ବ୍ରେନ ଟ୍ୟୁମର । ମୋର କାଳେ କ'ଣ ହୋଇଯିବ । ମୋ ପିଲାଛୁଆ ଭାସିଯିବେ ।

ବାଧହୋଇ ତଳିଆ କର୍ମଚାରୀମାନେ କପାଳରେ ହାତମାରି ଫେରନ୍ତି । ଫାଇଲରେ 'ବ୍ରେନ ଟ୍ୟୁମର ଅଫିସର' ଯାହା ଲେଖନ୍ତି ସେଥିରେ କର୍ମଚାରୀମାନଙ୍କର ସୁବିଧା ପରିବର୍ତ୍ତେ ଅସୁବିଧା ବହୁଗୁଣ ବଢ଼ିଯାଏ ।

ଏହି ଅଫିସରଙ୍କ ଦୃଷ୍ଟିଶକ୍ତି ମଧ୍ୟ ବଡ଼ କମ । ତେଣୁ ଫାଇଲ କିମ୍ବା କାଗଜପତ୍ର ପଢ଼ିବା ବେଳେ ଆଖିକୁ କାଗଜରୁ ଦୁଇ ତିନି ଇଞ୍ଚ ପାଖରେ ଲଗେଇ କରି ପଢନ୍ତି । କାହାକୁ ଏଡେଇବାକୁ ହେଲେ କହନ୍ତି 'ଯାଅ ବାବୁ ଆଖିଟା ବଡ଼ ଖରାପ ହୋଇଗଲାଣି । ପରେ ତୁମ ଦରଖାସ୍ତଟା ପଢି ନୋଟ ଦେବି' । ଏଥିକୁ ଆଉ ଉପାୟ କଣ ?

ସବୁଠୁ ବଡ଼ ମଜା କଥା ହେଲା ଯେ, ତଳିଆ କର୍ମଚାରୀମାନେ ଯେଉଁ ଦରଖାସ୍ତ ଆଦି ଦିଅନ୍ତି ତାହା ଉପରେ ଏହ ଅଫିସର ନିଜେ କୌଣସି ନିଷ୍ପତ୍ତି ନନେଇ ତାଙ୍କ ତଳେ ଥିବା ଏକ ଅଫିସରଙ୍କ ପାଖକୁ 'ଅମୁକ ଅଫିସର ଏହି ବ୍ୟାପାରରେ କିମ୍ବା ଦରଖାସ୍ତ ଯାଞ୍ଚ କରି ତୁମର ରିପୋର୍ଟ ବା ମନ୍ତବ୍ୟ ଦିଅ' ଲେଖି ଫାଇଲଟି ତାଙ୍କ ଚଳକୁ ଫେରାଇ ଦିଅନ୍ତି ।

ବ୍ରେନ ଟ୍ୟୁମର ଅଫିସରଙ୍କ ତଳେ ଯେଉଁ ଅଫିସର ଥିଲେ ସେ ପ୍ରମୋସନ ପାଇ କେନ୍ଦ୍ର ଅଫିସରେ ଉଚା ଚଉକୀରେ ଯାଇ ବସିଲେଣି । ତଳ ଅଫିସରଙ୍କ ଯାଗାରେ ବର୍ଷେ ହେଲା ଆଉ କେହି ପୋଷ୍ଟିଂ ହୋଇ ନାହାନ୍ତି । ତେଣୁ ଏ ଅଫିସର ଏକଜାମିନ ଆଣ୍ଡ ରିପୋର୍ଟ' ଯେଉଁ ଫାଇଲରେ ଲେଖି ଦିଅନ୍ତି ତାଙ୍କ ପିଅନ ସେ ଫାଇଲଟି ନେଇ ପୋଷ୍ଟିଂ ହୋଇ ନଥିବା ଅଫିସରଙ୍କ କୋଠରୀରେ ଟେବୁଲ ଉପରେ ରଖି ଦେଇ ଆସେ । ସେ କୋଠରୀଟି ବନ୍ଦ ରହିଛି । ତେଣୁ ଫାଇଲ ଗୁଡ଼ିକ ସେ ରୁଦ୍ଧ କୋଠରୀରେ ଅଣନିଶ୍ୱାସୀ ଅବସ୍ଥାରେ ନିଜ ଉପରେ ଧୂଳି ଜମାଉଛନ୍ତି । ଫାଇଲ ସଂଖ୍ୟା ପ୍ରତିଦିନ ବଢିଚାଲିଛି । ବ୍ରେନ ଟ୍ୟୁମର ଅଫିସର ଜାଣନ୍ତି ଯେ, ସେ ଫାଇଲ ଆଉ ଫେରିବନି । ସେଥିପାଇଁ



Digitized by srujanika@gmail.com

ତାହା ଏକ ବଢ଼ିଆ ଏସକେପ ରୁଟ । ସରକାରୀ ନିୟମ ଅନୁସାରେ ସେ ଯେ, ଭୁଲ କରୁଛନ୍ତି ଏକଥା କହି ହେବନାହିଁ । କାରଣ 'ପ୍ରପର ଚ୍ୟାନେଲ' ନିୟମ ମଧ ଲଘଂନ କରାଯାଇ ପାରେନା । ବ୍ରିଟିଶ ନିୟମର କରାମତ ବଡ଼ ବେଶୀ ।

ଏଇ ତଳିଆ କର୍ମଚାରୀମାନେ ହତାଶ ହୋଇ ବେଳେ ବେଳେ ଯାଇ ସେ କୋଠରୀର ବନ୍ଦ ଝରକାର କାଚରେ ଆଖିକୁ ମାଡ଼ି ଭିତରକୁ ଅନାଉଛନ୍ତି କାଳେ ନୂଆ ଅଫିସର ଆସିବେଣି । ଅନ୍ଧାର ଘର ଭିତରେ ବେଶୀ ନିରିଖେଇ ଦେଖିଲେ ଫାଇଲ ସଂଖ୍ୟା ଟେବୁଲ ଉପରେ ବଡ଼ ଥାକ ହେଇ ଦୁଇ ତିନି ଫୁଟ ଉଚ୍ଚ ହେଲାଣି । ଯାଗା ନହେବାରୁ ଚଟାଣରେ ମଧ କେତୋଟି ଫାଇଲ ଥାକ ଉଚ୍ଚତାରେ ବଢ଼ିବାରେ ଲାଗିଲେଣି ।

(ତା୨୯.୦୮.୧୯୮୩ରିଖ)





Digitized by srujanika@gmail.com

# ବିନା ଛାଡପତ୍ରରେ ସ୍ୱାମୀକୁ ଛାଡ !

ବିଜ୍ଞାପନ ମଧ୍ୟ ସମ୍ବାଦ-ଏକଥା ଏବେ ସ୍ୱୀକୃତ । ଆଗେ ତାହା କେବଳ ବ୍ୟବସାୟିକ ବ୍ୟବସ୍ଥା ବୋଲି ଧରାଯାଉଥିଲା । ଗତମାସ ଅର୍ଥାତ୍ ଅକ୍ଟୋବର ୨୭ ତାରିଖ ୧୯୮୪ ମସିହାର ଦୈନିକ 'ସମାଜ'ରେ ଇଂରାଜୀରେ ଏକ ଛୋଟ ବିଜ୍ଞାପନ ପ୍ରକାଶ ପାଇଥିଲା, ଯାହାର ସମ୍ବାଦ ମୂଲ୍ୟ ଯଥେଷ୍ଟ ବୋଲି ମନେହୁଏ । ବିଜ୍ଞାପନଟିକୁ ଓଡ଼ିଆରେ ଅନୁବାଦ କରି ପଢ଼ାଯାଉ ।

ବିବାହ

'ଯୌତୁକ ବିନା କଟକ ସହରର ମଙ୍ଗଳାବାଗଠାରେ ୧୯୮୫ ଜାନୁଆରୀରେ ହିନ୍ଦୁ ବିଧି ଓ ହିନ୍ଦୁ ବିବାହ ରେଜିଷ୍ଟ୍ରେସନ ଅନୁସାରେ ସମ୍ପାଦିତ ହେବ । ମୋର ପୁତୁରା/ଭଣଜାର nephew । ନିରଳସ ଅଭ୍ୟାସର ଦିଲ୍ଲୀରେ ରହୁଥିବା ଇଲେକ୍ଟ୍ରିକାଲ ଇଞ୍ଜିନିଅରର ଦ୍ୱିତୀୟ ବିବାହ ଏବଂ ଶେଷ ପସନ୍ଦ ଯଥାର୍ଥ ପରମ୍ପରାରେ ହେବ । ଓଡ଼ିଆ/ବଙ୍ଗାଳୀ/ହିନ୍ଦି/ତେଲୁଗୁ ଓଡ଼ିଆ କହିପାରୁଥିବା କିମ୍ବା ଓଡ଼ିଶା ଏବଂ ଓଡ଼ିଶା ବାହାରର ଦୋମିଶା(Domicile) ଝିଅ, ବୟସ ୨୩-୨୫, କସ୍‌ମୋପଲିଟାନ ଏବଂ ନୈତିକ ପୃଷ୍ଠଭୂମିର ହୋଇଥିବ ଏବଂ ଜାତକ ଉପରେ ବିଶ୍ୱାସ ଥିବ । ଝିଅଟି ବର୍ଷକୁ ଅନ୍ତତଃ ୧୨ ସପ୍ତାହ କଟକରେ ରହିବାକୁ ରାଜୀ ହେବ ।'

ବିଜ୍ଞାପନଦାତା ଓକିଲ କି ଜଜ ହୋଇଥିବେ ପରା । ଯେଉଁ ଝିଅସବୁ ଏ ବିବାହ ପାଇଁ ଆଗେଇ ଆସିବେ ସେମାନେ ଉପରଲିଖିତ ସର୍ତ୍ତରେ ସବୁ ରାଜୀନାମା ଦସ୍ତଖତ କରିବାକୁ ପ୍ରସ୍ତୁତ ରହିବେ । ସର୍ତ୍ତର ଖିଲାପ କଲେ ଆଇନ ଅନୁଯାୟୀ କିମ୍ବା ବେଆଇନ ଭାବରେ ଦଣ୍ଡିତ ହେବାକୁ ପ୍ରସ୍ତୁତ ଥିବେ । ଦଣ୍ଡବିଧିରେ ଓପାସ ରଖାଯିବା, ଘରେ ତାଲା ପକାଇ ବନ୍ଦ କରାଯିବା, ଗାଳି, ତାସଲ୍ୟ, ବାପା ମା'ଙ୍କ ପୂର୍ବପୁରୁଷର ଶ୍ରାଦ୍ଧ, ମାଡ଼, ଘରୁ ତଡ଼ି ଦିଆଯିବା ଆଦି ସହିତ ବିଭିନ୍ନ ଉପାୟରେ ମୃତ୍ୟୁଦଣ୍ଡ ମଧ୍ୟ ଦିଆଯାଇପାରେ କିମ୍ବା ତହିଁର ଆଶଙ୍କା ଥିବ । ତଥାପି ଭାଗ୍ୟ ଦୋଷରୁ ଯେଉଁ ଝିଅମାନେ କୌଣସି କିମ୍ବା ବିଭିନ୍ନ କାରଣରୁ ଅଭିଆଡ଼ୀ ରହିଯାଇଥିବେ ତେବେ ବାପଘରେ ଖୁଣ୍ଟରେ ବନ୍ଧାହେବା ଠାରୁ କଡ଼ା ଶାଶୁ ପାଖରେ ବରଂ ଗଞ୍ଜଣା ସହି ସ୍ୱାମୀଟିଏ ଯୋଗାଡ଼ କରିନେବା ଆଶାରେ ନିଶ୍ଚୟ ଦରଖାସ୍ତ କରିବେ । ବିଜ୍ଞାପନଟିକୁ ବିଶ୍ଳେଷଣ କଲେ ବହୁତ ଲମ୍ବା ହେବ । ତାହା ପାଠକମାନେ କରନ୍ତୁ ।

ବିଜ୍ଞାପନଦାତା ବୋଧହୁଏ ଭୁଲିଯାଇଛନ୍ତି ନିମ୍ନଲିଖିତ କଥାଗୁଡ଼ିକୁ ଲେଖିବାକୁ । ଭୁଲିଯାଇଛନ୍ତି କି ବିଜ୍ଞାପନ ପାଇଁ ଅଧିକ ପଇସା ପଡ଼ିବ ବୋଲି ତାହାସବୁ ଲିଖିତ ପରୀକ୍ଷା ଏବଂ ବ୍ୟକ୍ତିଗତ ସାକ୍ଷାତକାର ପାଇଁ ରିଜର୍ଭ ରଖିଛନ୍ତି ତାହା ଜଣା ପଡୁନାହିଁ । ହୁଏତ ତାଙ୍କର ଲେଖିବାର ଥିଲା: 'ଆଗରୁ (ଝିଅ) ବିବାହ କରି ନଥିବ; ଏତେ ଫୁଟ ଏତେ ଇଞ୍ଚରୁ କମ ଓ ବେଶୀ ଡେଙ୍ଗା ହୋଇଥିବ/ ହୋଇନଥିବ; ଏତେ କିଲୋରୁ କମ୍/ବେଶୀ ଓଜନ ହୋଇଥିବ/ହୋଇନଥିବ; ଅଣ୍ଟାର ଗୋଲେଇ ଏତେରୁ ଏତେ ଭିତରେ ହୋଇଥିବ, କାଳୀ/ଶ୍ୟାମଳୀ/ଗୋରୀ ହୋଇଥିବ, କାଣୀ ବା ଅନ୍ଧୁଣୀ ହୋଇନଥିବ/ନଥିଲେ ଭଲ, ଅଧିକ ସୁସ୍ଥ/ରୁଗ୍‌ଣ ହୋଇନଥିବ, ହସିଲେ ଦାନ୍ତ ମାଢ଼ି ଦେଖାଯାଉ



Digitized by srujanika@gmail.com

ନଥିବ, ଅଳ୍ପ ଖାଉଥିବ, କମ୍ ଶୋଉଥିବ, ବେଶୀ ଖଟୁଥିବ, ଭଲ ଚା' କରି ଜାଣୁଥିବ, ସ୍ୱାମୀଠାରୁ ଶାଶୁକୁ ବେଶୀ ନଜର ଦେବ, ଟେବୁଲ ମ୍ୟାନରସ ଜାଣିଥିବ, ଦେହର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ମାପ ଓଜନ ହିସାବ ଏପରି ହୋଇଥିବ' ଇତ୍ୟାଦି ବହୁକଥା ବିଜ୍ଞାପନରେ ଉଲ୍ଲେଖ କରାଯାଇ ନାହିଁ । ବଡ଼ କଥା ଓଡ଼ିଆ ଜାଣିଥିବ ବୋଲି ଲେଖା ଥିଲାବେଳେ ଇଂରାଜୀ ଜାଣିଥିବ, ଇଂରାଜୀରେ ଶାଶୁକୁ ଅନ୍ତତଃ ଚିଠି ଲେଖିପାରୁଥିବ ଏବଂ ନଣନ୍ଦ ସହିତ ଇଂରାଜୀରେ କଥା କହିପାରୁଥିବ ଆଦି ଯୋଗ୍ୟତାର ଉଲ୍ଲେଖ ନାହିଁ । ସୁନ୍ଦରୀ ହୋଇଥିବ ନା ନାହିଁ ଚଳିବ ।

ଯଦି କଟକରେ ବର୍ଷକୁ ଅନ୍ତତଃ ୧୨ ସପ୍ତାହ ରହିବ ତେବେ ମଙ୍ଗଳାବାଗରେ ରହିବତ ? କାରଣ ଯଦି ପାରିବାରିକ ଅସୁବିଧାରୁ କିଛି ଅଘଟଣ କିମ୍ବା ଦୁର୍ଘଟଣା ଘଟେ ତେବେ ବଡ଼ ଡାକ୍ତରଖାନା ପାଖରେ ଅଛି । ତଥାପି ମୃତ୍ୟୁକାଳୀନ ଜାମାନବନ୍ଦୀ ଦେବାକୁ ସଂଜ୍ଞାହୀନ ହେବା ପୂର୍ବରୁ ସବୁବେଳେ ପ୍ରସ୍ତୁତ ଥିବା ଦରକାର । କାରଣ ପୁତୁରା ବା ଭଣଜାଙ୍କ ପାଇଁ ଯଦି ତୃତୀୟ ବିବାହ ଆବଶ୍ୟକ ତେବେ ବିନା ଛାଡ଼ପତ୍ରରେ ଅନ୍ୟ କି ବ୍ୟବସ୍ଥା ଅଛି ?

(ତା୧୨.୧୧.୧୯୮୪ରିଖ)





Digitized by srujanika@gmail.com

# ବିଜୟୀ କିଏ ?

ଆମେରିକା ଓ ରୁଷିଆ ତୃତୀୟ ବିଶ୍ୱଯୁଦ୍ଧରେ ଆଣବିକ ଅସ୍ତ୍ରଶସ୍ତ୍ର ପୁରାଦମରେ ବ୍ୟବହାର କଲେ କିଏ ବିଜୟଲାଭ କରିବ ତା'ର ଏକ ସହଜ ସିଦ୍ଧାନ୍ତ ଆମ ବାଡ଼ିପଟ ଭେଣ୍ଡି ଆଉ ବାଇଗଣ ବଗିଚାରେ ମାତ୍ର କେତେଦିନ ତଳେ ଦେଖିବାକୁ ମିଳିଲା । ଆପଣ କିନ୍ତୁ ଘଟଣାଟିକୁ ସହଜରେ ପଢ଼ି ହସରେ ଉଡ଼ାଇ ଦେବନାହିଁ ।

ଗୋଟିଏ ନେଉଳ ପ୍ରାୟ ପ୍ରତିଦିନ ଆମ ହତା ଭିତରକୁ ବୁଲି ଆସେ । କାହିଁକି ଆସେ ଆମେ ଜାଣୁନା । କିନ୍ତୁ ନେଉଳଟିକୁ ଦେଖିଲେ ଖୁସିଲାଗେ । ଯେମିତି କି ଆମର ଜଣେ ପ୍ରିୟ ଆତ୍ମୀୟ । ନେଉଳଟି ବେଳେ ବେଳେ ଆମ ଘର ଭିତରେ ପଶି ଏଘର ସେଘର ବି ହୁଏ । ଏବେ ଦିନେ ଆମ ରୋଷେୟା ପିଲା ସକାଳ ପ୍ରାୟ ଦଶଟା ବେଳେ ପାଟି କଲା 'ଆମ ନେଉଳ ଗୋଟାଏ କାଉକୁ ଧରିନେଉଛି' । ଆମେ ସବୁ ବାଡ଼ି ପଟକୁ ଦଉଡ଼ିଲୁ ଦେଖିବାକୁ ଯେ ନେଉଳ କେଡ଼େ ଚାଲାଖିରେ ଉଡ଼ନ୍ତା କାଉଟାକୁ ଧରିନେଲା । ପ୍ରାୟ ଶହେ କାଉ ସେତେବେଳକୁ ଆକାଶରେ, କୋଠା ଉପରେ, ଗଛ ଉପରେ ଭୟଙ୍କର ଭାବରେ ରାବୁଛନ୍ତି । ସ୍ୱାଭାବିକ କଥା । ତାଙ୍କ ବିରାଦିରିରୁ ଜଣଙ୍କୁ ଦିବାଲୋକରେ ସେମାନଙ୍କ ଆଗରେ ହତ୍ୟା କରାଯାଉଛି ଦେଖି ସେମାନେ ନିରସ୍ତ୍ର ପ୍ରତିବାଦ କରୁଛନ୍ତି ।

ବାଇଗଣ ଓ ଭେଣ୍ଡି କିଆରିରେ ଆମେ ନେଉଳ ଓ କାଉକୁ ଖୋଜିଲୁ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଦେଖିଲୁ ଗୋଟାଏ ବାଇଗଣ ଗଛ ମୂଳରେ ନେଉଳ ମୁଣ୍ଡ ମୋଡ଼ି ଦେଇ ପଡ଼ିଛି । ପାଟିଟା ତା'ର ରକ୍ତାକ୍ତ । ଜୀବନର ଶେଷ ସମୟ । ନେଉଳର ପେଟଟା ସାମାନ୍ୟ ଉଠପଡ଼ ହେଉଥିଲା । ମାତ୍ର କେତେଟା ସେକେଣ୍ଡ ଭିତରେ ସେ ପେଟ ନିଷ୍ପନ୍ଦ ହୋଇଗଲା ।

ନେଉଳଠାରୁ ଫୁଟେ କି ଦଶ ଇଞ୍ଚ ମଧ୍ୟରେ ଗୋଟାଏ ଭେଣ୍ଡି ଗଛମୂଳେ କାଉଟା ପଡ଼ିଛି । ପରଟା ଛଟପଟ ଟିକେ ଟିକେ ହେଉଥିଲା । ନେଉଳ ଶେଷ ବେଳକୁ କାଉ ମଧ୍ୟ ଶେଷ । ସେ ଦୃଶ୍ୟ ବଡ଼ କରୁଣ । ଆମ ରୋଷେୟା ନେଉଳଟାକୁ ଏପଟ ସେପଟ ନେଉଟାଉଥିଲା । ତା' ମନରେ ହୁଏତ ଆଶା ଯେ, ନେଉଳ ଆଉ ବଞ୍ଚିଯିବ କି ? କାଉ ପ୍ରତି ଆମର ସ୍ନେହ କାହୁଁ ଆସିବ । ନେଉଳ ପ୍ରତି ଆମର ବଡ଼ ମାୟା । ଟେକି ଦେଖିଲାରୁ ଜଣାପଡ଼ିଲା ଯେ, ନେଉଳର ମୁଣ୍ଡରେ ଆଖି ଉପରକୁ ଗୋଟାଏ ଛୋଟ କ୍ଷତ । ସାମାନ୍ୟ ଗହୀରା ସେ କ୍ଷତ । କାଉ ପ୍ରାଣ ବିକଳରେ ତା' ଥଣ୍ଟରେ ଚୋଟଟାଏ ମାରିଛି । ନେଉଳର ବ୍ରେନରେ ହୁଏତ ତାହା ବସିଯାଇଛି । ଯଥେଷ୍ଟ । ନେଉଳ କାଉକୁ ଘୋଷାରି ଘୋଷାରି ନେଉଥିଲା ବେଳେ ଆମ ରୋଷେୟା ଦେଖିଛି । କାଉଟା ଅସହାୟ ଅବସ୍ଥାରେ ଫଡ଼ ଫଡ଼ ହେଉଥିଲା । ଆମ ରୋଷେୟା ସେତେବେଳେ ମନେ ମନେ ଗର୍ବ ଅନୁଭବ କରୁଥିଲା ।

ପୃଥିବୀରେ ଆଜି ଶାନ୍ତିପୂର୍ଣ୍ଣ ସହାବସ୍ଥାନ କେତେ ଅପରିହାର୍ଯ୍ୟ ସେ କଥା ମୁଁ ଭାବୁଥିଲି ଏ ଦୃଶ୍ୟ ଦେଖି । ଦୁଇ ବୃହତ ଶକ୍ତି ଆମେରିକା ଓ ରୁଷିଆ ପଛରେ ସମଗ୍ର ପୃଥିବୀ ଦୁଇଭାଗରେ ବିଭକ୍ତ । କେତେକ ରାଷ୍ଟ୍ର ଧର୍ମକୁ ଆଖିଠାର ମାରିଲା ଭଳି ତୃତୀୟ ବିଶ୍ୱ କିମ୍ବା ନିରପେକ୍ଷ ରାଷ୍ଟ୍ରଗୋଷ୍ଠୀ କହି ଏ ଝଗଡ଼ାରେ ପଶିବା ନାହିଁ ବୋଲି କହୁଛନ୍ତି । କିନ୍ତୁ ବିଶ୍ୱଯୁଦ୍ଧ ଲାଗିଗଲେ ଜିତିବ କିଏ ଭାବନ୍ତୁ ଦେଖି ।

**(ତା୧୨.୦୯.୧୯୮୩ରିଖ)**





Digitized by srujanika@gmail.com

# ଦର କେତେ ଖସିଲାଣି

ବନ୍ଧୁ ଟା' କପରେ ଚୁମକ ଦେଉଥିଲେ । କୋରାପୁଟର ଘନଜଙ୍ଗଲ ଭିତରେ ସେ ଆଦିବାସୀ ଜୀବନକୁ ଖୋଜି ଖିନ୍‌ଭିନ୍ କରି ଦେଖିବାକୁ ଚାହାଁନ୍ତି । ଗତ ଦଶବର୍ଷ ହେଲା ସେ ବିଭିନ୍ନ ଆଦିବାସୀ ସମ୍ପ୍ରଦାୟର ଜୀବନଯାତ୍ରା, ଐତିହ୍ୟ, ସଂସ୍କୃତି ଓ ସଂସ୍କାର ଆଦିକୁ ତାଙ୍କର ମାନସ ତୀକ୍ଷଣ ଯନ୍ତ୍ରରେ ମାପି ଚାଲିଛନ୍ତି । ଯେତେ ଖୋଳୁଛନ୍ତି ସେତେ ଅଧିକ ତଥ୍ୟ ବାହାରୁଛି ସେସବୁ ଜୀବନ ସମ୍ପର୍କରେ । କ୍ଳାନ୍ତି ପରିବର୍ତ୍ତେ ତାଙ୍କର ଆଗ୍ରହ ବଢୁଛି । ଗୋଟାଏ ଅଭିଜ୍ଞତା ବର୍ଣ୍ଣନା କରୁଥିଲେ ବନ୍ଧୁ । ବିଜୟ ନଗର ରେଳ ଷ୍ଟେସନରେ ସେ ରାତି ସାଢ଼େ ବାରଟା ବେଳେ ଗୋଟାଏ ପାନ ଦୋକାନ ସାମ୍ନାରେ ଠିଆ ହୋଇ 'କାମ୍ପା-କୋଲା' ପିଉଥିଲେ ଏବଂ ଉଦ୍ଦେଶ୍ୟହୀନ ଭାବରେ ଅନ୍ଧକାର ଘେରା ଦିଗ୍‌ବଳୟକୁ ଚାହିଁଥିଲେ । ହଠାତ ବୋତଲରେ ଘେରି ରହିଥିବା ଆଙ୍ଗୁଠିଗୁଡ଼ା ଉପରେ ଆଉ କେତେ ଗୁଡ଼ାଏ ଆଙ୍ଗୁଠି ଚିପି ଧରିବାର ସ୍ପର୍ଶ ଅନୁଭବ କଲେ । ଦିଗବଳୟରୁ ଫେରି ଚାହିଁଲେ ।

ଚବିଶ କି ପଚିଶ ବର୍ଷ ବୟସର ଯୁବତୀ ଜଣେ । ହଠାତ୍ ଚମକି ପଡ଼ି ନିଜ ହାତଟା ଟାଣି ଆଣିଲେ । ଆପାଦମସ୍ତକ ଯୁବତୀଟିକୁ ଚାହିଁଲେ । ପାନ ଦୋକାନକୁ ପଡୁଥିବା ଆଲୁଅରେ ମୁହଁଟା ପୁରା ଆଲୋକିତ ନହେଲେ ବି ଦେଖି ହେଉଥିଲା । ଯୁବତୀର ଆଖିରେ ନିବେଦନ । ଓଠର ବାମପାଖରେ ଈଷତ୍ ହସ । ଆମନ୍ତ୍ରଣର ଇଙ୍ଗିତ । ପାନ ଦୋକାନୀ ଚାହିଁ ରହିଥିଲା । କେତେଗଜ ଦୂରରେ ପୋଲିସ ସିପାହୀ ଜଣେ ଠିଆ ହୋଇ ଏ ଦୃଶ୍ୟ ଉପଭୋଗ କରୁଥିଲେ । ଯୁବତୀ ଜଣକ କଣ୍ଠରେ କାରୁଣ୍ୟ । ଆଜି ସନ୍ଧ୍ୟା ବେଳୁ କିଛି ପାଇନି । ଖାଇବି କ'ଣ ? ହିନ୍ଦିରେ କହିଲା ସେ ।

କେତେ ? ବନ୍ଧୁ ପଚାରିଲେ,'ପାଞ୍ଚଟଙ୍କା' ଯୁବତୀ ଉତ୍ତର ଦେଲା । କାହିଁକି କରୁଛ ଏ କାମ ? ପେଟ ପୋଷିବାକୁ କ'ଣ ଆଉ କରିବ ? 'ଦିନକୁ କେତେ ଟଙ୍କା ରୋଜଗାର ହେଉଛି ? କିଛି କହି ହେବନି । ପାଞ୍ଚ, ଦଶ, ପନ୍ଦର । କେବେ କେବେ କୋଡ଼ିଏ ପଚିଶ ବି ହୋଇଯାଏ । ତେବେ ବଡ଼ କମ ସେମିତିଆ ଦିନ । ଦିନେ ଦିନେ ଫାଙ୍କାଯାଏ । ଆଜି ଏଯାଏ କିଛି ହୋଇନି । 'ପାଞ୍ଚ ଟଙ୍କା ନା ?' 'ଟଙ୍କା କମ୍ ଦେବେ ।' ବନ୍ଧୁ ପକେଟରୁ ପାଞ୍ଚ ଟଙ୍କିଆ ନୋଟଟିଏ ବଢ଼େଇ ଦେଲେ । ଯୁବତୀଟି ଟଙ୍କାଟିକୁ ନେବାକୁ ଟିକିଏ କୁଣ୍ଠିତ ହୋଇ ହାତ ବଢ଼ାଇଲା' କ'ଣ ଆଗତୁରା ଦେବେ' ପ୍ରଶ୍ନ କଲା । ବନ୍ଧୁ କହିଲେ' ପାଇଲତ ଯାଅ । ଯୁବତୀ ବିସ୍ମୟ କଣ୍ଠରେ କହିଲା ଯିବ ? ବନ୍ଧୁ କହିଲେ ହଁ, ଯାଅ । ଏହି ସମୟରେ ପୋଲିସ ସିପାହୀଟା ଚଢ଼ି ଆସିଲା ଯୁବତୀଟି ଆଡ଼କୁ । 'ଯାଉଛି ନା ଶାଳୀ ଏଠୁ ।' ଯୁବତୀଟି ସେଠୁ ଦଉଡ଼ି ଦଉଡ଼ି ଦୂରରେ ଅନ୍ଧାରରେ ହଜିଗଲା । ପାନ ଦୋକାନୀ କହିଲା ବାବୁ ଟଙ୍କାଟାଏ ଦେଇଦେଲନି ଯଦି ଦେବାର ଥିଲା । ପାଞ୍ଚଟଙ୍କା ପାଣିରେ ପକେଇଲେ । ପୁଣି କୁଆଡ଼େ ସେ ମାଇକିନିଆ ବୁଲି ବନିଯେ !

(ତା୧୨.୦୬.୧୯୮୪ରିଖ)





Digitized by srujanika@gmail.com

# ଏ ମଣିଷକୁ ଉଦ୍ଧାର କର ଭଗବାନ

ମଶାଣି ଶବରୁ ବି ଲୋକେ ଫାଇଦା ଉଠାନ୍ତି ଏ ଦେଶରେ । ତଳ ଲିଖିତ ଘଟଣାଟି ସତ, କିନ୍ତୁ ଏକ ରକମ ଦୁଃଖଦାୟକ ସତ୍ୟ । ଗତବର୍ଷର ଶୀତଦିନ । ଡିସେମ୍ବର ୩୧ କି' ଏ ବର୍ଷର ଜାନୁଆରୀ ପହିଲା ମୋର ଠିକ୍ ମନେ ନାହିଁ । କଟକରୁ ସାତ ଆଠଜଣ ସାଙ୍ଗ ବାହାରିଲେ ପୁରୀ ନୂଆବର୍ଷ ମନେଇବାକୁ କିମ୍ବା ଇଂରାଜୀରେ କହିଲେ ନ୍ୟୁ ଇୟର ସେଲିବ୍ରେସନ କରିବାକୁ । ମଟର ସାଇକେଲ ଓ ସ୍କୁଟର ଚାରିଟିରେ ସବାର ହୋଇ ଏହି ବନ୍ଧୁମାନେ ଆଗପଛ ହୋଇ ଛୁଟାଇଲେ ନିଜର ଦୁଇଚକିଆ ଯାନଗୁଡ଼ାକୁ । ଗୋଟାଏ ମଟର ସାଇକେଲରେ ଦୁଇଜଣ ବନ୍ଧୁ ଏକଲା ପଡ଼ିଗଲେ । ସେମାନେ ଭାବିଲେ ଯେ, ଅନ୍ୟମାନେ ବହୁ ଆଗରୁ ପୁରୀ ପହଞ୍ଚି ଯିବେଣି । ତେଣୁ ବେଗ ବଢ଼ିଲା । ଅନ୍ଧାର ହୋଇଗଲାଣି । ସମୟ ସନ୍ଧ୍ୟା ସାଢ଼େ ସାତ କି ଆଠ ବାଜିଲାଣି । ସାମନାରୁ ଟ୍ରେକରଟାଏ ମାଡ଼ି ଆସିଲା ହେଡ୍‌ଲାଇଟ ଦେଇ । ଟ୍ରେକରଗୁଡ଼ା ମୋଟେ ଡିପର ମାରନ୍ତିନି ରାତିରେ । ତାଙ୍କୁ ବା କିଏ ଧରୁଛି । ଥାନାବାଲା ହପ୍ତା ନିଅନ୍ତି । ଟ୍ରେକର କେବଳ ମାଲ ବୋହିବା ପାଇଁ ହୋଇଛି । ପାସେଞ୍ଜର ଗାଡ଼ି ଭାବରେ ସେମାନଙ୍କୁ ପରମିଟି ମିଳେନା ଟାକ୍‌ସିପରି । ତେଣୁ ପୋଲିସବାଲାଙ୍କୁ ସନ୍ତୁଷ୍ଟ କଲେ ହେଲା । ନଚେତ ଏତେ ଟ୍ରେକର ଏତେଗୁଡ଼ାଏ ଲୋକ ଭର୍ତ୍ତିକରି ରାଜରାସ୍ତାରେ ଚାଲୁଥାଆନ୍ତେ କେମିତି ? ଅଶୀ କିଲୋମିଟର ବେଗରେ ଦଉଡୁଥିବା ମଟର ସାଇକେଲଟି ଟ୍ରେକରଟିକୁ କାଟିବାକୁ ଯାଇ ରାସ୍ତାକଡ଼ ବିଜୁଳି ଖୁଣ୍ଟରେ ଧକ୍କା ଖାଇଲା । ମଟର ସାଇକେଲ ଚାଳକର ଗୋଡ଼ ହାତ ଭାଙ୍ଗିଗଲା । ଛାତି ଓ ମୁହଁରେ ଆଘାତ । ରକ୍ତାକ୍ତ ଶରୀର । ବେହୋସ । ପଛରେ ଯିଏ ବସିଥିଲା ସେ ବେହୋସ ନହେଲେ ବି ଖଣ୍ଡିଆଖାବରା ହୋଇ କିଛି କରିବା ଅବସ୍ଥାରେ ନାହିଁ । ପଛରୁ ସ୍କୁଟରରେ ଯାଉଥିବା ସେହି ଦଳର ଆଉ ଦୁଇଜଣ ନିଜର ସାଙ୍ଗ ଦୁଇଟିଙ୍କୁ ଏହି ଅବସ୍ଥାରେ ଦେଖି ଟିକେ ଦୂରରେ ଥିବା ରାସ୍ତାକଡ଼ ବଜାରରୁ ଲୋକ ଡାକିବାକୁ ଗଲେ । କଥାଟା ପ୍ରଚାର ହୋଇଗଲାମାତ୍ରେ ପାଖ ଗାଁର ଲୋକେ ଜମା ହେଲେ । କିଏ କେତେ ପ୍ରକାର ପରାମର୍ଶ ଦେବାକୁ ଲାଗିଲେ । ଏହି ସମୟରେ ଆହତ ମଟର ସାଇକେଲ ଚାଳକର ଚେତା ଫେରିଲା । ଅସହ୍ୟ ଯନ୍ତ୍ରଣାରେ ସେ କ୍ଷୀଣ କଣ୍ଠରେ 'ପାଣି-ପାଣି-ପାଣି' ବୋଲି କହିଲା । କେହି ପାଣି ଆଣିବାକୁ ବାହାରୁ ନଥାନ୍ତି ଯଦିଓ ଅନ୍ୟୁନ ୫୦ ଜଣ ଲୋକ ସେଠି ଭିଡ଼ ବାନ୍ଧିଥାନ୍ତି । ପଛ ସ୍କୁଟରରେ ଯାଉଥିବା ଚାଳକ ଅନୁରୋଧ କଲାରୁ ଜଣେ ସେହି ଗ୍ରାମର ଯୁବକ କହିଲେ 'ମୁଁ ପାଣି ଆଣି ଦିଅନ୍ତି ଯେ, ଭାରି ଶୀତ । ମୋ ଦେହ କୋହ୍ଲ ମାରିଯାଉଛି । ତମ ଚଦରଟା ଦିଅନ୍ତ ଯଦି ମୁଁ ପାଣି ନେଇ ଆସନ୍ତି' । ସଂଗେ ସଂଗେ ସ୍କୁଟର ଚାଳକ ନିଜ ଦେହରୁ ତିନିଶହ ଟଙ୍କା ଦାମର ଶାଲଟି କାଢ଼ି ଯୁବକଙ୍କ ଦେହରେ ଘୋଡ଼େଇ ଦେଇ କହିଲେ 'ହଉ ଯା ଜଲଦି । ଟିକେ ଲୋଟାରେ ପାଣି ନେଇଆସ । ଗିଲାସଟାଏ ବି ଆଣିବ' ।

'ହଉ ମୁଁ ଆସୁଛି' କହି ଯୁବକ ଜଣକ ଶାଲଟି ଘୋଡ଼େଇ ହୋଇ ଅନ୍ଧାର ଭିତରେ ଅଦୃଶ୍ୟ ହୋଇଗଲେ । ବହୁ ସମୟ ବିତିଗଲା । ଆଉ ଜଣେ କିଏ ଆଣି ଗିଲାସେ ପାଣି ଦେଲା ।

ଶୀତରେ କୋହ୍ଲ ମାରିଯାଉଥିବା ଯୁବକ ଜଣକ ଆଉ ଫେରିଲେନି । ହୁଏତ ପାଣିନେଇ ଆସିବାରେ ତାଙ୍କର ଆପତ୍ତି ନଥିଲା । କିନ୍ତୁ ଶାଲଟି ଯେ ଫେରାଇବାକୁ ପଡ଼ିବ ।

(ତା୨୧.୧୧.୧୯୮୬ରିଖ)





Digitized by srujanika@gmail.com

# ବର୍ତ୍ତମାନଟା ଅତୀତକୁ ମୁହାଁଇଛି

ଆମ ଦେଶରେ କିଛିଲୋକ ବର୍ତ୍ତମାନଠାରୁ ଅତୀତରେ ବଞ୍ଚିବାକୁ ଚାହାନ୍ତି । ଅତୀତଟା ଯଶମୟ । ବର୍ତ୍ତମାନଟା ବଡ଼ ଶୁଷ୍କ । ପୁରୁଣା ଇତିହାସରେ ଭାରତର ସଭ୍ୟତା ସମ୍ପର୍କରେ ଗର୍ବ କଲାବେଳକୁ ହରପ୍ପା ଓ ମହେଞ୍ଜୋଦାରୋ କଥା ଉଠେ । ବେଦ ଓ ଉପନିଷଦ ସମ୍ପର୍କରେ ଆଲୋଚନା ହୁଏ । ଅବଶ୍ୟ ଖୁବ୍ କମ ଲୋକ ହରପ୍ପା ସଭ୍ୟତା ଏବଂ ବେଦ ଓ ଉପନିଷଦରେ କ'ଣ ଅଛି ଠିକ୍ କରି କହିପାରିବେ ।

ଓଡ଼ିଶାରେ ସେହିପରି ଆମେ କୋଣାର୍କ, ରତ୍ନଗିରି, ଉଦୟଗିରି ଏବଂ ଧଉଳିର ଶିଳାଲେଖ ଆଦିକୁ ନେଇ ଓଡ଼ିଶାର ଶିକ୍ଷା, ସଂସ୍କୃତି ଏବଂ ଐତିହ୍ୟର ଐଶ୍ୱର୍ଯ୍ୟ ନେଇ ଏ ଗର୍ବ କରିଥାଉ । ଆମର ବର୍ତ୍ତମାନ ବଡ଼ ଦୁର୍ବଳ ଅନ୍ତତଃ ସାମଗ୍ରିକ ଦୃଷ୍ଟିରୁ । ଅବଶ୍ୟ ଆମ ପିଲାଏ ଆଇ.ଏ.ଏସ୍,ଆଇ.ପି.ଏସ୍ ଇତ୍ୟାଦି ହେଉଛନ୍ତି । ଇଞ୍ଜିନିୟର ଓ ବୈଜ୍ଞାନିକ ହୋଇ ଓଡ଼ିଶା ବାହାରେ ଖ୍ୟାତି ଓ ବିପୁଳ ଅର୍ଥ ଅର୍ଜନ କରୁଛନ୍ତି । ତଥାପି ବର୍ତ୍ତମାନଟା ବିଶେଷ ଉଲ୍ଲେଖନୀୟ ନୁହେଁ । ବା' ଘର ଖୋଜିଲା ବେଳେ ଆମେ ଖାନ୍‌ଦାନୀ ପରିବାର ଓ 'କେତେ ପୁରୁଷର ଘର' ବୋଲି ବୁଝୁଥାଉ ଏବଂ ଖୋଜୁଥାଉ । ଏକା ଜାତିରେ ଭଲ 'ବ୍ରାହ୍ମଣ' କି ଭଲ ଯାଦବ ଖୋଜୁଥାଉ । ଯଦିଓ ଆଇ.ଏ.ଏସ୍. ପାଇଲେ ହଳୁଆ ବ୍ରାହ୍ମଣ ମଧ୍ୟ ହୋଇଯାଏ । ପଇସା ଖର୍ଚ୍ଚ କଲେ ନୂଆ କିଳା ପୋତିଆ ଇଞ୍ଜିନିୟର ବା କଣ୍ଟ୍ରାକ୍ଟର ଉପରପାହିଆ ଘରେ ବନ୍ଧୁ ବାନ୍ଧିପାରେ । ଅତୀତ ଓ ବର୍ତ୍ତମାନ ମଧ୍ୟରେ ଏହିସବୁ ପରିସ୍ଥିତିରେ ଅପୂର୍ବ ସନ୍ଧି ସଂଯୋଗ ହୋଇଯାଏ । ରାଜନୈତିକ ଜୀବନରେ ମଧ୍ୟ ଏହି ଅତୀତ କଥାଟା ବଡ଼ ବେଶୀ ଆଦରଣୀୟ । କେହି ଜଣେ ଏମ୍.ଏଲ୍.ଏ କିମ୍ବା ଏମ୍.ପି. ଥରେ ହେଲେ, ଜୀବନସାରା ଆଉ ସେ ପାହାଚ ଚଢ଼ିବାକୁ ନ ମିଳିଲେ ବି' 'ପୂର୍ବତନ' କିମ୍ବା 'ଭୂତପୂର୍ବ' ଲଗାଇ କାମ ଚଳାଇ ନେବାକୁ ପଡ଼େ । ଥରେ କୌଣସି କାରଣରୁ (ଦଳ ବଦଳାଇ ମଧ୍ୟ) ମନ୍ତ୍ରୀ ଶିରିପା ବାନ୍ଧିବାର ସୁଯୋଗ ମିଳିଲେ ସେଇ ଠୋସ୍‌ରେ ସାରା ଜୀବନଟା ପୂର୍ବତନ ମନ୍ତ୍ରୀ କହି ବା କୁହାଇ କାମ ହାସଲ କରି ନିଆଯାଏ । ଜଣେ କେନ୍ଦ୍ରରେ ଥରେ ଖୁବ୍ ହେଲେ ଦୁଇବର୍ଷ ପାଇଁ ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ମନ୍ତ୍ରୀତ୍ୱ ଯିବାର ଏହା ଭିତରେ ସାତବର୍ଷ ହେଲାଣି । କିନ୍ତୁ ପ୍ରତିଦିନ ସେ ପୂର୍ବତନ ଅମୁକ ବିଭାଗର କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ଓ ସମୁକ ଦଳ ନେତା ବୋଲି ନିଜକୁ ଅଭିହିତ କରି ନିଜ ହାତରେ ଲେଖି ଖବରକାଗଜ ମାନଙ୍କୁ ବିଭିନ୍ନ ବିବୃତି ପଠାନ୍ତି । ଏହା ଭିତରେ ଚାରିଟି ନିର୍ବାଚନରେ ଠିଆ ହୋଇ ହାରିଲେଣି । ହୁଏତ ଭବିଷ୍ୟତରେ ହାୱା ବୋହିଲେ ନିର୍ବଚିତ ହେବେ, ଯଦିଓ ଏହିସବୁ ଆଶା ଏତେ ବେଶୀ ଉଜ୍ଜ୍ୱଳ ନୁହେଁ । କିନ୍ତୁ ତାଙ୍କ ଦଳ କ୍ଷମତାକୁ ଆସିବା ଆଶ ଅତ୍ୟନ୍ତ କ୍ଷଣ । ତେଣୁ ଶେଷପର୍ଯ୍ୟନ୍ତ ହୁଏତ ତାଙ୍କୁ ସ୍ୱଅର୍ଜିତ 'ପୂର୍ବତନ ରାଷ୍ଟ୍ରମନ୍ତ୍ରୀ' ଉପାଧିକୁ ଆଶ୍ରା କରି କାଳ କାଟିବାକୁ ହେବ । ଅଥଚ ଯଦି ସେ କେବଳ ନିଜର ନାମଟି



Digitized by srujanika@gmail.com

ବ୍ୟବହାର କରନ୍ତେ, ସମସ୍ତେ ଜାଣନ୍ତେ ସେ କିଏ । ଏ କେବଳ ଗୋଟିଏ ଦୃଷ୍ଟାନ୍ତ ମାତ୍ର ।

ଏହିପରି ବହୁ ପୂର୍ବତନ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ, ଏମ୍.ଏଲ୍.ଏ ଓ ଏମ୍.ପି. ଚଳପ୍ରଚଳ ହେଉଛନ୍ତି । ଏବେ ଦିଲ୍ଲୀରେ ପୂର୍ବତନ ଏମ୍.ପି. ମାନଙ୍କର ଏକ ସଂଘ ନିଜ ଗୋଷ୍ଠୀର ଉନ୍ନତି କଳ୍ପେ ବଡ଼ ସକ୍ରିୟ ହୋଇଛନ୍ତି । ଏକଥା ଶୁଣି ଓଡ଼ିଶାର କେତେକ ପୂର୍ବତନ ଏମ୍.ଏଲ୍.ଏ. ଏଠାରେ ଗୋଟିଏ ତଦନୁରୂପ ସଂଘ ଗଢ଼ିବାକୁ ପ୍ରୟାସୀ ହେଲେଣି ବୋଲି ଖବର ମିଳୁଛି ।

ଅତୀତକୁ ଜାବୁଡ଼ି ଧରି ବର୍ତ୍ତମାନରେ ବଞ୍ଚିବାର ଏ ଅଦ୍ଭୁତ ଚେଷ୍ଟା, କେବଳ ଏହି ଦେଶରେ ହିଁ ପ୍ରଚଳିତ । ଯେଉଁମାନଙ୍କର ବର୍ତ୍ତମାନ ଯଶମୟ ସେମାନେ ମଧ୍ୟ ଅତୀତ ଆଡ଼କୁ ଖୁବ୍ ବେଗରେ ମୁହାଁଇଛନ୍ତି ।

(ତା୦୧.୦୭.୧୯୮୬ରିଖ)

❑❑❑



Digitized by srujanika@gmail.com

# ରେଜା ଆଉ ରେଜାରେ ପ୍ରଭେଦ

ସେଦିନ କଲିକତାରେ ଅଳ୍ପ ଦୂର ଯିବାପାଇଁ ଟ୍ୟାକ୍ସି ଖୋଜୁଥିଲି । ଗୋଟିକ ପରେ ଗୋଟିଏ ଟ୍ୟାକ୍ସି ଡ୍ରାଇଭର ମନାକଲେ ଯିବାକୁ । ଜଣେ ପଚାରିଲା ଖୁଚୁରା ଅଛି ? ପଚାରିଲି କେତେ ? ଏଇ ତିନିଟଙ୍କା, ସାଢେ ତିନିଟଙ୍କା । କହିଲି ହଁ ଅଛି, ଚାଲ ।'' ଆଉ ଦିନେ ହାତଟଣା ରିକ୍ସାରେ ଯିବାକୁ ପଡିଲା । ଭଡା ଛିଡିଲା । ତା'ପରେ ମତେ ଜବାବ ଦେବାକୁ ପଡିଲା ଯେ ମୁଁ ଛିଡାଇଥିବା ଭଡ଼ା ରିକ୍ସାବାଲାକୁ ଦେବି । କଲିକତାରେ ଏବେ ବି ହାତଟଣା ରିକ୍ସା ରହିଛି । ପୃଥିବୀରେ ଆଉ କୋଉଠି ଅଛି କି ନାହିଁ ଜାଣେନି । ଅବଶ୍ୟ ଥରେ ପଶ୍ଚିମବଙ୍ଗ ସରକାର ହାତଟଣା ରିକ୍ସା ଉଠାଇବାକୁ ନିଷ୍ପତ୍ତି ନେଲାରୁ ରିକ୍ସା ଟାଣିଲା  ଲୋକେ ତାହା ବିରୋଧରେ ଆନ୍ଦୋଳନ ବିକ୍ଷୋଭ କଲେ । ରାଜନୀତି କରୁଥିବା ବିରୋଧୀ ଦଳ ନେତାମାନେ ରିକ୍ସା ବାଲାଙ୍କ ଆନ୍ଦୋଳନର ନେତୃତ୍ୱ ନେଲେ । ହାତ ରିକ୍ସା ରହିଲା ।

ଆଉ ଗୋଟିଏ ଦୋକାନରେ ବସି ମୁଁ କେତେକ ଜିନିଷ କିଣୁଥିଲି । ଭିକାରୀଟିଏ ଆସିଲା । ଦୋକାନ ମାଲିକ ତାକୁ ଦୁଇ ଟଙ୍କିଆ ନୋଟଟିଏ ଦେଇ ଦଶ ପଇସା କାଟି ବାକୀ ପଇସା ଖୁଚୁରା ଆକାରରେ ଫେରାଇବାକୁ କହିଲେ । ଭିକାରୀଟି ଇତଃସ୍ତତଃ ହେଲା । ତା ପାଖରେ ଏତେ ଖୁଚୁରା ନାହିଁ । ଏଣେ ଦଶଟି ପଇସା ପାଇବାକୁ ଲୋଭ । ମୁଁ ଦେଖୁଥାଏ  ଦୋକାନୀଙ୍କ ଡ୍ରୟରରେ ଗୁଡାଏ ରେଜା ପଇସା ରହିଛି । କିନ୍ତୁ ଶେଷରେ ଗୋଟିଏ ଟଙ୍କିକିଆ ନୋଟ ନେଇ ଭିକାରୀଟି ନବେ ପଇସା ଫେରାଇଲା । ତା ପରେ ପରେ କୁଷ୍ଠ ରୋଗୀ ଭିକାରୁଣୀଟିଏ ଆସି ଦୋକାନୀଙ୍କୁ ଯାଚିଲା ଦୁଇଟଙ୍କାର ରେଜା । ଦୋକାନୀ ଭଦ୍ରଲୋକ ପ୍ରଥମେ ମନାକଲେ । ଭିକାରୁଣୀ କହିଲା । ମୁଁ କେତେ କଷ୍ଟକରି ଏତକ ଯୋଗାଡ଼ କରିଛି । ତମର ତ ଦିନ ଗୁଡାଏ ରେଜା ଦରକାର । ପନ୍ଦର ପଇସା (ଟଙ୍କାକୁ) ଦେଇ ଭଙ୍ଗାଉଛ । ମୁଁ ତ ଦଶ ପଇସାରେ ଦେଉଛି । ନିଅ ବାବୁ ନିଅ'' ଦୋକାନୀ ମୋ ମୁହଁକୁ ଚାହିଁଲେ । ମୁଁ ମନର ବିରକ୍ତିକୁ ଚାପିରଖି ମୋ ଆଖିରେ ନୀରବ ସମ୍ମତି ଜଣାଇଲି । ଦୋକାନୀ କୋଡିଏ ପଇସା 'ଦାନ' କରି ବାକି ପଇସା ରଖିଲେ । ବ୍ୟାପୁ କୁଷ୍ଠ ରୋଗ । ରେଜା ଓରଫ ଖୁଚୁରା ଓରଫ ଚିଲର ଓରଫ ଆଉ କିଛିର ଯେଉଁ ଅଭାବ ପଡିଛି ଦେଶରେ ସେଥିପାଇଁ ଆଉ ଉପାୟ କ'ଣ ?

ବମ୍ବେରେ ବସରେ ଗଲାବେଳେ ତୁମେ ରେଜା ନଦେଇ ପାରିଲେ ବସ୍ କଣ୍ଡକ୍ଟର ତୁମକୁ ବସ୍ କମ୍ପାନୀର କୁପନ ଧରେଇ ଦେବ । ନନେଲେ ଓହ୍ଲାଅ ! ସେ ବସ୍ କୁପନ ଏବେ ପାନ ଦୋକାନ ପତ୍ରିକା ଷ୍ଟଲରୁ ଆରମ୍ଭ କରି ବଡ଼ ବଡ଼ ଦୋକାନ ପର୍ଯ୍ୟନ୍ତ ଚାଲୁ ହେଲାଣି । ଆଉ କେଉଁଠି ରେଜା ବଦଳରେ ପୋଷ୍ଟାଲ ଟିକେଟ ମିଳୁଛି । ତେଣୁ ଅଧିକା ଚିଠି ଲେଖିହେବ ।

ଦିଲ୍ଲୀରେ ଖୁଚୁରା ଓରଫ ଖୁଲ୍ଲା ନଦେଇ ଦୋକାନୀ ମାନେ ସେହି ମୂଲ୍ୟର ଲଜେନସ, ଟଫି କିମ୍ବା 'ନିରୋଧ' ଧରାଉଛନ୍ତି । ଗୋଟାଏ ବଡ଼ ଡିପାର୍ଟ ମେଣ୍ଟାଲ ଷ୍ଟୋରରେ ମତେ ଜଣେ ଗୋଟାଏ ପ୍ୟାକେଟ ବବଲ ଗମ ଧରାଇଲା ମୁଁ ପ୍ରତିବାଦ କଲାରୁ ମତେ କେଇଟା ଦିଆସିଲି ଡବା ଧରାଇଲା । ମୁଁ କହିଲି ଆରେ ବାବା ମୁଁ ବବଲ୍ ଗମ ଚୁଚୁମେ ନାହିଁ କିମ୍ବା ସିଗାରେଟ୍ ଟାଣେ ନାହିଁ । ଯାକୁ ନେଇ କ'ଣ



Digitized by srujanika@gmail.com

କରିବି ।' ଦୋକାନୀ ଉତ୍ତର ଦେଲା 'ମୁଁ କ'ଣ କରିବି । ଆପଣ ଯଦି ଗୋଟାଏ ଟଙ୍କା ଛାଡିଯିବେ ଯାଆନ୍ତୁ ।' ମୁଁ ବିରକ୍ତିରେ ସେଠୁ ଚାଲି ଆସିଲି ।

ଦିଲ୍ଲୀରେ ତିନିଚକିଆ ସ୍କୁଟର କିମ୍ୱା ଟ୍ୟାକ୍ସି ଡ୍ରାଇଭର ମାନେ ଖୁଚୁରା ଅଭାବରୁ କୋଡ଼ିଏ ପଇସାରୁ ଆରମ୍ଭ କରି ଟଙ୍କା ପର୍ଯ୍ୟନ୍ତ ଆପଣଙ୍କୁ ନଫେରାଇ କିଛି ଭୁଲ ନମାଗି ଗାଡ଼ି ଷ୍ଟାର୍ଟ କରି ଚାଲିଯାଆନ୍ତି । ବହୁ ଯାଗାରେ ରେଜା ପାଇଁ ଝଗଡା । ଟଙ୍କାର ମୂଲ୍ୟ ଏବେ କମି ଗଲାଣି ଯେ ଭିକାରୀମାନେ ପଚିଶ ପଇସାରୁ କମ୍ ନେବାକୁ ଆଗ୍ରହୀ ନୁହନ୍ତି । ତାଙ୍କ ପରିଶ୍ରମକୁ ଅଳ୍ପଦାନ ପୋଷାଉ ନାହିଁ ।

ଯୋଜନା ପାଇଁ ସମ୍ୱଳନଥିଲେ ସରକାର ଶହେ ଟଙ୍କିଆ ନୋଟ୍ ମନଇଚ୍ଛା ଛାପିପାରନ୍ତି । କିନ୍ତୁ ଅଳ୍ପିକିଆ କାରବାର ପାଇଁ ସରକାର ପାରି ଉଠୁନାହାନ୍ତି । ରେଜା ମୂଲିଆଣୀ ଯେତେ ଇଚ୍ଛା ସେତେ ମିଳିବେ ଅଳ୍ପ ପଇସାରେ କିନ୍ତୁ ରେଜା ପଇସା... ।

(ତା୨୭.୦୫.୧୯୮୫ରିଖ)





Digitized by srujanika@gmail.com

# ଆଉ ଏକ ଅସନ୍ତୁଷ୍ଟ ଗୋଷ୍ଠୀ

ମୁଁ ଅନେକ ସମୟରେ ନିଜର କାର୍ଯ୍ୟ ପରିସର ମଧ୍ୟରେ ରାଜ୍ୟର ବିଭିନ୍ନ ଆଡ଼କୁ ଯାଏ । ସମୟ ସମୟରେ ସରକାରୀ ଅଧିକାରୀମାନଙ୍କ ସମ୍ପର୍କରେ ଆସେ ଯଦିଓ ସେମାନଙ୍କ ସହିତ ଖାସ୍ ଯୋଗାଯୋଗ କରିବାର ଆବଶ୍ୟକତା ମୋ ପାଇଁ ନାହିଁ ।

ଏହିପରି ସାକ୍ଷାତ ସମୟରେ ପ୍ରଶାସନିକ ଅଧିକାରୀମାନଙ୍କ ସହିତ ବ୍ୟକ୍ତିଗତ ସ୍ତରରେ ରାଜ୍ୟର ରାଜନୈତିକ ନେତୃତ୍ୱ, ସରକାରୀ କଳ ଓ ରାଜନୈତିକ ଦଳମାନଙ୍କର ଭୂମିକା ଆଦି ସମ୍ପର୍କରେ ସ୍ୱାଭାବିକ ଆଲୋଚନା ହୁଏ । ସେମାନେ ଯେ ରାଜନୈତିକ କର୍ତ୍ତୃତ୍ୱର ଅସୀବାହୁ । ସେମାନେ ମଧ୍ୟ ସାମ୍ବାଦିକମାନଙ୍କ ଠାରୁ' ଏ ସରକାର କେତେଦିନ ରହିବ' ନେତୃତ୍ୱ ପରିବର୍ତ୍ତନ ହେଉଛି କି ନାହିଁ, ''ପ୍ରଧାନମନ୍ତ୍ରୀ କାହିଁକି କିଛି କରୁନାହାଁନ୍ତି'' ଆଦି ବହୁ ବିଷୟରେ 'ଭିତିରି' ଖବର ଜାଣିବାକୁ ଚାହାନ୍ତି । ସରକାର ପରିବର୍ତ୍ତନ ହେଲେ ସେମାନଙ୍କର ବସ୍ତୁତଃ କିଛି ଲାଭ ବା କ୍ଷତି ନାହିଁ ଜାଣିଲେ ମଧ୍ୟ ସେମାନଙ୍କ ମନରେ ଉତ୍ସୁକତା । ସରକାର ପ୍ରତି ଛଅ ମାସରେ ଥରେ ବଦଳିଲେ ଯେମିତି ସେମାନଙ୍କୁ ବୋନସ ମିଳିବ କି କ'ଣ ! ଗତ ମାସରେ ଏପରି ଏକ ଗସ୍ତ ସମ୍ପର୍କରେ ମୁଁ ଏକ ଅବହେଳିତ ଜିଲ୍ଲାକୁ ଯାଇଥିଲି । ଜିଲ୍ଲାର ମୁଖ୍ୟ, ସବ୍‌ଡିଭିଜନାଲ ମୁଖ୍ୟ ଓ କେତେକ ଅନ୍ୟ ବିଭାଗର ଅଧିକାରୀମାନଙ୍କ ସହିତ ଦେଖା ହେଲା ଅଚାନକ ଗୋଟାଏ ଯାଗାରେ । ସମସ୍ତେ ଅଲଗା ଅଲଗା ମୋ ଠାରୁ ଜାଣିବାକୁ ଚାହାନ୍ତି ଯେ, ସରକାର ବଦଳିବ କି ନାହିଁ । ଶାସକ ଦଳର ଏତେ ସଂଖ୍ୟା ଗରିଷ୍ଠତା ଅଛି ଯେ, ନିର୍ଦ୍ଧାରିତ ପାଞ୍ଚବର୍ଷ ପୂର୍ବରୁ ଏହି ଦଳର ସରକାର ବଦଳିବା ସମ୍ଭାବନା ନାହିଁ ବୋଲି କହିବାରୁ ସେମାନେ ତାହା ଜାଣନ୍ତି ବୋଲି ଉତ୍ତର ମିଳିଲା । ସେମାନେ ଜାଣିବାକୁ ଚାହାନ୍ତି ମୁଖ୍ୟମନ୍ତ୍ରୀ ବଦଳିବେ କି ନାହିଁ ? ବଦଳିଲେ କିଏ ମୁଖ୍ୟମନ୍ତ୍ରୀ ହେବେ ? କେବେ ବଦଳିବ ଏ ସରକାର(ଅର୍ଥାତ୍ ମୁଖ୍ୟମନ୍ତ୍ରୀ) ? କେତେକ ଅଫିସର ଏ 'ସରକାର' ରହିବ ଏବଂ ରହିବା ଉଚିତ ବୋଲି ମଧ୍ୟ ମତ ଦେଲେ । କାରଣ ବିକଳ୍ପ କ'ଣ ଓ କିଏ ? ଏ ବିଷୟରେ ମୁଁ କେମିତି ଜାଣିବ କହିଲାରୁ ସେମାନେ ସନ୍ତୁଷ୍ଟ ହେଲେନି । ଯେହେତୁ ମୁଁ ସାମ୍ବାଦିକ ତେଣୁ ଏସବୁ ଜାଣିବାର ଶକ୍ତି ମୋର ଅଛି । ମୁଁ ବୋଧେ' ତାଙ୍କୁ ଅସଲ କଥା ଲୁଚାଉଛି । ମୁଁ ଗୋଟିଏ ପଚିଶ କିଲୋ ମଟର ଅଗମ୍ୟ ଯାଗାକୁ ଯିବାକୁ ମତେ ଗୋଟିଏ ଜିପ୍ ରିକ୍ୟୁଜିସନ୍‌ରେ ଦେବାକୁ ମୁଁ ଅନୁରୋଧ କଲି । ରିକ୍ୟୁଜିସନ କ'ଣ କରିବେ ଜିପ ? ସେ ଅଞ୍ଚଳକୁ ଜଣେ ମଧ୍ୟମ ସ୍ତରର ପଦାଧିକାରୀ ବିଭାଗୀୟ ଟୁରରେ ଯିବେ ଓ ମୁଁ ଯିବି ତାଙ୍କ ସହିତ । ମୋ କାମ ସାରି ଫେରିଆସିବି । ମୁଁ ଯେତେ କହିଲି ଯେ ମୁଁ ପଇସା ଦେଇ ରିକ୍ୟୁଜିସନ କରି ଗାଡ଼ିଟି ନେବି ତାହା ଗ୍ରହଣୀୟ ହେଲାନାହିଁ । ମୁଁ ଭାବୁଥାଏ ଯେ ମୋଭଳି ଅବୋଲକରା ସାମ୍ବାଦିକ ଦ୍ୱାରା ଏମାନଙ୍କର କ'ଣ ଲାଭହେବ ।

ଆମେ ଫେରିଲା ବେଳକୁ ରାତି ନ'ଟା । ସେଦିନ ରାତିରେ ଜଣେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ଓ ଜଣେ ରାଷ୍ଟ୍ରମନ୍ତ୍ରୀ ଜିଲ୍ଲାର ସଦର ମହକୁମା ଦେଇ ନିଜ ଅଞ୍ଚଳରୁ ଭୁବନେଶ୍ୱର ଫେରିବା କଥା ଏବଂ ସର୍କିଟ ହାଉସ୍‌ରେ ରାତ୍ରୀଭୋଜନ କରିବେ । ଅଧିକାରୀ ଜଣକ ମତେ ଡାକବଙ୍ଗଳାରେ ଛାଡ଼ି ବିଦାୟ ନେଇଗଲେ । ଗଲାବେଳେ କହିଲେ 'ଟାୟାର୍ଡ଼ ଲାଗିଲାଣି । ଯାଉଛି ରେଷ୍ଟ ନେବି' । ପଚାରିଲି 'ମନ୍ତ୍ରୀମାନେ ଯେ ଆସିବେ ତାଙ୍କ ଚର୍ଚ୍ଚା କଥା' ? 'ଆଜ୍ଞା ମନ୍ତ୍ରୀମାନେତ ନିଇତି ଆସୁଛନ୍ତି । କିଏ ଏସବୁ ଖିଜମତ



Digitized by srujanika@gmail.com

କରିବ ? କଲେକ୍ଟର ତ ଆଜି ଉପରବେଳା ଟୁରରେ ଯାଇଥିବେ । ମୋ ଦେହ ଖରାପ । ମନ୍ତ୍ରୀଙ୍କ କଥା ତହସିଲଦାର ବୁଝିବେ' । 'ସରକାର'ଙ୍କ ପ୍ରତି ଏ ହେୟ ଦୃଷ୍ଟି କାହିଁକି ମୁଁ ଭାବୁଥିଲି ।

(ତା୦୨.୧୨.୧୯୮୬ରିଖ)



# କଲଭର୍ଟ ସଂସ୍କୃତି

ଆଜିକାଲି ରାସ୍ତାର କଲଭର୍ଟଗୁଡ଼ିକ (ସୋଠ) ଭଲ ଚଉକୀର କାମ କରୁଛି । ଲୋକ ଯେତେବେଳେ ଘର ଭିତରେ ବସି ବସି ବିରକ୍ତ ଲାଗୁଛି ବାହାରକୁ ଚାଲି ଯାଉଛି । ବାହାରେ ବୁଲି ବୁଲି ଯେତେବେଳେ କ୍ଳାନ୍ତ ଲାଗୁଛି ସେତେବେଳେ ଆଖିରେ ପଡୁଥିବା ଯେକୌଣସି କଲଭର୍ଟର କାନ୍ଥୀ ଉପରେ ବସି ପଡୁଛି ।

ଏହି କଲଭର୍ଟ ଉପରେ ବସିବା ଲୋକ ଯେକୌଣସି ଗୋଷ୍ଠୀର କିମ୍ବା ଧନ୍ଦାର ହୋଇପାରେ । ମୁଁ ଦେଖିଛି ସକାଳେ କିମ୍ବା ସଂଧ୍ୟା ବେଳେ ଅବସରପ୍ରାପ୍ତ ସରକାରୀ କର୍ମଚାରୀମାନେ ଚାଲିବା କସରତ ସମୟରେ ଘରଠାରୁ ଦୂର କଲଭର୍ଟ ଉପରେ ବସନ୍ତି । ମୋର ଜଣେ ବୟସ୍କ ସଂପର୍କୀୟ ତାଙ୍କ କୁକୁରକୁ ଉପରବେଳା ବାହାରକୁ ବୁଲାଇ ନେବାକୁ ଯାଇ କଲଭର୍ଟ ଉପରେ କିଛି ସମୟ କଟାଇ ଘରକୁ ଫେରନ୍ତି ।

କଲଭର୍ଟ ଉପରେ ସବୁଠାରୁ ଅଧିକ ସଂଖ୍ୟକ ବସିଲାବାଲା ହେଉଛନ୍ତି ଆଜିକାଲିର ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ବେକାର ଯୁବକମାନେ । ବିଶେଷ କରି ସଂଧ୍ୟାବେଳେ ଯେତେବେଳେ ସେମାନେ ବଡ଼ ବଡ଼ ଗ୍ରୁପ୍‌ରେ ବାହାରି ଯାଆନ୍ତି, ସାଲୁନ୍, ପାନ ଦୋକାନ, ଚା-ଜଳଖିଆ ଦୋକାନ ଇତ୍ୟାଦି ସାମ୍ନାରେ ଠିଆ ହେବା ପରେ ରାତିରେ ଘରକୁ ଫେରିବା ସମୟ ପର୍ଯ୍ୟନ୍ତ ଅଧିକାଂଶ ସମୟ ସେମାନେ କଲଭର୍ଟମାନଙ୍କ ଉପରେ ମେଳା ମେଳା ହୋଇ ବସି ପୃଥିବୀର ସବୁ ବିଷୟରେ ଆଲୋଚନା କରିବା କଥା ନିତିଦିନିଆ ଦୃଶ୍ୟ ।

ସଜିନା ଛୁଇଁ, ପାନ ଓ ପରିବା ବିକୁଥିବା ମୁଣ୍ଡବିକାଳୀମାନେ ମଧ ଯେତେବେଳେ ବୁଲି ବୁଲି କ୍ଳାନ୍ତ ହୋଇଯାଆନ୍ତି କିମ୍ବା ତାଙ୍କ ବିପଣୀ ସରିଯାଏ କଲଭର୍ଟ ହେଉଛି ସହଜ ସୁନ୍ଦର ଜାଗା ଯେଉଁଠି ଟିକିଏ ବସି ଆସକତ ମେଣ୍ଟାଇ ହେବ । ଜହ୍ନ ରାତିରେ କଲଭର୍ଟ ଉପରେ ଲମ୍ବା ହୋଇ ଶୋଇଥିବା ଲୋକ ବହୁତ । ଗାଁରେ ମଧ ଏହି କଲଭର୍ଟମାନଙ୍କ ଉପରେ ବହୁତ ଭିଡ଼ । ଖୋର୍ଦ୍ଧା ଲୁଙ୍ଗୀ, ହାତକଟା ଗେଞ୍ଜୀ ଓ କାନ୍ଧରେ ତଉଲିଆ ପକାଇ ଗାଁର ବେକାର ଯୁବକ ସବୁ ସେଇଠି ।

ବାଣୀବିହାର ଫାଟକ ସାମ୍ନାରେ ଓ ରମାଦେବୀ ମହିଳା କଲେଜ ସାମ୍ନାରେ ବସ୍‌କୁ ଅପେକ୍ଷା କରିଥିବା ଛାତ୍ରୀମାନେ ମଧ ଅନେକ ସମୟରେ ଏହି କଲଭର୍ଟ ଉପରେ ବସିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ସେଦିନ ସଂଧ୍ୟା ନ'ଟା ବେଳେ ମୋର ସାଂଧ ଭ୍ରମଣର ଶେଷ ବେଳକୁ ମଧ ଦେଖିଲି ଯେ, ଜନପଥର ଏକ ସମ୍ଭ୍ରାନ୍ତ ଅଟ୍ଟାଳିକା ମଧରୁ ଦୁଇ ଜଣ ମହିଳା (ହାବଭାବରୁ ମାଆ ଝିଅ ପରି ଜଣାପଡୁଥିଲେ) ବାହାରି ଆସି ପବନ ଖାଇବା ପାଇଁ କଲଭର୍ଟ ଉପରେ ବସିଲେ ।

(ତା୧୦.୦୪.୧୯୮୭ରିଖ)





Digitized by srujanika@gmail.com

# ହେଡ୍‌ମାଷ୍ଟରଙ୍କୁ ସାର୍ଟିଫିକେଟ୍

କୁକି ଚଉଦ ବର୍ଷର ପିଲାଟା । ତା' ପଢ଼ାପଢ଼ି କଥା ପଚାରୁଥିଲି ମୁଁ । ସେ ଆଉ ଶ୍ରେଣୀରେ ପ୍ରଥମ ହେଉଛି କି ନା ? ସ୍କୁଲର ଶେଷ ବର୍ଷ ଶିକ୍ଷକମାନେ ନୂଆ ଢାଞ୍ଚାରେ କେମିତି ପଢାଉଛନ୍ତି ଇତ୍ୟାଦି । କୁକି କହିଲା, 'ମଉସା ! ଏବେ ଜଣେ ନୂଆ ହେଡ୍‌ମାଷ୍ଟର ଆସିଛନ୍ତି ଆମ ସ୍କୁଲକୁ । ସ୍କୁଲଟାକୁ ନ'ଦିନ ଭିତରେ ଦଶ ପରସେଣ୍ଟରୁ ନବେ ପରସେଣ୍ଟରେ ପହଞ୍ଚେଇ ଦେଲେଣି' ।

ମୁଁ କିଛି ବୁଝିପାରିଲିନି । ପଚାରିଲି 'ଦଶ ପରସେଣ୍ଟ, ନବେ ପରସେଣ୍ଟ କ'ଣ ? କୁକି କହି ଚାଲିଲା, ଆମ ସ୍କୁଲ ବଡ଼ ଘାଏଲ ଅବସ୍ଥାରେ ଥିଲା । ନୂଆ ହେଡ୍‌ମାଷ୍ଟର ଆସିଲା ଦିନୁ ପ୍ରତିଦିନ କିଛି ଗୋଟାଏ ନୂଆ କଥା କରାଉଛନ୍ତି । ପଢ଼ାପଢ଼ି ଏବେ ଖୁବ୍ ଭଲ ହେଉଛି । ଆମ କ୍ଲାସ ପାଇଁ ଛୁଟି ହେଲାପରେ ପ୍ରତିଦିନ କୋଚିଙ୍ଗ କ୍ଲାସ ଚାଲିଛି । ଆମ ପଢ଼ାଗୁଡ଼ା କେତେ ବାକି ରହି ଯାଉଥିଲା । ଆମେ ତ' ଡରି ଯାଉଥିଲୁ ପରୀକ୍ଷା କେମିତି ଦବୁ ବୋଲି ।...

ମୁଁ ବଡ଼ ଉତ୍ସୁକତାର ସହିତ କୁକିର ସରଳ କଥାଗୁଡ଼ା ଶୁଣି ଯାଉଥିଲି । ପଚାରିଲି'ଏ ହେଡ୍‌ମାଷ୍ଟର କ'ଣ ସବୁ ନୂଆ କଥା କରୁଛନ୍ତି' ? କୁକି କହିଲା 'କେତେ କଥା ମଉସା । ସବୁ କ'ଣ ଚଟ୍‌କରି ମୋର ମନେପଡ଼ିବ ? ତେବେ ସ୍କୁଲର ବାଉଣ୍ଡରି ୱାଲ ନଥିଲା । ସବୁଆଡୁ ଗାଁ ଲୋକ, ବାଜେ ଟୋକାଗୁଡ଼ା ପଶିଯାଉଥିଲେ । ଗାଈ ଛେଳି ବି । ଇଏ ଆସିଲା ପରେ ପାଚିରୀ ବୁଲିଗଲାଣି । ଫାଟକ ଲାଗିଲାଣି ।... ମୁଁ ପଚାରିଲି 'ପାଚିରୀ ପାଇଁ ଟଙ୍କା କୋଉଠୁ ଆସିଲା ?

'ଟଙ୍କା ? ମୁଁ ଜାଣିନି ଟଙ୍କା କେଉଁଠୁ ଆସିଲା । ସବୁ ସାର ଏବେ ଠିକ୍ ଠିକ୍ ପାଠ ପଢ଼ାଉଛନ୍ତି । ଆଗରୁ ଫାଙ୍କୁଥିଲେ । ୟାଙ୍କୁ ସମସ୍ତଙ୍କର ପ୍ରାଣେ ଡର । କ୍ଲାସରେ ସବୁ ସାର ଖାତା ଦେଖୁଛନ୍ତି । ଠିକ୍ ସମୟରେ ସ୍କୁଲ ଆସୁଛନ୍ତି । କ୍ଲାସ ନନେଇ ଘରକୁ ପଳାଉନାହାଁନ୍ତି । ହେଡ୍‌ମାଷ୍ଟର କ୍ଲାସ ଇନ୍‌ସପେକ୍‌ସନ କରୁଛନ୍ତି । ଆମର ଫୁଲ ବଗିଚା ଆରମ୍ଭ ହୋଇଛି । ଖେଳ ମଧ୍ୟ ହେଉଛି । ପିଲା କି ସାର କେହି ବାହାରେ ବୁଲୁନାହାଁନ୍ତି କି କ୍ଲାସ କିମ୍ବା କମନ୍ ରୁମ୍‌ରେ ଗପୁନାହାଁନ୍ତି । ଡିବେଟ୍ ପ୍ରତି ସପ୍ତାହରେ ହଉଚି । ସ୍କୁଲ ଏକଦମ ଡିସିପ୍ଲିନ୍ ଭିତରେ ଚାଲିଛି ।

' ୟାଙ୍କ ପୂର୍ବରୁ ଯିଏ ଥିଲେ ହେଡ୍‌ମାଷ୍ଟର ସେ କ'ଣ କରୁଥିଲେ ?' ମୁଁ ପଚାରିଲି । ସେ ସବୁ ଗାଏବ କରି ଦେଉଥିଲେ' । କୁକି ଉତ୍ତରଦେଲା । 'ମାନେ ?' ବୁଝି ନପାରି ମୁଁ କହିଲି । କୁକି ଉତ୍ତରଦେଲା 'ଗାଏବ ମାନେ ଗାଏବ । ସବୁ ପଇସା ଗାଏବ୍ କରି ଦେଉଥିଲେ । ପଢ଼ା ପଢ଼ି କରେଇବାରେ ମୋଟେ ମନ ଦେଉନଥିଲେ' । ମୁଁ ପଚାରିଲି 'ତେବେ କ'ଣ ମାତ୍ର ନ' ଦିନରେ ତମ ସ୍କୁଲଟା ଏବେ ଉନ୍ନତି କରିଗଲା ?

କୁକି କହିଲା 'ନାଇଁମ' ଦିନ କ'ଣ ଆକ୍ଷରିକ ଅର୍ଥରେ କହିଲି କି ? ଏ ହେଡ୍‌ମାଷ୍ଟର ପ୍ରାୟ ଦେଢ଼ମାସ କି ଟିକେ ବେଶୀ ହେବ ଆସିଲେଣି । ଆମ ସ୍କୁଲଟା ଏବେ ବଢ଼ିଆ ହୋଇଗଲାଣି । କିନ୍ତୁ କ'ଣ ହେବ ? ସେଠି ମୋ ପାଠପଢ଼ା ତ ସରିଲାଣି । ଇଏ ଆଗରୁ ଆସିଥାନ୍ତେ କି ?

(ତା୨୭.୧୧.୧୯୮୬ରିଖ)





Digitized by srujanika@gmail.com

# କଲେଜ କୁଇନ୍

ମୋର ଜଣେ ଓକିଲ ବନ୍ଧୁ ଅଛନ୍ତି । ସନ୍ଧ୍ୟାବେଳେ ଦିନେ ତାଙ୍କ ଘରକୁ ଯାଇଥିଲି । କଥାବାର୍ତ୍ତା ଆରମ୍ଭ ହେଉ ହେଉ ସେ ଚାକରକୁ ଡାକିଲେ । ମୁଁ କହିଲି ଆରେ ଭାଇ ମୋର ଚା' କଫି କିଛି ଦରକାର ନାହିଁ । ସେ କହିଲେ 'ଏତେଦିନେ ଆସିଛ । ଖାଲି ଚା କଫିରେ କ'ଣ ହବ ?'

ଚାକର ଦୀନବନ୍ଧୁକୁ ନିଜ ଡ୍ରୟରରୁ ଦଶଟଙ୍କିଆ ନୋଟଟିଏ ଦେଇ କହିଲେ 'ଯା-ସୁନାକର ଦୋକାନରୁ ଗରମ ଜିଲିବି' ଆଳୁଚପ ଆଉ ବାଛ ଦୋକାନରୁ ପିଆଜି, ସିଙ୍ଗଡ଼ା ଆଉ କାଳାକନ୍ଦ ଆଣିବୁ' ।

ମୁଁ ସନ୍ଧ୍ୟାବେଳେ ଜଳିଖିଆ ଖାଏନା ଏବଂ ଏସବୁ ଦରକାର ନାହିଁ ବୋଲି ପ୍ରତିବାଦ କଲାରୁ ବନ୍ଧୁ କହିଲେ 'କଣ ଗୋଟାଏ ସେସିତ କହୁଚ ଡାକ୍ତରଙ୍କ ଭଳିଆ ? ଦୀନବନ୍ଧୁ ଚାଲିଯାଇଥିଲା । ତା'କୁ ପଛରୁ ପାଖକୁ ଡାକି ଚପା ଗଳାରେ ପଚାରିଲେ 'ମା କ'ଣ କରୁଛନ୍ତି ?' 'ମା ତଳ ଖଞ୍ଜାରେ ଛୁଆ ଦେଇଙ୍କ ମୁଣ୍ଡ କୁଣ୍ଡେଇ ଦଉଛନ୍ତି' ବୋଲି ଦୀନବନ୍ଧୁ ଉତ୍ତର ଦେଲା । ତୁ ଘରକୁ ନବୁନି ଜଳଖିଆ ମା ପୁଣି ଝାମ୍ପିବେ । ବନ୍ଧୁ ଦିନାକୁ ନିର୍ଦ୍ଦେଶ ଦେଲେ । ଦୀନବନ୍ଧୁ ଚାଲିଗଲା । ମୁଁ ପଚାରିଲି 'ମା ଝାମ୍ପିବେ କ'ଣ ? ଆରେ ତମେ ଜାଣିନା । ମୋ ସ୍ତ୍ରୀଟା ସବୁବେଳେ ମୋ ସାଙ୍ଗରେ ଲାଗିଛି । ଖୋଇ ପେଇ ଦଉନି ହୋ । କାହିଁକି ? ମୋର ଡାୟବଟିସ୍ । ଏବେ ବ୍ଲଡ଼ ପ୍ରେସର ହାଇପର ଟେନ୍‌ସନ୍ ବି ଟିକେ ହେଲାଣି । ସେଥିପାଇଁ ଗୃହ କର୍ତ୍ତୀଙ୍କର ବଡ଼ କଡ଼ା ଶାସନ । 'ମୋର ବି ଏବେ ଟିକେ ସୁଗର ବାହାରିଲାଣି । ମୁଁ ସେଥିପାଇଁ ଚିନି, ମିଠା ଆଳୁ, ଭାତ ଇତ୍ୟାଦି ଛାଡ଼ି ଦେଇଛି । ମୋର ତ' କଣ୍ଟ୍ରୋଲ କରିବା କଥା' ମୁଁ କହିଲି । 'ଛାଡ଼-ଛାଡ଼ ବାଉନ ବର୍ଷ ହେଲାଣି ପୁଅତ ଭଲ ରୋଜଗାର କରୁଛି ଇରାନ୍‌ରେ । ଝିଅଟାର ବା'ଘର ତ ଠିକ୍ ହୋଇଗଲାଣି । ଆଉ ଏତେ ପାଟି ମାରିବା କ'ଣ ଦରକାର ? ବନ୍ଧୁ ଉତ୍ତର ଦେଲେ । ପୁଣି ବନ୍ଧୁ ଆରମ୍ଭ କଲେ 'କିନ୍ତୁ ମୋ ଖାଇବା ରେଷ୍ଟ୍ରିକ୍ଟ କରିବାକୁ ଯାଇ ମୀନାକ୍ଷୀ ମୋଟା ହୋଇଗଲାଣି । ତା'ର କର୍ଭସ ଗୁଡ଼ାକ ମାଂସରେ ଭର୍ତ୍ତି ହୋଇଗଲାଣି । ମତେ ବଞ୍ଚାଇବାକୁ ଯାଇ ସେ ନିଜର ବିଉଟି ପୁରାପୁରି ନଷ୍ଟ କରିଦେଲାଣି । ମୋର ମନେପଡ଼ିଲା ମୀନାକ୍ଷୀ କଲେଜରେ ଆମର ଏମ୍.ଏ ଶେଷ ବର୍ଷ ବେଳକୁ ଦ୍ୱିତୀୟ ବର୍ଷ କଲାର ଛାତ୍ରୀ । ପ୍ରଫେସର ଦାସଙ୍କର ଝିଅ, କଲେଜ କୁଇନ୍ ଭାବରେ ଖ୍ୟାତି ଥିଲା । ଚାରିବର୍ଷ ପରେ ରଜତ ତା'କୁ ବାହାହେଲା ବେଳକୁ ଆମେ ସବୁ ତା'କୁ ଚିଡ଼ାଉଥିଲୁ ଯେ, କୁଇନକୁ ରଖିବାକୁ ତା'ର ଗୋଟାଏ ଗ୍ଲାସ ହାଉସ ଦରକାର । ମୁଁ ତେଣୁ କହିଲି ତୁମକୁ କଣ୍ଟ୍ରୋଲ କରିବାକୁ ମୀନାକ୍ଷୀ କେମିତି ମୋଟା ହେଉଛନ୍ତି ? ଅବଶ୍ୟ ତମେ ବଞ୍ଚି ରହିଲେ ଯାଇ ସିନା ତାଙ୍କ ବିଉଟି ଆଉ କର୍ଭର କିଛି ମୂଲ୍ୟ ଅଛି । ତେଣୁ ସେଇଟା ତାଙ୍କର ଭେଷ୍ଟେଡ଼ ଇଣ୍ଟରେଷ୍ଟ । ବଡ଼ ନାଚୁରାଲ ଯେ, ସେ ତମ ଖାଇବା ପିଇବାରେ ବାଧା ଦେବେ । ରଜତ କହିଲେ ଆରେ ସବୁବେଳେ ମୋ ଖାଇବା ପାଖରେ ବସି ମୋ ପ୍ଲେଟରୁ ମୀନାକ୍ଷୀ ମିଠା ଆଉ ପୁରୀ ଇତ୍ୟାଦି ଖାଇ ଯାଉଛନ୍ତି । ବେଶୀ କରି ମୁଁ ଯେତେବେଳେ ଅଣ୍ଡାଖାଏ ସେଥିରେ ସେ ନିଶ୍ଚୟ ଭାଗ ବସାଇବେ । ମୁଁ ଚାରିଟା ଅଣ୍ଡା ଥରକେ ନଖାଇଲେ ମୋର ମନଟା ପୁରେନାହିଁ । ସେଥିରୁ ସେ ଜବରଦସ୍ତି ଦୁଇଟା ଖାଇଯିବେ । ଆମେ ଜଳଖିଆ ଖାଇସାରିଲେ ତାଙ୍କୁ ଡାକିବା । ଦେଖିବ, ସେ କେତେ ମୋଟି ହେଲାଣି ।



Digitized by srujanika@gmail.com

ଏତିକି ବେଳେ ପରଦା ଟେକି ମୀନାକ୍ଷୀ ଓକିଲଙ୍କ ଚାମ୍ବର ଭିତରକୁ ପ୍ରବେଶ କଲେ । ମତେ ଦେଖି କହିଲେ ଓଃ ବଡ଼ ବାବୁ । ଯାଙ୍କୁ ଟିକେ ପଚାରନ୍ତୁ ମୁଁ ମୋଟି ହେବାର କାରଣ କ'ଣ ? ମୁଁ ଠୋ ଠୋ ହୋଇ ହସିପଡ଼ିଲି । ମୀନାକ୍ଷୀ ମୋଟି ହୋଇଯାଇଛନ୍ତି ସତ୍ୟ । ମୁହଁଟିରେ ସେଇ କଲେଜ କୁଇନ୍‌ର ସୌନ୍ଦର୍ଯ୍ୟ ଛାପ ଏବେବି ରହିଛି ।

(ତା୦୬.୦୮.୧୯୮୩ରିଖ)



# ପାଉଁଶଦାନୀକୁ ଯେଉଁମାନେ ଦେଖନ୍ତି ନି

ଆଜି ଯେଉଁ କଥାଟା ଲେଖିବାକୁ ଯାଉଛି ବଡ଼ ବିରକ୍ତିରେ ବାଧ୍ୟ ହୋଇ ଲେଖୁଚି । ଗତ କେତେ ବର୍ଷ ହେଲା ମୁଁ ଚେଷ୍ଟା କରୁଚି ଏମାନଙ୍କୁ ପରିଷ୍କାର ପରିଚ୍ଛନ୍ନ କରିବାକୁ । ସଭ୍ୟ କରିବାକୁ । ଟିକେ ସାଧାରଣ ରୁଚି ବୋଧ ଆଣିବାକୁ ଏମାନଙ୍କଠାରେ । କିନ୍ତୁ ମୁଁ ଫେଲ । ସେମାନେ କେବେହେଲେ ନିଜକୁ ସୁଧାରିବେ ନାହିଁ ।

ଅତି ସାଧାରଣ କଥାଟାଏ । ମୋର ବହୁ ବନ୍ଧୁ ଏମ.ଏଲ.ଏ, ଏମ.ପି, ଅଫିସର, ମନ୍ତ୍ରୀ ଓ ପୂର୍ବତନ ମନ୍ତ୍ରୀ, ଅଧ୍ୟାପକ, ସାମ୍ବାଦିକ ଇତ୍ୟାଦି ଇତ୍ୟାଦି ଅଛନ୍ତି । ସେମାନଙ୍କ ଭିତରେ ସିଗାରେଟ ପିଇଲାବାଲା (ଖାଇଲା ବାଲା କହିଲେ ଭଲ ଓଡ଼ିଆ ହେବ ପରା) ଗୋଷ୍ଠୀର ଲୋକେ ମୋ ପାଖକୁ ଯେତେବେଳେ ଆସନ୍ତି ମୁଁ ତାଙ୍କୁ ସିଗାରେଟ୍ କାଢ଼ିବାରେ ଦେଖିଲେ, ଜଳନ୍ତା ଦିଆସିଲି କାଠି ପକାଇବାକୁ, ସିଗାରେଟ ଝୁଲ ଝାଡ଼ିବା ପାଇଁ ଆସେଟ୍ର ଅର୍ଥାତ୍ ପାଉଁଶଦାନୀ ମଗାଏ କିମ୍ବା ଟେବୁଲ ଉପରେ ସେମାନେ ଦେଖିଲା ଭଳି ତାଙ୍କ ନାକ ଆଖି ତଳେ ଥୁଏ ।

ସେମାନେ ପାଉଁଶଦାନୀକୁ ଦେଖି କରି ମଧ ମୋ ଇଙ୍ଗିତ ଏବଂ ବେଳେ ବେଳେ କହିବା ସତ୍ତ୍ୱେ ପୋଡ଼ା ଦିଆସିଲି କାଠି, ସିଗାରେଟ୍ ଝୁଲ ଏବଂ ସିଗାରେଟ୍‌ର ଜଳନ୍ତା ଶେଷ ଅଂଶତଳେ ଚଟାଣରେ ପକାଇ ଦେବେ ।

ବସି ଗପସପ କରିଲା ଭିତରେ ମୁଁ ସେମାନଙ୍କୁ ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ସିଗାରେଟ୍ ଲଗାଇଲା ବେଳକୁ ପାଉଁଶଦାନୀରେ ଦିଆସିଲି ଓ ସିଗାରେଟ୍ ଝୁଲ ପକାଇବାକୁ ବାରମ୍ବାର ହେଜଉଥିବି । ସେମାନେ ଥରେ ଦାନୀରେ ଝୁଲ ଝାଡୁଥିବେ ତ ତିନିଥର ତଳେ ଝାଡୁଥିବେ । ଏହି ପ୍ରକାର ଲୋକେ ବେଶ ପାଠୁଆ, ଦାମୀ ପୋଷାକ ପିନ୍ଧନ୍ତି, ଉଚ୍ଚ ଆସନରେ ବସନ୍ତି, ଦେଶକୁ କେତେ କଥା ଶିଖାନ୍ତି ଓ ଶୁଣାନ୍ତି । ଏମାନଙ୍କ ଭିତରୁ କେତେକ ବିଦେଶ ଯାଇ ପାଶ୍ଚାତ୍ୟ ସଭ୍ୟତା ସହିତ ମଧ ପରିଚିତ ହୋଇ ଆସିଛନ୍ତି ।

ଏମାନେ ଡିଗ୍ରୀଧାରୀ କିନ୍ତୁ ଶିକ୍ଷିତ ନୁହଁନ୍ତି । ଏମାନେ ସଭ୍ୟ ପୋଷାକରେ ଅସଭ୍ୟ । ଏମାନଙ୍କର ପରିଚିତି ଅଛି, ସଂସ୍କୃତି ନାହିଁ । ଏମାନଙ୍କର ଅହଂକାର ଅଛି, ସଂସ୍କାର ନାହିଁ । ଅନେକ ଏହି ଲେଖା ପଢ଼ିଲାପରେ ମଧ ନିଜକୁ ମାର୍ଜିତ କରିବେନାହିଁ ।

କିନ୍ତୁ ଆଶା କେତେକ ହୁଏତ କରିବେ ।

(ତା୨୫.୦୬.୧୯୮୭ରିଖ)





Digitized by srujanika@gmail.com

# ନେତୃତ୍ୱ, ଜନତା ଓ ଚାମଚାମାନେ

ପୁରୁଣା କାଳରେ ନେତା ଜନତାଙ୍କୁ ନେତୃତ୍ୱ ଦେଉଥିଲେ । ଏବେ ନେତା ଜନତାଙ୍କୁ ନେତୃତ୍ୱ ମାଗୁଛନ୍ତି । ତେଣୁ ଏବେ ଜନତା ଉପରେ ଗୁରୁଦାୟିତ୍ୱ ପଡ଼ିଛି । ଜନତା ଯଦି ଘରେ ଚୁପ୍ ହୋଇ ବସିବେ ତେବେ ନେତାମାନେ କେବଳ ହାଜିରା ପକେଇ ବସିଯିବେ । କାମ ମୋଟେ କରିବେନି । ଜନତା ନେତାଙ୍କୁ ନେତୃତ୍ୱ ଦେବାକୁ ହିଁ ପଡ଼ିବ । ଜନତାର ନେତୃତ୍ୱ ବିନା ନେତା ବିଚାରା ନିରାଶ୍ରୟ ଓ ଅନାଥ ହୋଇଯିବାର ଘୋର ଆଶଙ୍କା ଦେଖାଦେଲାଣି ।

ଗୋଟିଏ ଦେଶରେ ଥରେ ରାଜାଙ୍କ ଶାସନରେ ଲୋକେ ଅତିଷ୍ଠ ହେଲେ । ରାଜାଙ୍କ ଲୋକେ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ରାଜକୋଷରୁ ସବୁ ପଇସା ନେଇ ନିଜ ଘର ତୋଳାଇଲେ । ଘୋଡ଼ା ଚଢ଼ିଲେ । ମଉଜ ମଜଲିସ କଲେ । ନିଜ ସ୍ତ୍ରୀ ପିଲାଙ୍କୁ ବହୁତ ପଇସାପତ୍ର ଦେଲେ । ନିଜ ସ୍ତ୍ରୀ ଛଡ଼ା ବହୁଆଡ଼େ ଅନ୍ୟ ଲୋକଙ୍କ ସ୍ତ୍ରୀ ପିଲାଙ୍କ ପ୍ରତି ନଜର ପକାଇଲେ । କଟୁଆଳମାନେ ମଧ ଲୋକଙ୍କୁ ମାଡ଼ ମାରିଲେ ଓ ଲୁଣ୍ଠନ କଲେ ।

ବିଭିନ୍ନ ଗ୍ରାମର ଲୋକେ ଶେଷରେ ଏହି ଅତ୍ୟାଚାର ବିରୋଧରେ ପ୍ରତିବାଦ କରିବା ପାଇଁ ଏକଜୁଟ ହେଲେ । ବିଭିନ୍ନ ଗାଁର ଲୋକେ ସଂଗଠନ କରି ନିଜ ଗାଁର ମୁଖିଆମାନଙ୍କ ନେତୃତ୍ୱରେ ପ୍ରସ୍ତୁତି କଲେ । ରାଜାଙ୍କ ନଅର ଆଗରେ ବିକ୍ଷୋଭ ହେବ । ଶୋଭାଯାତ୍ରା ବାହାରିବ । ସେ ରାଜ୍ୟରେ ଗୋଟାଏ ବଡ଼ ଗାଁ ଥିଲା । ସମସ୍ତେ ଭାବିଲେ ସେ ଗାଁର ଲୋକଙ୍କୁ ଏ ମେଳିରେ ନ ପୂରାଇଲେ ରାଜାଙ୍କ ପାଖରେ ପ୍ରତିବାଦଟା ହୁଏତ ପୂର୍ଣ୍ଣାଙ୍ଗ ହେବନି ।

ଗାଁଟା ବଡ଼ ହେଲେ କ'ଣ ହେବ ସେ ଗାଁରେ ବହୁତ ନେତା । ପ୍ରତି ସାହୀରେ ନେତା । ତଥାପି ସେ ଗାଁ ସହିତ ଅନ୍ୟ ଗାଁର ନେତାମାନେ କଥାବାର୍ତ୍ତା ଚଳାଇଲେ । ସେ ଗାଁରେ ବଡ଼ ପଇସାବାଲା ଜମିଦାର ଜଣେ ଥିଲେ । ଚେହେରା ବି ବେଶ୍ ଡେଙ୍ଗା ଚଉଡ଼ା । ତେଣୁ ତାଙ୍କର ଅନୁଚର ବେଶୀ । ସେତେବେଳେ ଅବଶ୍ୟ ଚାମଚା ଶବ୍ଦର ବ୍ୟବହାର ହୋଇନଥିଲା । ତେଣୁ ସେ ପଇସାବାଲା ଜମିଦାର କହିଲେ ଯେ ଯଦି ଏ ବିକ୍ଷୋଭରେ ମତେ ନେତା କରିବ ତେବେ ମୁଁ ନେତୃତ୍ୱ ନେବି । ପଇସା ଖର୍ଚ୍ଚ କରିବି । ସବୁ ପଇସା ମୁଁ ଦେବି । ମୋ ବୈଠକଖାନାରେ ବିକ୍ଷୋଭ ହେବାଯାଏ ପ୍ରତିଦିନ ବୈଠକ ବସିବ ମୁଁ ସମସ୍ତଙ୍କୁ ପ୍ରତିଦିନ ଖାଇବା ପିଇବାକୁ ଦେବି । ଗାଡ଼ି ଘୋଡ଼ା ଯାହା ଦରକାର ସବୁ ଯୋଗେଇବି ।

ତାଙ୍କ ଚାମଚାମାନେ ମଧ ଜମିଦାରଙ୍କ କଥାରେ ହୁଆ ପେଲିଲେ । ହଁ ଆମ ବାବୁଙ୍କୁ ନେତା କରାଯାଉ । ସେ'ତ ସବୁ ଖର୍ଚ୍ଚବାର୍ଚ୍ଚ ତୁଲାଇବେ । ଆଉ ନେତୃତ୍ୱଟା ଦେବାରେ ତମର ଆପତ୍ତିକ'ଣ ? ଆମର ତ ସବୁଠୁ ବଡ଼ଗାଁ । ଏ ଗାଁରେ ତ ବାବୁ ସବୁଠାରୁ ବଡ଼ବାବୁ । ଅନ୍ୟ ଗାଁର ମୁରବୀମାନେ କହିଲେ, ହଁ ଆପଣ ତ ବଡ଼ ଗାଁର ଜମିଦାର । ଆମେ ଆପଣଙ୍କୁ ଆଗରେ ଚାଲିବାକୁ ଦବୁ । ରାଜାଙ୍କ ନଅର ଆଗରେ ଯେଉଁ ସଭା ହେବ ସେଥିରେ ଆପଣ ବେଶୀ ସମୟ ବକ୍ତୃତା ଛାଡ଼ିବେ । ଆମେ ଅଳ୍ପ ସମୟ ଭାଷଣ ଦବୁ । ଆଉ ଆମେ ଏତେ ଗାଁର ଲୋକ ସବୁଦିନେ ଆପଣଙ୍କ ବୈଠକଖାନାକୁ ଆସିବୁ



Digitized by srujanika@gmail.com

କେମିତି ? ତେଣୁ ପାଳିକରି ବିଭିନ୍ନ ଗାଁରେ ମିଟିଂ ହବ । ଏଥିରେ ଡେଙ୍ଗା ଚଉଡ଼ା ପଇସାବାଲା ଜମିଦାର ରାଜୀ ହେଲେ ନାହିଁ । ସେ କହିଲେ ଯେ, ସେ କଥା ହେବନାହିଁ । ମତେ ପୁରା ନେତୃତ୍ୱ ମିଳିବା ଦରକାର । ଅସଲ କଥାଟା ହେଲା, ବଡ଼ବାବୁଙ୍କର ଆଖି ରାଜଧାନୀ ଉପରେ । ଯଦି ପ୍ରଜାମେଳି ସଫଳ ହେଲା ତେବେ ଏ ରାଜଶାସନ ଲୋପ ହେବ । ବିନା ରାଜାରେ କ'ଣ ଶାସନ ଚାଲେ । ତେଣୁ ସେତେବେଳକୁ ବଡ଼ବାବୁ ଛତ୍ରପତି ହେବାକୁ ସହଜରେ ସୁବିଧା ପାଇଯିବେ । ବଡ ଗାଁରେ ତ ବହୁତ ନେତା ସେମାନେ ଅନ୍ୟ ଗାଁ ବାଲାଙ୍କୁ ଆଖି ମାରିଦେଲେ । ସେ ଡେଙ୍ଗା ଜମିଦାରକୁ ଛାଡ଼ । ତମେ ସବୁ ବିକ୍ଷୋଭ ପଟୁଆରର ଆୟୋଜନ କର । ଆମେ ସବୁ ଯୋଗ ଦେବୁ । ତଥାପି ବଡ଼ବାବୁଙ୍କ ବୁଝାଇବାକୁ ଚେଷ୍ଟା ହେଲା । ସେ କିନ୍ତୁ ନଛୋଡ଼ବନ୍ଧା ମତେ ନେତୃତ୍ୱ ନ ମିଳିଲେ ବିକ୍ଷୋଭ ବରଂ ନହେଉ । ବାଧହୋଇ ଅନ୍ୟ ଗାଁ ବାଲାଏ ବଡ଼ ଗାଁ ବାଲାଙ୍କୁ ଛାଡ଼ି ଲାଗିପଡ଼ି ବିକ୍ଷୋଭ କଲେ । ସେଦିନ ଦୋକାନ ବଜାର ବନ୍ଦ ହୋଇଗଲା । କଳକାରଖାନା ବନ୍ଦ ହୋଇଗଲା । ବହୁଲୋକ ବିକ୍ଷୋଭରେ ଯୋଗ ଦେଲେ । ବଡ଼ ଜମିଦାର ବିକ୍ଷୋଭ ନ କରିବାକୁ ଆହ୍ୱାନ ଦେଲେ । ତାଙ୍କ ଚାମଚାମାନଙ୍କୁ ଛାଡ଼ି ଆଉ କେହି ତାଙ୍କ କଥାରେ କାନ ଦେଲେନି । ସମସ୍ତେ ମିଶି ଶୋଭା ଯାତ୍ରାରେ ଚାଲିଲେ । ଜନତାର ନେତୃତ୍ୱରେ ଶେଷରେ ରାଜଗାଦୀ ଟଳିଲା ।

(ତା୦୮.୦୮.୧୯୮୩ରିଖ)





Digitized by srujanika@gmail.com

# ଯେଉଁଠି ପୁରୁଷମାନେ ଦିନରେ ବି ଶୁଅନ୍ତି

ଓଡ଼ିଶା ବାହାରେ ବିଶେଷକରି ପଞ୍ଜାବୀମାନେ କହନ୍ତି ଯେ ରୋଜଗାର କରିବାକୁ ଓଡ଼ିଶା ପରି ଆଉ ଦେଶ ନାହିଁ । କାରଣ ଓଡ଼ିଶାର ଲୋକ ଭାରତ ବର୍ଷରେ ସବୁଠାରୁ ଅଳସୁଆ, କର୍ମକାତର । ଏମାନଙ୍କର ବଡ଼ ହେବାକୁ, ବେଶି ରୋଜଗାର କରିବାକୁ ସେପରି ଅଭିଳାଷ ନାହିଁ । ସେଥିପାଇଁ ପଞ୍ଜାବୀମାନେ କହନ୍ତି ଯେ ଓଡ଼ିଶାରେ ଲୋକେ ରାତିରେ ତ ଶୁଅନ୍ତି । ପୁରୁଷ ଲୋକମାନେ ଓଡ଼ିଶାରେ ଦିନରେ ବି ଶୁଅନ୍ତି । ଯେଉଁ ଦେଶର କର୍ମକ୍ଷମ ପୁରୁଷ ଲୋକ ଦିନବେଳା ନିଦ୍ରା ଯାଉଛନ୍ତି ସେଠାରେ ସାମାଜିକ ଓ ଆର୍ଥିକ ବିକାଶର ଗତି ସେଇଥିପାଇଁ ଏପରି ଧିମେଇଛି ବୋଲି ଧରିନିଆଯାଇପାରେ ।

ଓଡ଼ିଶାର ଆଳସ୍ୟ ଦୈନନ୍ଦିନ ଜୀବନରେ ପରିସ୍ଫୁଟ । ଏଠାରେ ଗୋଟାଏ ଛୋଟ ଉଦାହରଣ ଦେଲେ ଭଲ ହେବ ।

ମୁଁ ସକାଳେ ପ୍ରାତଃ ଭ୍ରମଣରେ ଯାଏ । ମୋ ଚାଲିବା ବାଟରେ ମୋର ଦିନେ ଇଛା ହେଲା କୋଉଠି ଗୋଟାଏ ଚା ଖାଇବାକୁ । କିନ୍ତୁ ସକାଳ ଛଟା ବେଳେ କୌଣସି ଚା ଦୋକାନ ଖୋଲି ନଥାଏ । ବମ୍ବେ, ଦିଲ୍ଲୀ, କଲିକତା ଓ ମାଡ୍ରାସ ପରି ସହରରେ ରାତି ଚାରିଟାରୁ ଚା ଦୋକାନ ଖୋଲିଯାଏ । ସାଢ଼େ ଛ'ଟା ବେଳେ ସେଦିନ ଦେଖିଲି ଗୋଟାଏ ଚା ଦେକାନୀ ଉଠି ଚୁଲିରେ କୋଇଲା ସଜାଡୁଛି । ପରୀକ୍ଷା କରିବାକୁ ପଚାରିଲି ଚା' ମିଳିବ । ସେ ଉତ୍ତର ଦେଲା ନାହିଁ ଆଜ୍ଞା ହବନି ।

ମୁଁ କହିଲି କାହିଁକି ?

ସେ ଉତ୍ତର ଦେଲା- କୋଇଲା ଧରେଇ ତାଉ ଆସିବାକୁ ଘଣ୍ଟାକରୁ କମ ଲାଗିବନି ।

ମୁଁ କହିଲି - 'ତମେ ଆହୁରି ଭୋରରୁ ଉଠି ଚୁଲି ଲଗାଉନ କାହିଁକି ।'

'ନାହିଁ ଆଜ୍ଞା, ଶୀତ ପଡ଼ିଲାଣି । ଏତେ ସକାଳୁ କିଏ ଉଠୁଚି ? ଏଠି କୋଉ ବା ବିକ୍ରି ?' ସହଜରେ ଚା ଦୋକାନୀ ଉତ୍ତର ଦେଲା ।

ସେହି ବାଟରେ ଆଉ ଚାରି ଛ ପାଦ ଆଗକୁ ଗଲା ବେଳକୁ ରାସ୍ତା କଡ଼ରେ ମୁଁ ସବୁଦିନେ ଦେଖେ ସକାଳ ଛଅଟା ପୂର୍ବରୁ ଗୋଟିଏ ବୟସ୍କ ଲୋକ କେତଗୁଡ଼ିଏ ଇଟା ଉପରେ ଖଣ୍ଡିଏ ପଟା ପକାଇ ସାଇକେଲ ମରାମତି ଉପକରଣ ସହିତ ପମ୍ପଟିଏ ଥୋଇବସିଥାଏ । ସମୁଦାୟ ଦୋକାନର ଦାମ ପନ୍ଦର କୋଡ଼ିଏ ଟଙ୍କା ହେବ । ଅପେକ୍ଷା କୌଣସି ସାଇକେଲ ଚଢ଼ାଳିକୁ ଯାହାର ହାଓ୍ୱା ଦରକାର କି ଫୁଟି ଯାଇଥିବା ଟିଉବକୁ ମରାମତ ଦରକାର । କିନ୍ତୁ ଏତେ ସକାଳୁ ଏହି ରାସ୍ତା କଡ଼ ସାଇକେଲ ମରାମତକାରୀ ପାଖକୁ କୋଉ ସାଇକେଲାବାଲା ଆସୁଛି ।

ଚା ଦୋକାନୀଠୁ ଏସବୁ ଶୁଣି ସାରିଲା ପରେ ସେ ସାଇକେଲ ମରାମତିବାଲାକୁ ପଚାରିଲି ସେ ଏତେ ଭୋରୁ ଗାଧୋଇ ପାଧୋଇ ଦୋକାନ ଖୋଲୁଚି କାହିଁକି ?

ସେ ଉତ୍ତର ଦେଲା 'ଗରିବ ଲୋକ ଆଜ୍ଞା । ଏଇଥିରୁ ପେଟ ପୋଷୁଚି । ଉଦ୍‌ଯୋଗ ନକଲେ କେମିତି ହେବ । ବେଳେ ବେଳେ ସକାଳୁ ଗରାଖ ବି ମଳିଯାନ୍ତି ।'

ଭାବୁଥିଲି ସାଇକେଲ ଦୋକାନୀ ଚା' ଦୋକାନ ଏବଂ ଚା' ଦୋକାନୀ ସାଇକେଲ ମରାମତି ଦୋକାନ ଖୋଲିଲେ ବୋଧେ ଉଭୟଙ୍କର ବେପାର ଭଲ ହୁଅନ୍ତା । କିନ୍ତୁ ସେ କଥା କ'ଣ ସେମାନେ ବୁଝୁଛନ୍ତି ?

(ତା୩୧.୧୦.୧୯୮୦ରିଖ)





Digitized by srujanika@gmail.com

# ସିନେମା ସଉକ ଓ ମୁଣ୍ଡବିନ୍ଧା

ଟେଲିଭିଜନ ଓରଫ ଟିଭି କଟକ ଭୁବନେଶ୍ୱରରେ ଚାଲିଲା ଦିନଠାରୁ ଘରେ ବସି ସପ୍ତାହକୁ ଦୁଇ ତିନିଟା ସିନେମାଚିତ୍ର ଦେଖିବାକୁ ମିଳୁଛି । ସମସ୍ତେ କିନ୍ତୁ ଟିଭି କିଣି ନାହାଁନ୍ତି । ଯିଏ କିଣିଛନ୍ତି ସେମାନେ ଯେଉଁ ଚିତ୍ରଟି ଦେଖିବାକୁ ଚାହୁଁଛନ୍ତି ସେ ଚିତ୍ରଟି ଟିଭିରେ ଆସୁନାହିଁ କିମ୍ବା ନିକଟ ଭବିଷ୍ୟତରେ ଆସିବାର ସମ୍ଭାବନା ନାହିଁ । ତେଣୁ ସିନେମାହଲରେ ପଡ଼ିଥିବା ଚିତ୍ରଟିର ପ୍ରଶଂସା ବାହାରେ ଶୁଣି ଶୁଣି ଘର ଭିତରେ ଝିଅପୁଅଙ୍କ ଠାରୁ ଶୁଣି ଗୃହିଣୀ ମନକଲେ ଚିତ୍ରଟିକୁ ଦେଖି ଆସିବାକୁ । ସ୍ୱାମୀ ନଗଲେ ଗୃହିଣୀ ସିନେମା ଦେଖିବାକୁ ଯିବେନି । ତେଣୁ ସିନେମା ଦେଖିବାକୁ ଯିବାକୁ ହୁଏ । ଭଲ ସିନେମା ହୋଇଥିଲେ ଭଲ ବି ଲାଗେ । କିନ୍ତୁ ଏହି ଚିତ୍ରଟି ମଧ୍ୟାହ୍ନ ସୋ ଅର୍ଥାତ୍ ଦିନ ବାରଟା ବେଳକୁ ଆରମ୍ଭ । ଦିନ ତିନିଟା ପୂର୍ବରୁ ଚିତ୍ର ଶେଷ ହେବାର ନୁହେଁ । ଚିତ୍ରଟି ଦେଖିବାକୁ ହେଲେ ଖରାରେ ହିଁ ବାହାରିବାକୁ ହେବ ।

ଯାହା ହେଉ ଟିକେଟ୍ ମିଳିଲା ପରେ ଶତୀତାପ ନିୟନ୍ତ୍ରିତ ସିନେମା ହଲରେ ଦେହରେ ପ୍ରାଣ ପଶିଲା ଭଳି ଲାଗିଲା । ଆଗ ପଛ ଧାଡ଼ିରେ ଗୋଟିଏ ଅପେକ୍ଷାକୃତ ବଡ଼ ପରିବାର ତିନିଚାରିଜଣ ମହିଳା ଦୁଇ ତିନିଜଣ ଅପ୍ରାପ୍ତ ବୟସ୍କ ପିଲା । ଗୋଟିଏ କୋଳପିଲା ଏବଂ ସାଙ୍ଗରେ ଜଣେ ପୁରୁଷ । ଖରାରେ ଆସି ଦୁଇଜଣ ମହିଳାଙ୍କର ମୁଣ୍ଡ ଭୀଷଣ ବିନ୍ଧୁଛି । ମୁଣ୍ଡବିନ୍ଧା କାଟିବା ପାଇଁ ଔଷଧ ଦରକାର । ପୁରୁଷଜଣକ ଖପ୍ପା । ମୁଣ୍ଡ ବିନ୍ଧୁଥିଲା ଯଦି ଏ ଖରାରେ ସିନେମା ଦେଖିବା ପାଇଁ ଦଉଡୁଥିଲ କାହିଁକି ? ସିନେମା ନଦେଖିଲେ ଭାତ ହଜମ ହଉନି ଆଜି । ଏଠାରେ କେଉଁଠି ଔଷଧ ମିଳିବ ? କୋଉ ଔଷଧ ଆସିବ ସେ ନେଇ ଆଲୋଚନା ଚାଲିଲା । ଆନାସିନ, ଆସପ୍ରୋ, ନୋପନ, ଷପେକ ଆଦି ଆହୁରି କେତେ ଔଷଧର ନାମ ।

ଭଦ୍ରଲୋକ ବାଧହୋଇ ବାହାରକୁ ଗଲେ । କିଛି ସମୟ ପରେ ଫେରିଆସି କହିଲେ ଏଠି ପାନ ଦୋକାନରେ କିଛି ଔଷଧ ନାହିଁ । କ'ଣ କରାଯିବ । ଭଦ୍ର ମହିଳା ଔଷଧ ନଖାଇଲେ ସିନେମା ଦେଖିହେବନି । ଦ୍ୱିତୀୟ ଭଦ୍ରମହିଳା କହିଲେ ଯେ, ଘରେ ତାଙ୍କ ମୁଣ୍ଡ ବିନ୍ଧୁନଥିଲା ଖରାରେ ଆସିଲା ପରେ ଏହି ସିନେମା ହଲରେ ମୁଣ୍ଡ ବିନ୍ଧୁଛି । ଚିତ୍ରରେ ରେଖା ହିରୋଇନ । ଭଦ୍ରଲୋକ ବିରକ୍ତ ହୋଇ କହିଲେ ମେ' ମାସ ଖରା । ଦୋକାନ ସବୁ ବାରଟାବେଳକୁ ବନ୍ଦ ହୋଇଯାଉଛି । ମାଷ୍ଟରକ୍ୟାଣ୍ଟିନ୍ ଛକଯାଏ ନଗଲେ ଔଷଧ ମିଳିବନି । ମହିଳାଙ୍କ ଔଷଧ ନଆଣିଲେ ତାଙ୍କ ସିନେମାଦେଖା ମାଟି ହୋଇଯିବ । ଭଦ୍ରଲୋକଙ୍କ ବିରକ୍ତି ଯେ ଏତେ ସିନେମା ସଉକ ଯଦି ମୁଣ୍ଡ କାହିଁକି ବିନ୍ଧୁଛି । ନିଉଜ ରିଲ ଆରମ୍ଭ ହେଲାଣି । ଭଦ୍ରଲୋକ ଦଉଡ଼ିଲେ ବାହାରକୁ । ପ୍ରକୃତି ଆଉ ପୁରୁଷ । ପୁରୁଷ କେତେ ଗୁଡ଼ାକ କାମରେ ଧାଇଁବାକୁ ବାଧ ଯଦି ପ୍ରକୃତି ଚାହାନ୍ତି । କୋଳକୁଆଟା ରଡ଼ି ପକେଇଲାଣି । ହଲ ଭିତରଟା ଏବେ ଆଶାନୁରୂପ ଥଣ୍ଡା ଲାଗୁନି । ବରଂ କେମିତି ଗୋଟାଏ ଉଷୁମ ଉଷୁମ ଲାଗୁଛି କାରଣ ସିନେମା ହଲ ମାଲିକ ଡେରିରେ ଏଆରକଣ୍ଡିସନ୍‌ର ଚାଲୁ କରିଛନ୍ତି । ସେ ଅଳ୍ପ ଖର୍ଚ୍ଚରେ ବେଶୀ ଲାଭ କରିବାକୁ ଆଗ୍ରହୀ । କେତେ ଡେରିରେ ଭଦ୍ରଲୋକ ଔଷଧ ଆଣି ପହଞ୍ଚିଲେ ଧଇଁସଇଁ ହୋଇ । ସେତେବେଳକୁ ସିନେମା ଆରମ୍ଭ ହେଲାଣି । ଜଣେ ଭଦ୍ରମହିଳା କହିଲେ ପାଣି ଗିଲାସେ ଆଣିଲାନି । ଔଷଧ କେମିତି ଖାଇବୁ ।



Digitized by srujanika@gmail.com

ଭଦ୍ରଲୋକ କହିଲେ ଗିଳିଦିଅ । ପାଣି ଆଣିବା କଥାହେଲେ ଯାଅ ବାହାରକୁ ଔଷଧ ଖାଇ ଆସିବ । ମୁଁ ଆଉ ଦଉଡ଼ି ପାରିବିନି । ଶୁଖିଲା ଟାବଲେଟ ଗିଳିବା କଷ୍ଟ । କିନ୍ତୁ ମୁଣ୍ଡବିନ୍ଧା କମିଲା ବେଳକୁ ଇଣ୍ଟରଭାଲ ହୋଇଯାଇଥିଲା ।

(ତା୦୫.୦୬.୧୯୮୪ରିଖ)

□□□

# ଇଂଲିଶ୍ ରାଇଟର

ଦିନେ ଦିଲ୍ଲୀରେ ଜଣେ ଓଡ଼ିଆ ପାର୍ଲାମେଣ୍ଟ ସଭ୍ୟଙ୍କ ଘରେ କେତେ ଜଣ ବସି କଥାବାର୍ତ୍ତା କରୁଥିଲେ । ଜଣେ ଓଡ଼ିଆ ଭଦ୍ରଲୋକ ଦରଜା ଘଣ୍ଟି ଚିପି ଘରେ ପଶିଲେ ।

ଘରେ ପଶିବା ମାତ୍ରେ ପଚାରିଲେ 'ଟେଲିଫୋନଟା କେଉଁଠି ଅଛି ?' ସ୍ୱରରେ ତାଙ୍କର ପ୍ରଶ୍ନବାଚୀଠାରୁ ନିର୍ଦ୍ଦେଶ ଅଧିକ ।

ପାର୍ଲାମେଣ୍ଟ ସଭ୍ୟ ସେତେବେଳେ ଘରେ ନଥିଲେ । ଯଦିଓ ସମସ୍ତେ ଏ ପ୍ରକାର ହାବଭାବ ଦେଖି କିଛି ଆଶ୍ଚର୍ଯ୍ୟ ହେଲେ, ଗୃହକର୍ତ୍ତାଙ୍କର କେହି ଖାସ ଲୋକ ହେବେ ଭାବି କେହି ବିଶେଷ ଦ୍ୱିରୁକ୍ତି ନକରି ଟେଲିଫୋନଟି ଯେଉଁ ସ୍ଥାନରେ ଅଛି ସେଠାକୁ ବାଟ କଢ଼େଇ ଦେଲେ ।

ଟେଲିଫୋନରେ ତାଲା ପଡ଼ିଥିବା ଦେଖି ଭଦ୍ରଲୋକ କହିଲେ 'ତାଲାଟା ଖୋଲ' । ତାଲା ମଧ୍ୟ ଖୋଲା ହେଲା । ଭଦ୍ରଲୋକ ପୁଣି ସେମିତି ଗଳାରେ ପଚାରିଲେ .... 'ବାବୁଙ୍କ ଟେଲିଫୋନ୍ ନମ୍ବରଟା କେତେ ?'

କିଏ ଜଣେ କହିଲେ - ଆଜ୍ଞା ଡ଼ାଇରେକ୍ଟୋରୀ ସେଠାରେ ଅଛି ।

ଭଦ୍ରଲୋକ ଜଣକୁ ଲକ୍ଷ୍ୟ କରି କହିଲେ 'ଦେଖିଲ ନମ୍ବରଟା ।'

ଏହାପରେ କେହି ଜଣେ ପଚାରିଲେ 'ଆଜ୍ଞା ଆପଣ କିଏ ?'

ଭଦ୍ରଲୋକ ଭ୍ରୂକୁଞ୍ଚ କରି ଅନାଇଲେ । ଟିକେ ଦମ ନେଇ କହିଲେ 'ମୁଁ... ମୁଁ.... ନରେନ୍ଦ୍ର ମହାନ୍ତି ଇଂଲିଶ୍ ରାଇଟର ।'

'ଏଇଆ ଆପଣଙ୍କର ପରିଚୟ ?'

'ହଁ ମୁଁ ନରେନ୍ଦ୍ର ମହାନ୍ତି - ଇଂଲିଶ ରାଇଟର ।'

ସେକ୍ସପିଅର ମଧ୍ୟ ଇଂଲିଶ୍ ରାଇଟର ଥିଲେ ।

'କ'ଣ ଆପଣ କହୁଛନ୍ତି ?' ପ୍ରଶ୍ନ କଲେ ଇଂଲିଶ ରାଇଟର ।

'ମୋର କହିବାର କଥା ଯେ ଆପଣଙ୍କ ଇଂଲିଶ ଲେଖା ତ ଆମେ ଦେଖିବାକୁ ସୁଯୋଗ ପାଇନାହୁ । କିନ୍ତୁ ଆପଣଙ୍କ ଇଂଲିଶ ବ୍ୟବହାର ଆମକୁ ଠିକ ଲାଗୁନାହିଁ ।' 'ମାନେ...' ପଚାରିଲେ ଇଂଲିଶ ରାଇଟର ।

'ମାନେ ଆପଣ ଇଂଲିଶ ରାଇଟର, ଇଂଲିଶ ମ୍ୟାନରସ ଆପଣ ଜାଣନ୍ତି ନି । ଭାରତୀୟ ଭଦ୍ରତା ବି ଆପଣଙ୍କର ନାହିଁ । ଆପଣ ଅଭଦ୍ରତାର ନମୁନା ।'

ଇଂଲିଶ ରାଇଟର ରାଗିବାକୁ ଉପକ୍ରମ କରୁଥିଲେ । ତିନିଚାରିଜଣ ତାଙ୍କୁ ବାଧା ଦେଇ କହିଲେ 'ଆପଣ ଆଉ ଅଭଦ୍ରତାର ସୀମା ନଡ଼େଇଁ ଏଠାରୁ ଯାଆନ୍ତୁ । ଟେଲିଫୋନ ଆଉ କେଉଁଠୁ କରିନେବେ ।'

ଇଂଲିଶ ରାଇଟର ତମ୍ ତମ୍ ହୋଇ ସେଠାରୁ ବାହାରିଗଲେ ।

(ତା୨୬.୧୨.୧୯୮୦ରିଖ)

□□□



Digitized by srujanika@gmail.com

# ଆଇନର ତୁଚ୍ଛତା

ଆଇନର ଶାସନ କଥା ଅନେକ ଲୋକ କଥା ଛଳରେ କହନ୍ତି । ରାଜନୈତିକ ନେତାମାନେ ବିବୃତିରେ ଓ ସାଧାରଣ ସଭାମାନଙ୍କରେ ଆଇନର ଶାସନ କଥା ଉପରେ ଜୋର ଦିଅନ୍ତି । କିନ୍ତୁ ଅନେକ ଛୋଟ ଛୋଟ କଥାରେ ମଧ୍ୟ ଏ ଦେଶର ଜ୍ଞାନୀଜନ ଯିଏ ଆଇନ ପଢ଼ିଛନ୍ତି, ଆଇନ ସମ୍ପର୍କରେ ସାମାନ୍ୟ ଏବଂ ଯଥେଷ୍ଟ ସଚେତନ ସେମାନେ ମଧ୍ୟ ବିନା ଦ୍ୱିଧାରେ ଆଇନର ଲଙ୍ଘନ କରିବାକୁ ଛାଡ଼ନ୍ତି ନାହିଁ ।

ଏବେ ଲୋକେ ରାସ୍ତା ଆଇନ ମାନିବାକୁ ପ୍ରସ୍ତୁତ ନୁହଁନ୍ତି । ଏ ଦେଶରେ ରାସ୍ତାରେ ଯେଉଁଠି ଇଛା ସେଇଠି ପରିସ୍ରା କରିବାକୁ ଟିକେ ମାତ୍ର କୁଣ୍ଠାବୋଧ କରନ୍ତି ନାହିଁ । ରାସ୍ତା କଡ଼ରେ ଦିନରେ ମଧ୍ୟ ଝାଡ଼ା ବସିବାର ଦୃଶ୍ୟ ଅତି ସାଧାରଣ କଥା । କଟକ ପରି ସହରରେ ଦିନରେ ଯେକୌଣସି ସମୟରେ ପିଲାମାନେ ରାସ୍ତାକଡ଼ରେ ଖୋଲା ନର୍ଦ୍ଦମା କାନ୍ଥି ଉପରେ ବସି ମଳତ୍ୟାଗ କରୁଥିବାର ଦୃଶ୍ୟ ଯେ କୌଣସି ଅଞ୍ଚଳରେ ଦେଖିବାକୁ ମିଳିବ । ସେଥିପାଇଁ ପିଲାର ବାପା ମା କିମ୍ବା ଆମେ ଯିଏ ଦେଖୁଛୁ କାହାରି ମନରେ ଗ୍ଲାନି ନାହିଁ । ତାହା ଏକ ଗୃହୀତ ବ୍ୟବସ୍ଥା । ରାସ୍ତା ମଝିରେ ସାଇକେଲ କି ସ୍କୁଟର ରଖି କଥାବାର୍ତ୍ତା ହେବାବେଳେ ଟିକେ ରାସ୍ତା କଡ଼କୁ ହଟିବାକୁ ଲୋକେ ପସନ୍ଦ କରୁନାହାଁନ୍ତି । ଏପରିକି ରାସ୍ତା ମଝିରେ ବିପରିତ ଦିଗକୁ ଯାଉଥିବା ଦୁଇଟି ଗାଡ଼ିର ଡ୍ରାଇଭର କିମ୍ବା ଯାତ୍ରୀ ଗାଡ଼ି ଛିଡ଼ା କରି ମିନିଟ୍ ମିନିଟ୍ ଧରି କଥାବାର୍ତ୍ତା ହେବାରେ ଆପତ୍ତି ନାହିଁ ।

ଏବେ ବମ୍ବେ, କଲିକତା ଓ ଦିଲ୍ଲୀ ପରି ନାଲି ସବୁଜ ଓ କମଳା ରଙ୍ଗର ସ୍ୱୟଂଚାଳିତ ଆଲୁଅ ଜଳି ଯାନବାହନ ନିୟନ୍ତ୍ରଣ କରିବାର ବ୍ୟବସ୍ଥା ଆମ ରାଜଧାନୀରେ ହୋଇଛି । ଅବଶ୍ୟ କିଏ ଟ୍ରାଫିକ୍ ଲାଇଟ ବ୍ୟବସ୍ଥା କରିଛି ସରକାର କିମ୍ବା ମ୍ୟୁନିସିପାଲିଟି ଜାଣିଥିବେ । କାରଣ ନାଲି ଆଲୁଅ ବହୁତ ସମୟ ଧରି ଜଳୁଛି ଏବଂ ସବୁଜ ଆଲୁଅ ଖୁବ୍‌ଶୀଘ୍ର ଲିଭିଯାଉଛି । ଏହି ସମୟ ସୀମା ବଦଳିବା ଅବଶ୍ୟ ଦରକାର ।

କିନ୍ତୁ ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ନାଲି ଆଲୁଅ ଜଳୁଥିବା ବେଳେ ମଧ୍ୟ ଅନେକ ଗାଡ଼ି ତାହା ନମାନି ଚାଲି ଯାଉଛନ୍ତି ଅନ୍ୟପଟରୁ ଗାଡ଼ି ଆସୁଥାଉ ବା ନଥାଉ । ଅବଶ୍ୟ ଏଠାରେ କଲିକତା ଓ ଦିଲ୍ଲୀ ଆଦି ସହର ପରି ଏତେ ବେଶୀ ଯାନବାହନ ନାହିଁ । ଗାଡ଼ିରେ ଯାଉଥିବା ଲୋକେ ତ ଆଉ ସାଧାରଣ ଇତର ଲୋକ ନୁହଁନ୍ତି ଯେଉଁମାନେ ଟ୍ରାଫିକ୍ ନିୟମ ଜାଣନ୍ତି ନାହିଁ । ବିଶେଷ କରି ପୋଲିସ ନଥିଲା ବେଳେ ଗାଡ଼ି ଚାଳକ ଏବଂ ସେଥିରେ ବସିଥିବା ବାବୁମାନେ ମିନିଟିଏ ବି ଅପେକ୍ଷା କରିବାକୁ ନାରାଜ ଏବଂ ସେମାନେ ଆଇନ ଲଂଘନ କରୁଛନ୍ତି ଏକଥା ମୁଣ୍ଡକୁ ଜୁଟୁନି । ଯେଉଁ ଦେଶରେ ସାଧାରଣ ଟ୍ରାଫିକ୍ ଆଇନ ପ୍ରତି ଏତେ ତାଚ୍ଛଲ୍ୟ ସେଠାରେ ଅନ୍ୟ ଆଇନ ପ୍ରତି ମଧ୍ୟ ତଦ୍ରୂପ ମନୋଭାବ । ଆଇନରେ ଦଣ୍ଡିତ ହେବାର ପୁରା ଆଶଙ୍କା ନଥିଲେ ଅନେକ ସ୍ୱତଃ ପ୍ରବୃତ୍ତ ହୋଇ ଆଇନ ଅନୁସାରେ ଚଳିବା କଥା ଭାବି ପାରୁନାହାନ୍ତି । ତେଣୁ ସମାଜର ସମୁଦାୟିକ ଜୀବନରେ ବିଶୃଙ୍ଖଳା ଓ ଅରାଜକତା ଦେଖା ଦେଇଛି ।

(ତା୧୯.୦୬.୧୯୮୪ରିଖ)





Digitized by srujanika@gmail.com

# ପଦକ ଯୋଗାଡରେ...

ସେଦିନ ଖୁବ୍ ସକାଳୁ ନୂଆଦିଲ୍ଲୀ ଷ୍ଟେସନକୁ ମୁଁ ଗାଡି ଧରିବାକୁ ଟ୍ୟାକ୍ସିରେ ଆସୁଥିଲି । ଦେଶର ରାଜଧାନୀ ନୂଆଦିଲ୍ଲୀ ଏବେ ଯଥେଷ୍ଟ ପୁରୁଣା ହେଲେ ବି ଦେଶର ଅନ୍ୟ ସହରମାନଙ୍କ ତୁଳନାରେ ଏହାର କେତେକ ଅଞ୍ଚଳ ସବୁଦିନେ ନୂଆ, ସତେଜ ଏବଂ ତାଜା ଦେଖାଯାଏ । ସେ ରାସ୍ତାର ନିଖୁଣ ଚଟାଣ, ଚଉଡା ଓ ଦୁଇକଡରେ ଚିରସବୁଜ ଘାସ ଓ ଛୋଟବଡ ଗଛଗୁଡିକ ଯୌବନର ପ୍ରଥମ ପାହାଚର ରୂପ ପରି ଦିଶେ ।

ଟ୍ୟାକ୍ସି ଦଉଡିଛି । ସୂର୍ଯ୍ୟ କିରଣ ଆସିବାକୁ ବହୁତ ଡେରି ଅଛି । ମୋ ସାମ୍ନାରୁ ଓ ମୋ କଡରୁ ଲୋକମାନଙ୍କର ଯାତାୟାତ ବଡ ମଜାର କଥା । ସେମାନେ ସାଧାରଣ ଯାତ୍ରୀ ନୁହନ୍ତି । ଯୁବକମାନେ ଦଉଡୁଛନ୍ତି । ସେ ଦଉଡରୁ ଜଣାପଡୁଛି ଯେ ସେମାନେ ଖେଳୱାଡ । ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବା ପାଇଁ ଅଭ୍ୟାସ ରଖିଛନ୍ତି । କିଏ ସ୍କୁଲ, କିଏ କଲେଜ, କିଏ ବିଶ୍ୱବିଦ୍ୟାଳୟ, କିଏ ରାଜ୍ୟ , କିଏ ଦେଶ ଓ କିଏ ହୁଏତ ଆନ୍ତର୍ଜାତିକ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବେ । ପଦକ ପାଇବେ କିମ୍ବା ଏକସରତ ନିଷ୍ଫଳ ହୋଇପାରେ । କିନ୍ତୁ ଆନ୍ତରିକତାର ସହିତ ଉଦ୍ୟମ କରୁଛନ୍ତି । ମୁଁ ଭାବିଲି ଏତକ କସରତ ମୁଣ୍ଡରେ ଲଗେଇଲେ ଏମାନେ ବଡ ଚାକିରୀ ହୁଏତ ପାଇପାରନ୍ତେ । କେତେ ଲୋକ ଦିଲ୍ଲୀର ଶୀତତାପ ନିୟନ୍ତ୍ରିତ ଘରେ ଆରାମରେ ଶୋଇଥିବେ । ଏମାନେ କିନ୍ତୁ ରାସ୍ତାରେ ଏ ଦୈହିକ ଉଦ୍ୟମରେ ବ୍ୟସ୍ତ ।

ମଧ୍ୟମବୟସ୍କ ପୁରୁଷ ହାଫ୍ ପ୍ୟାଣ୍ଟ, ସ୍ପୋର୍ଟସ ଗେଞ୍ଜି ଓ କାନଭାସ ଜୋତା ମୋଜା ସହିତ କ୍ଷିପ୍ର ଗତିରେ ଚାଲିଛନ୍ତି । ବଡ ଆଇଏଏସ ଅଫିସର, ରାଷ୍ଟ୍ରାୟତ୍ତ ଉଦ୍ୟୋଗରେ ବଡ ଅଧିକାରୀ କିମ୍ବା ସଫଳ ବ୍ୟବସାୟୀ ହୋଇଥିବେ ପରା । ଡାଏବିଟିସ ରୋଗରେ ପୀଡିତ କିମ୍ବା ପେଟରେ ମେଦ ଜମିବା ଆରମ୍ଭ ହୋଇଛି । ଖାଲି ଔଷଧ ଖାଇଲେ ଭଲ ହେଉନାହିଁ । ଡାକ୍ତରଙ୍କ ପରାମର୍ଶ ଏକ୍ସରସାଇଜ । ମର୍ଣ୍ଣିଂ ୱାକ୍ ଚାଲିଛନ୍ତି ।

ବୟସ୍କ ପୁରୁଷ ସ୍ତ୍ରୀ ଚାଲିଛନ୍ତି । ଅବସର ଗ୍ରହଣ ପରେ ନିଜକୁ ସୁସ୍ଥ ରଖିବା ପାଇଁ ପ୍ରତ୍ୟୁଷରୁ ଚାଲିବାକୁ ହେବ । ଦାମ୍ପତ୍ୟ ଜୀବନର ଶେଷ ଭାଗରେ ଭଲବାସା, ମାୟା ବଢେ । ସୂର୍ଯ୍ୟୋଦୟ ପୂର୍ବର ସେ କଅଁଳ ସକାଳର ସାଦା ପାଦରେ ରାଜଧାନୀର ରାଜରାସ୍ତା ଉପରେ ମଧ ଏକ ଅପୂର୍ବ ଐକାନ୍ତିକତା ଥାଏ । ସେଥିପାଇଁ ସେମାନେ ଚାଲିଛନ୍ତି ।

ଜଣେ ମଧ୍ୟମବୟସ୍କ ପୁରୁଷ ଓ ତାଙ୍କ ସହିତ ଫ୍ରକ୍ ପିନ୍ଧା ଚଉଦ ପନ୍ଦର ବର୍ଷର ଝିଅଟିଏ ମିଶି ମଧ୍ୟମ ଗତିରେ ଦଉଡୁଛନ୍ତି । ବାପ ଝିଅ ହେବେ ବୋଧେ । କାହିଁକି ଦଉଡୁଛନ୍ତି କହିହେବନି । ସ୍ୱାସ୍ଥ୍ୟରକ୍ଷା ଉଦ୍ଦେଶ୍ୟ ଛଡା ଆଉ କିଛି ହୋଇପାରେନା । କିନ୍ତୁ କି ଯେ ଯୋଡି । ବାପ ଝିଅ ଦଉଡୁଛନ୍ତି । ମାଆ କୁଆଡେ ଗଲେ ? ଗୃହିଣୀ ବୋଧହୁଏ ଘରକାମରେ ବ୍ୟସ୍ତ । ସେଥିରେ ତାଙ୍କର ଯେତେ କସରତ ଦଉଡିବା ଦରକାର ନାହିଁ କିମ୍ବା ଅଭିଜାତସମ୍ପନ୍ନ ମହିଳା ରାସ୍ତାରେ ଦଉଡିବାକୁ ପସନ୍ଦ କରୁନାହାନ୍ତି । ବୁଢ଼ାବୁଡୀ ବୟସରେ ହୁଏତ ଏକାଠି ଚାଲିବେ ।



Digitized by srujanika@gmail.com

ପୁଣି ଜଣେ ଭାରତୀୟ ଜଳ ବାହିନୀର ଲୋକ ସେହି 'ନାଭି'-ଧଳା ପୋଷାକ ପିନ୍ଧି ଧଳା ଫରଫର ଜୋତା ପିନ୍ଧି ଦଉଡୁଛନ୍ତି । ୟାଙ୍କର ତ ନିୟମିତ ଡ୍ରିଲ ଇତ୍ୟାଦି ହେଉଥିବା କଥା । ଏପୁଣି କାହିଁକି ସକାଳୁ ଦଉଡୁଛନ୍ତି ? ଜଳବାହିନୀ ଖେଳକୁଦରେ ଭାଗ ନେବାର ଥିବ ପରା ।

ଷ୍ଟେସନ ପହଞ୍ଚିବା ବାଟରେ ଏହିସବୁ ଦଉଡୁଥିବା ଲୋକଙ୍କୁ ଦେଖି ମନରେ ଆସୁଥିଲା ସାରା ଦେଶଟା ଯଦି ଏମିତି ଆଗକୁ କ୍ଷିପ୍ର ଗତିରେ ଦଉଡୁଥାନ୍ତା ତେବେ କେତେ ଭଲ ହୁଅନ୍ତା । କିନ୍ତୁ ସବୁ କ୍ଷେତ୍ରରେ ଆମର ଆରାମ, ବିଶ୍ରାମ, ମନୋରଞ୍ଜନ ଏବଂ ଅବସରଲୋଡା । କାମ ନିର୍ଦ୍ଧାରିତ ସମୟ ମଧ୍ୟରେ ନକରି ବଳକା ରଖିଲେ 'ଓଭର ଟାଇମ୍' ମଜୁରୀ ମିଳିବ । ବେଶୀ ଛୁଟି ଦରକାର । ଏବେ କେନ୍ଦ୍ର ସରକାର କର୍ମଚାରୀ ସପ୍ତାହରେ ପୁରା ଦୁଇଦିନ ଛୁଟି ପାଇଲେଣି । ଅନ୍ୟମାନେ ମଧ୍ୟ ସେହି ସୁବିଧା ଦାବି କଲେଣି । ସଂକ୍ରାମକ ରୋଗ ପରି ଏହି ଅଧିକା ଛୁଟି-ରୋଗ ବ୍ୟାପିବ । ସମସ୍ତେ ଛୁଟି ପ୍ରତିଯୋଗିତାରେ ପଦକ ପାଇବାର ଯୋଗାଡରେ ।

(ତା୧୧.୦୬.୧୯୮୪ରିଖ)





Digitized by srujanika@gmail.com

# ଅଳସ ଭାଙ୍ଗିବାକୁ ଔଷଧ

ବସଷ୍ଟାଣ୍ଡରେ ଶୀଘ୍ର ପହଞ୍ଚିବା ବୋଲି ମଜବୁତ ରିକ୍ସାବାଲାଟିଏ ଧରିଲୁ । ରାଜଧାନୀର ଉଠାଣି ଗଡାଣି ରାସ୍ତାରେ ଟାଣୁଆ ରିକ୍ସାବାଲା ନହେଲେ ଗନ୍ତବ୍ୟସ୍ଥଳରେ ପହଞ୍ଚିବାକୁ ଡେରି ହୁଏ । ରିକ୍ସାବାଲା କିନ୍ତୁ ମୂଳରୁ ଏତେ ପେଲିହେଲା ଯେ, ତା'ର ବାହୁର ମାଂସପେଶୀ ଛାତି, ପିଠିର ଟାଣ ନିଦା ମାଂସ ଓ ଗୋଡର ବଳିଲା ବଳିଲା ମୋଟା ପେଣ୍ଡା ସହିତ ରିକ୍ସାର ବେଗର କୌଣସି ସମନ୍ୱୟ ନଥିଲା ।

କିଛିବାଟ ଗଲାପରେ ରାସ୍ତା କଡରେ ରିକ୍ସା ଅଟକାଇ 'ଆସୁଛି' କହି ରାସ୍ତାର ଅପର ପାର୍ଶ୍ୱକୁ ଗଲା ରିକ୍ସାବାଲା । କାଠ କ୍ୟାବିନରେ କାଠ ଢାଙ୍କି ହୋଇ ଚାଲିଛି ଅଫିମ ଗଞ୍ଜେଇ ଦୋକାନ । ସରକାରଙ୍କ ସ୍ୱୀକୃତିପ୍ରାପ୍ତ ହୋଇଥିବ ନିଶ୍ଚୟ । କାଗଜ ପୁଡିଆଟିଏ ଆଣି ରିକ୍ସାବାଲା ନିଜ ପିନ୍ଧା କାନିରେ ବାନ୍ଧି ଅଣ୍ଟାରେ ଗୋଞ୍ଜିଦେଲା ।

ପଚାରିଲି 'କ'ଣ ଅଫିମ କିରେ ?' ବହୁତ ସମୟ ପରେ ସେ ଉତ୍ତର ଦେଲା 'ହୁଁ' ।

'କେତେକର ଆଣିଲୁ ?'

'ଟଙ୍କାକର । ତିନିବକତ ହବ ।'

'ନିତି ଖାଉ ?'

'ହଁ । ଖଟଣିକୁ ଟାଳିବାକୁ ଟିକେ ଟେକିଦିଏ । ଅଳସ ଭାଙ୍ଗିଯାଏ ।'

'କେତେବର୍ଷ ହେଲା ଅଭ୍ୟାସ କଲୁଣି ?'

'ନାଇଁ, ଏଇ ତିନି ଚାରିବର୍ଷ ହେଲା ଖାଉଛି । ଅଭ୍ୟାସ ନାହିଁ । ଏଇ କ୍ୟାପିଟାଲରେ ଖାଏ । ଗାଁକୁ ଗଲେ ଦରକାର ପଡେନା ।'

'ଗାଁକୁ ଗଲେ କାହିଁକି ଦରକାର ପଡେନା ?'

'ପରଥମେ ଟିକେ କମ୍‌କରି ଖାଏ । ତିନିଚାରିଦିନରେ ପୁରା ଛାଡିଯାଏ ।'

'ଗାଁ କୋଉଠି ?'

'ନୟାଗଡ ଆଜ୍ଞା, ଗଡକୁ ତିନି କିଲୋମିଟର ହବ ।'

ରିକ୍ସା ଧୀର ମନ୍ଥର ଗତିରେ ଚାଲିଥିଲା । ଏତେ ମଜବୁତ୍ ମର୍ଦ୍ଦଟାକୁ ଟାଣିହୋଇ ପ୍ୟାଡ୍‌ଲ ଉପରେ ଠିଆ ହୋଇପଡିବାକୁ ହେଉଥିଲା ।

ପଚାରିଲି, 'କେମିତି ଖାଉ ?' କ'ଣ ଖାଇକରି ପାଣି ପିଇଦେଉ ?'

'ନାଇଁ ଖାଇକରି ଟିକେ ଚା ଖାଇଦିଏ ।'

' ନଖାଇଲେ ତ ଅସୁବିଧା ହେଉଥିବ ?'

'ଅସୁବିଧା ଆଉ କ'ଣ ? କେତେ ଟିକେ ଖାଉଚି ଯେ ।'

'ଡାକ୍ତର ସାର୍ଟିଫିକେଟ ଆଣି କାର୍ଡ କରେଇଛୁ ? ଅଫିମ କିଣିବାକୁ ତ କାର୍ଡ ଦରକାର ।'

'ଯିଏ ଆଜ୍ଞା ଅତି ନିଶାଖୋର ହୋଇଯିବ ତା'ର ସିନା କାର୍ଡ ଦରକାର । ମୁଁ କେତେ ଖାଉଛି ଯେ ଡାକ୍ତର ପାଖକୁ ଯିବି ?'



Digitized by srujanika@gmail.com

'ଏ ଅଫିମ ଖାଇବା କାହିଁକି ଅଭ୍ୟାସ କଲୁ ? ସାଙ୍ଗ ଦୋଷରେ ପଡି କରିଥିବୁ ନିଶ୍ଚୟ ।'

ବାବୁ । ସମସ୍ତଙ୍କର କିଛି ଅଭ୍ୟାସ ଅଛି । ମଦ ଅଭ୍ୟାସ କଲେ ବହୁତ ଖର୍ଚ୍ଚ । ମୁଁ ପାରିବିନି । ତମର କ'ଣ କିଛି ଅଭ୍ୟାସ ନଥିବ ?'

ମୁଁ କହିଲି 'ନାଇଁ, ମୋର କିଛି ଅଭ୍ୟାସ ନାହିଁ ।'

'ଏ କେମିତିଆ କଥା ? ପାନ, ବିଡି, ସିଗାରେଟ୍, ଚା, ବୋତଲ ଆଉ ମାଇକିନିଆ ତ କେତେ ବଡ ବଡ ବାବୁ ଅଭ୍ୟାସରେ ପକେଇଛନ୍ତି । ଗଞ୍ଜେଇ ଗୁଲି ବି ଟାଣୁଛନ୍ତି । ନିହାତି ତମେ ସିନେମା, ଥିଏଟର କି ଟିଭି ତ ଦେଖୁଥିବ । ଆମେ ଗରୀବ ଲୋକ । ତମପରି ବଡ ଲୋକିଆ ଅଭ୍ୟାସ ତ କରି ପାରିବୁନି ।'

ମୁଁ ବହୁସମୟ ନୀରବ ରହି ଲମ୍ବା 'ହୁଁ ଟାଏ ପକେଇଲି । ବସଷ୍ଟାଣ୍ଡ ଆସିଯାଇଥିଲା । ପଇସା ଦେଲି । ରିକ୍ସାବାଲା ପାଖ ଚା ଦୋକାନକୁ ମୁହାଁଇଲା ।

(ତା୦୪.୦୬.୧୯୮୫ରିଖ)





Digitized by srujanika@gmail.com

# ବଟବୃକ୍ଷ, ଷଣ୍ଢ ଓ କାର୍ପେଟ

କଟକ ସହରର ସାହି ବସ୍ତି କାରବାର ବଡ ଅଜବ । ସେ ଦିନ ଦିଜଣ ହିନ୍ଦୁସ୍ଥାନୀ(ହିନ୍ଦିଭାଷା କହୁଥିଲାବାଲା' ଦୁଇଟା ରିକ୍‌ସାରେ କାର୍ପେଟ ଲଦି ଗୋଟାଏ ସାହିର ଗଳି ଦେଇ 'କାର୍ପେଟ ନେବ' ବୋଲି ହିନ୍ଦିରେ ଡାକ ମାରିମାରି ଯାଉଥିଲେ । ସାହିର ଷଣ୍ଢଟା ଚାଲୁ ଚାଲୁ ଟିକେ ମୁଣ୍ଡ ହଲାଇ ଦେଲା ବେଳକୁ ଗୋଟାଏ ରିକ୍‌ସାରେ ବସିଥିବା ଜଣେ ଷଣ୍ଢ ଆଡକୁ ତା' ଗୋଡଟା ହଲାଇ ଦେଲା ।

ସାହି ବରଗଛ ମୂଳ ଚଉତରା ଉପରେ ସବୁବେଳେ ପଞ୍ଚାଏ ତାସ ଆଉ ପଶା ଖେଳୁଥାନ୍ତି । ନଇଲେ ଗପ ଲଗାଇଥାନ୍ତି । ସେମାନଙ୍କ ଭିତରୁ ଜଣେ କିଏ କାର୍ପେଟବାଲା ଷଣ୍ଢ ଆଡକୁ ଗୋଡ ଦେଖାଇ ଦେବା କଥା ଦେଖିଦେଲା । କହିଲା 'ଏ ଶଳା ଆମ ଷଣ୍ଢ ଠେଇଁ ଗୋଡ ଲଗେଇ ଦେଲା ।'

ଏକାବେଳକେ ପାଞ୍ଚସାତ ଜଣ ଚିହାର କରି ଉଠିଲେ 'କିଏ କିଏ ?'

'ଏଇ କାର୍ପେଟବାଲା ପରା' ଏକସ୍ୱରରେ ଅନେକ ସାହିବାଲା ଡାକ ମାରିଲେ 'ଏ କାର୍ପେଟ ବାଲା ଶୁଣ୍ଶୁଣ ।'

କାର୍ପେଟବାଲାଙ୍କ ମଧ୍ୟରୁ ଅପେକ୍ଷାକୃତ କମ୍ ବୟସ୍କ ଲୋକଟି ଏଡାକ ଶୁଣି ପଛକୁ ଫେରିଲା । ବୁଢାଜଣକ ଆଗରେ ରିକ୍‌ସା ଅଟକାଇ ଅପେକ୍ଷା କଲା । ସାହିବାଲାଏ କହିଲେ, ଆବେ ତୁ ଏକଲା କ'ଣ ଆସିଛୁ । ସେ ବୁଢାକୁ ଡାକ ।

ବୁଢା ଆସିଲା । ତାକୁ ପଚରାଗଲା 'ତୁ ଆମ ଷଣ୍ଢକୁ ଗୋଇଠା କାହିଁକି ମାରିଲୁ ।' ସେ ବିଚରା ବୁଝି ନପାରି ହିନ୍ଦିରେ ପଚାରିଲା ଯେ କ'ଣ କହୁଛ ବାବୁ ମୁଁ ବୁଝି ପାରୁନି ।

'ଆବେ ବୁଝି ପାରୁନୁ କ'ଣ ? ଆମ ଷଣ୍ଢମେ କ୍ୟୁଁ ଗୋଡ ଲଗାୟା ?'

ବୁଢା ହିନ୍ଦିରେ କହିଲା 'ନାହିଁ ବାବୁଜୀ, ସେ ଷଣ୍ଢଟା ମୁଣ୍ଡ ହଲାଇ ଦେଲା ମୋ ଆଡକୁ । ଛାଁ ଛାଁ ମୋ ଗୋଡଟା ହଲିଗଲା । ମୁଁ ତାକୁ ତ ଗୋଡ ଲଗାଇନି ।'

'ଗୋଡ ଲଗେଇନି କ'ଣ କହୁଛୁ ତୁ ଗୋଡ ଲଗା ଅଲବତ । ସାହିକା ବଟକୁ ପାଞ୍ଚ ରୂପିଆ ଦେ । ନଇଲେ ତୋ ଚନ୍ଦି ଉଡ ଯାଏଗା'(ବଟମାନେ ବଟବୃକ୍ଷ ତଳେ ଥିବା ଠାକୁରଙ୍କୁ) ।

ବୁଢା ବିଚରା ଅନୁନୟ ବିନୟ ହୋଇ କହିଲା 'ବାବୁ ମୁଁ ସକାଳୁ କିଛି ବିକ୍ରିବଟା କରିନି । ପଇସା କୋଉଠୁ ଦେବି ?' ବୁଢା ଆସି ଆଉ ଜଣେ ବୁଢା ଲୋକଙ୍କ ହାତ ଧରି ମାଫି ମାଗିଲା ।

'ଶଳା ମାଫି କ'ଣ ମାଗୁଛି ? ଠାକୁର ଘର ଷଣ୍ଢ । ଷଣ୍ଢଠେଇଁ ଗୋଡ ଦେଇ ଖସି ଯିବାକୁ ବସିଛି । ଷଣ୍ଢଟା ସେତେବେଳକୁ ଟିକେ ଦୂରରେ ଗୋଟାଏ ଚାଳ ଘରର କୁଟା ଓଲାରୁଛି । ଜଣେ ସ୍ତ୍ରୀ ଲୋକ ଠେଙ୍ଗାଟାଏ ଧରି 'ଏ ସବାଖିଆ ଚାଳ ରଖିଦେଲାନି କହି ଷଣ୍ଢ ପିଠିରେ ଭଲ ଦିଚାରି ପାହାର ଦେଲା ।

'ହଉ ହଉ, ପାଞ୍ଚ ରୂପିଆ କାଢ । ପାଞ୍ଚଠୋ ରୂପିଆ ନେହିଁ ଦେଗା ତୋ କାର୍ପେଟ ଜବତ କରେଗା' ଜଣେ ଟାଣୁଆ ଟୋକା ନିର୍ଦ୍ଦେଶ ଦେଲା । ହିନ୍ଦୁସ୍ଥାନୀ ବୁଢା ତା ସାଙ୍ଗ ଟୋକାକୁ ଅନେଇ ଗୋଟିଏ ଦି ଟଙ୍କିଆ ନୋଟ୍ ଅଣ୍ଟାରୁ କାଢି କହିଲା 'ବାବୁ ଏତିକିରେ ମାଫ କରିଦିଅ ।'

ଜଣେ ଭଦ୍ରଲୋକ ସେବାଟେ ରିକ୍‌ସାରେ ଯାଉଥିଲେ । କହିଲେ ହଉ 'ବାହାରିଆ ଲୋକଟାତ । ଛାଡିଦିଅ ତା'କୁ । ବହୁତ ଶୋଧା ଗାଳିତ ଶୁଣିଲାଣି ।'

ଜଣେ ଯୁବକ ତାସ ବାଡଉ ବାଡଉ କହିଲେ 'ବାବୁ ଆଚ୍ଛା କଥା କହୁଛ । ଦିଟଙ୍କାରେ କ'ଣ



Digitized by srujanika@gmail.com

ହବ । ଆମେ ଏତେ ଗୁଡା ଲୋକ । ଖାଲି ଚା ଗୋଟା ଗୋଟା ଖାଇଲେ ତ ତିନି ଚାରି ଟଙ୍କା ଚାଲିଯିବ ।'

ବୁଢା ହିନ୍ଦୁସ୍ଥାନୀ ପାଞ୍ଚଟି ଟଙ୍କା ଥୋଇ ମୁଣ୍ଡିଆ ମାରିକରି ପଛକୁ ଅନାଇ ଅନାଇ ରିକ୍ସାରେ ଚଢିଲା ।

(ତା୨୩.୧୦.୧୯୮୫ରିଖ)

□□□

# ଆମର ବେସୁରା ଜୀବନ

ସେଦିନ ଭୁବନେଶ୍ବରରୁ କଟକ ଯାଉଥିଲି ବସରେ । କୁଆଖାଇ ପୋଲ ଉପରେ କେତେଯାଗା ମଣିଷ ଚାଲିବା ପାଇଁ ଥିବା ବାଟରେ ଠାଏ ଠାଏ ଧାନ ଶୁଖୁଥିଲା । ଗାଁ ମାଇପେ ମାନେ ସେ ଧାନକୁ ଗୋଡରେ ପଖାଳୁଥିଲେ ।

ବେଶ କେଇଦିନ ବର୍ଷା ହେଲା ପରେ ସେଦିନ ସୂର୍ଯ୍ୟ ବାହାରିଥିଲେ, ଯଦିଓ ହାଲକା ବାଦଲ ଯୋଗୁଁ କାଥାଳିଆ ପାଗ ହୋଇଥାଏ । ଏମିତି ଯଦି ଆପଣ କଟକରୁ ପାରାଦୀପ ଯିବେ କିମ୍ୱା ଜଗତପୁରରୁ କେନ୍ଦ୍ରାପଡା ଯିବେ କିମ୍ୱା ପାରାଦୀପରୁ ଏକସପ୍ରେସୱେରେ ଚଣ୍ଡୀଖୋଲ ଆସିବେ ଦେଖିବେ ବହୁ ଯାଗାରେ ଲୋକ ଧାନ ଉଁଷେଇ କରି ସଡକ ଉପରେ ଶୁଖାଇଛନ୍ତି । ଗାଈ, ବଳଦ, ଛେଳି, ପାରା, କାଉ ଇତ୍ୟାଦିଙ୍କ ଦାଉ ଯେତେ ପ୍ରବଳ ହେଲେ ମଧ ଏହାଛଡା ଅନ୍ୟ ଉପାୟ ନାହିଁ । ଗାଁର ଘରଗୁଡାକ ସେଠାରୁ ବହୁତ ଦୂର । ତଥାପି ଲୋକେ ସେଇଠାରେ ଧାନ ଶୁଖେଇବା ଛଡା ଅନ୍ୟଗତି ନାହିଁ ।

ଧାନ ଶୁଖେଇବା ପାଇଁ ଗାଁରେ ଆଉ ଟାଣୁଆ ଚଟାଣ ନାହିଁ । ମାଟିରେ ଶୁଖେଇଲେ ଧାନରେ ମାଟି ଗୋଡି ମିଶି ଚାଉଳଯାଏ ରହିବ ।

ମୋ ପିଲା ଦିନେ ମୁଁ ଦେଖିଛି ଆମ ଗାଁ ନଈରେ ସିମେଣ୍ଟ ପୋଲ ନଥିଲା ଏବଂ ପକାସଡକ ଆମ ଗାଁ ଠାରୁ ନିହାତି କମ୍‌ରେ ସାତ କି ଆଠ ମାଇଲରେ ଥିଲା । ତେଣୁ ଲୋକେ ଦୁଆରେ କିମ୍ୱା ଦାଣ୍ଡରେ ମାଟି ଗୋବର ଦେଇ ଦି ଚାରି ପରସ୍ତ ଲିପୁଥିଲେ । ଶୁଖିଲାପରେ ଧାନ ଶୁଖାଉଥିଲେ । ତା'ଠାରୁ ଭଲ ଉପାୟ ଥିଲା ହେଁସ କିମ୍ୱା ଖଜୁରୀ ଚଟେଇ ପାରିଦେଇ ତାହା ଉପରେ ଧାନ ଚାଉଳ ଶୁଖାଉ ଥିଲେ ।

ଏବେ ଗାଁରେ ବହୁ ହେଁସ ବୁଣିବା ଲୋକେ ମରିହଜି ଗଲେଣି । ଖଜୁରି ଚଟାଇ ବି ସେମାନେ ବୁଣୁଥିଲେ । ସେମାନେ କ୍ରମେ ସେ ଧନ୍ଦା ଛାଡିଦେଲେଣି । ଖଜୁରୀ ଗଛରେ ମଦହାଣ୍ଡି ବସୁଥିଲା ବୋଲି ସେ ଗଛ ମଣିଷ ବାଳ କାଟିଲା ପରି ଖିଅର ହେଉଥିଲା । ସଫେଇ ପରେ ଖଜୁରୀ ପତ୍ର ଯାହା ବାହାରୁଥିଲା ସେଥିରେ ବିଚଣା, ତାଲା, ଟୋପଲି ଓ ଚଟାଇ ପ୍ରଭୃତି ବୁଣାଯାଉଥିଲା ।

ଏବେକାର ସହର ପିଲାଙ୍କୁ ହେଁସ କିମ୍ୱା ଟୋପଲି କହିଲେ ସେ ବୁଝିପାରିବେନି । ମଫସଲ ପିଲାମାନେ ମଧ ସେ ସବୁ ଆଉ ଗାଁରେ ଦେଖିବାକୁ ନପାଇ ଜାଣି ନାହାନ୍ତି ସେସବୁ କ'ଣ ।

ଦେଶରେ ପ୍ରଗତି ହେଉଛି । ସାହାବମାନଙ୍କର ପଣ୍ଟିମା କଥା ଆମେ ଧରିପାରୁନୁ । ଆମର ପୁରୁଣା କଥା ହଜିଗଲାଣି । କୋଉ କିସମର ଲୋକ ଆମେ ହେଉଛୁ କେଜାଣି ।

(ତା୧୮.୦୭.୧୯୮୭ରିଖ)

□□□



Digitized by srujanika@gmail.com

# ମନ୍ତ୍ରୀଙ୍କ ଠେଇଁ ଟିକେ ଘସି ହେବ।

ପ୍ରଜାପାଳନର ଢାଞ୍ଚା ଅନୁସାରେ ରାଜାର କଦର ବଢେ କିମ୍ବା କମେ । ଆଜିକାଲି ଗଣତନ୍ତ୍ରରେ ରାଜାଙ୍କୁ ଲୋପ କରିମନ୍ତ୍ରୀ ସେ ଶାସନରେ ବସିଲେ । ରାଜା ପୁରୁଷାନୁକ୍ରମିକ ରୀତିରେ ଗାଦୀରେ ବସୁଥିଲେ । ମନ୍ତ୍ରୀ ଲୋକମତ ଅନୁସାରେ ଗାଦୀରେ ବସିବା କଥା । ରାଜାକୁ ଲୋକେ ତଡି ଦେଇପାରୁ ନଥିଲେ । ମନ୍ତ୍ରୀକୁ ତଡି ଦେଇପାରିବେ ବୋଲି ବିଶ୍ୱାସ ଥାଏ । ବାସ୍ତବରେ କ'ଣ ହେଉଛି ସେକଥା ଅଲଗା ।

ସାଧାରଣ ଲୋକଙ୍କ କଥା ବୁଝିସାରିଲେ ମନ୍ତ୍ରୀ ନିଜ କଥା ଭାବିବା କଥା । କିନ୍ତୁ ବିଂଶ ଶତାବ୍ଦୀର ଶେଷ ଭାଗରେ ଏକବିଂଶ ଶତାବ୍ଦୀକୁ ଜନ୍ମ ଦେବାପାଇଁ ଗୋଡ ଟେକି ରହିଥିବା ମନ୍ତ୍ରୀମାନଙ୍କ କଥା ନିଆରା । ମନ୍ତ୍ରୀ ଆଗ ନିଜ ବ୍ୟବସ୍ଥା କରିସାରିଲେ ତ ଲୋକଙ୍କ କଥା କିମ୍ବା ସମାଜର ସାମୂହିକ କଥା ଭାବିବାକୁ ସମୟ ମିଳିବ ! ଏବେ ପୁଣି ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ ଲୋକଙ୍କ ମରଜୀ ଜଗି ଚଳିପାରିଲେତ ଠାବ ରହିବ । ମଝିରେ ପୁଣି କେତେ ପାଖଲୋକ ଯଥା ମୁଖ୍ୟମନ୍ତ୍ରୀଙ୍କ ପାଖ ଲୋକ ତ ପ୍ରଧାନମନ୍ତ୍ରୀଙ୍କ କାନ ପର୍ଯ୍ୟନ୍ତ ପହଞ୍ଚିପାରୁଥିବା ଲୋକଙ୍କୁ ମଧ୍ୟ ସନ୍ତୁଷ୍ଟ କରିବାକୁ ହେବ । ଏମାନଙ୍କ ମଧ୍ୟରେ ପୁଣି ସବୁଠାରୁ ଶକ୍ତିଶାଳୀ ହେଲେ 'ମ୍ୟାଡାମ୍'ମାନେ । ମନ୍ତ୍ରୀପଦର ପୁଣି କ'ଣ ଠିକଣା ଅଛି । ଏବେ ଅଛି, ଆଉ ଜୀବନରେ ମିଳିନପାରେ । ତେଣୁ ଯାହା ମିଳୁଛି, ଯେମିତି-ମିଳୁଛି ବାନ୍ଧ ହୋ ।

ଏସବୁ କଥାର ଅବତାରଣା କରିବା ପଛରେ ଛୋଟିଆ କଥାଟାଏ ରହିଛି । କାଳ୍ପନିକ ହେଲେ ବି ମିଛ ନୁହେଁ ।

ଏହି ରାଜଧାନୀର କଥା । ରାଜଧାନୀର କୌଣସି ଏକ ଅଞ୍ଚଳରେ ଜଣେ ମନ୍ତ୍ରୀଙ୍କୁ ଖଣ୍ଡିଏ ଜମି ମିଳିଲା । ଦୁଇପଟରେ ରାସ୍ତା ରହିଥିବା ଜମି । ମନ୍ତ୍ରୀଙ୍କର ପୁରୁଣା ଟାଉନ ଅଞ୍ଚଳରେ ଏକ ବଡ ଯାଗା ଅଛି । ପ୍ରାୟ ଅଧ ଏକର ହେବ ଯାଗାରେ ମନ୍ତ୍ରୀ ହେବା ପୂର୍ବରୁ ଉପରେ ଛପର, କି ଟାଇଲ କି ଆଜବେଷ୍ଟସ ପଡିଥିବା ଘରଟିଏ ଥିଲା । ମନ୍ତ୍ରୀ ହେବା ପରେ ସେଠାରେ ପାଖାପାଖି ଅଢେଇ ହଜାର ବର୍ଗଫୁଟ ବିଶିଷ୍ଟ ଏକ ନୂଆ ଚକଚକିଆ କୋଠା ତିଆରି ହୋଇ ସାରି ଭଡାବାଲା ଖୋଜା ଯାଉଛି । ପୁରୁଣା ଭୁବନେଶ୍ୱର ହୋଇଥିବାରୁ ଟିକେ କମ୍ ଭଡାରେ ଯିବ । ତେବେ ମାସକୁ ଅନ୍ତତ ଚାରିହଜାର ନହେଲେ ଭଡା ଦିଆଯିବନି । ଘରୋଇ ସଂସ୍ଥା ନହେଲେ କୌଣସି ସରକାରୀ ବିଭାଗ କିମ୍ବା ସରକାରୀ ଉଦ୍ୟୋଗତ ମୋଟା ଭଡାରେ ନେବାକୁ ଠେଲାପେଲା ହେବେ ।

ଏବେ ତାଙ୍କନ୍ତୁ ନିକଟରେ ମିଳିଥିବା ଅନ୍ୟ ନୂଆଯାଗାକୁ । ଦୁଇପଟରେ ରାସ୍ତାଥିଲେ ବି ମୁଖ୍ୟ ରାସ୍ତାକୁ ଟିକେ ବୁଲିକରି ଆସିବାକୁ ହୋଇଥାନ୍ତା, ଯାହା ଅନ୍ୟମାନଙ୍କ ପାଇଁ ପ୍ରଜୁଯ୍ୟ । କିନ୍ତୁ ମନ୍ତ୍ରୀ ଘରୁ ବାହାରିଲେ ତାଙ୍କ ପାଇଁ ଦୁଇଟା ନୁହେଁ ତିନିଟା ରାସ୍ତା ଖୋଲା ମିଳିବା ଦରକାର । ଜବରଦସ୍ତି ସରକାରୀ ଖର୍ଚ୍ଚରେ କେତେବର୍ଷ ହେଲା ଲଗାଯାଇ ଶ୍ରୀ ବୃଦ୍ଧି କରୁଥିବା ମୁଖ୍ୟରାସ୍ତାର କଡରେ ବଢିଥିବା ଗଛଗୁଡିକୁ



Digitized by srujanika@gmail.com

ଅବିଚାରିତ କାଟି ଦିଆଗଲା । କାରଣ ଗଛ ନ କାଟିଲେ ମୁଖ୍ୟ ରାସ୍ତାକୁ ଆସିବାକୁ ଯେଉଁ କଲଭର୍ଟଟି ନିର୍ମାଣ କରିବାକୁ ହେବ ତାହା ସମ୍ଭବ ନୁହେଁ । ରାସ୍ତା କଡରେ ପାଣି ଯିବା ପାଇଁ ନାଳ ମଧ ତିଆରି ପ୍ରାୟ ସରିଲାଣି । କିନ୍ତୁ ସେ ନଳା ଅନ୍ୟମାନଙ୍କ ପାଇଁ ଭବିଷ୍ୟତରେ ହେବାକୁଥିବା ନଳାର ପଥରୋଧ କରୁଛି । କଲଭର୍ଟ ତିଆରି ପ୍ରାୟ ସରିଲାଣି । ମନ୍ତ୍ରୀଙ୍କର ପାଚେରୀ ତିଆରି ସରି କେବଳ ଆଉଟ ହାଉସର ଛାତ ପଡିଛି । କୋଠା ତିଆରି ଆରମ୍ଭ ହେବ । ତା'ପୂର୍ବରୁ ଏସବୁ ବ୍ୟବସ୍ଥା ।

ପାଖରେ ଆଉ ଦୁଇଜଣ ମନ୍ତ୍ରୀଙ୍କର କୋଠା ତିଆରି ହେଉଛି । ତିଆରି ନ ସରିବା ପୂର୍ବରୁ ବିଜୁଳିବତୀ ଲାଗିଲାଣି । ଅନ୍ୟମାନଙ୍କୁ ଦିଆଯାଇଥିବା ପ୍ଲଟଗୁଡିକ ପାଇଁ ରାସ୍ତା, ପାଣି, ଭୂତଳ ନର୍ଦ୍ଦମା(ସିୱରେଜ) ଆଦିର କୌଣସି ବ୍ୟବସ୍ଥା ଏ ପର୍ଯ୍ୟନ୍ତ ହୋଇପାରିନି । ମନ୍ତ୍ରୀମାନଙ୍କ ପାଖକୁ ଲାଗି ପାଇଥିବା ପ୍ଲଟଗୁଡିକ ପାଇଁ ସୌଭାଗ୍ୟକ୍ରମେ ଆପଣା ଆପେ ବ୍ୟବସ୍ଥା ହୋଇଯାଉଛି ।

ଏଇଥିପାଇଁ ଏବେ ମନ୍ତ୍ରୀଙ୍କ ପାଖରେ ଟିକେ ଘସି ହୋଇଯିବା ପାଇଁ ସାଧାରଣ(ନା ଅସାଧାରଣ ? ଲୋକଙ୍କର ଏତେ ଭିଡ ପରା !

(ତା୨୩.୧୧.୧୯୮୫ରିଖ)





Digitized by srujanika@gmail.com

# ଜଗନ୍ନାଥ ଭରସା

ଓଡ଼ିଶାବାସୀଙ୍କ ପାଇଁ ଦିଲ୍ଲୀର ଦୂରତ୍ୱ କମାଇବା ପାଇଁ 'ନୀଳାଚଳ ଏକ୍ସପ୍ରେସ'ର ଜନ୍ମ ଦ୍ୱାରା ଆପାତତଃ ଦୂରତ୍ୱ କମିଯାଇଛି ସତ୍ୟ କିନ୍ତୁ ଯାତ୍ରାର ସମୟ କମିଯିବାର ଗ୍ୟାରେଣ୍ଟି କିଛି ନାହିଁ । କାରଣ ଭୁବନେଶ୍ୱରରୁ ଦିଲ୍ଲୀ ପହଞ୍ଚିବାରେ ନୀଳାଚଳ ଏକ୍ସପ୍ରେସ ଅଧଘଣ୍ଟା ଠାରୁ ଆରମ୍ଭ କରି ଏଗାର ଘଣ୍ଟା ପର୍ଯ୍ୟନ୍ତ ବିଳମ୍ବିତ ହେବାର ନଜିର ରହିଛି ।

ବିଳମ୍ବରେ ପହଞ୍ଚିବାର ଆଶଙ୍କା ସତ୍ତ୍ୱେ ଜଣେ ବନ୍ଧୁ ସାଙ୍ଗ ହେବାରୁ ମୁଁ ଥରେ 'ନୀଳାଚଳ'ରେ ଦିଲ୍ଲୀ ଯାଉଥିଲି । ଭୁବନେଶ୍ୱରରୁ ଚିହ୍ନା ପରିଚୟଥିବା ଜଣେ ଭଦ୍ରବ୍ୟକ୍ତି ଉଠିଲେ । ତାଙ୍କ କଥାରେ ସବୁବେଳେ 'ଜଗନ୍ନାଥ ଭରସା' 'ଜଗନ୍ନାଥଙ୍କର ଯାହା ଇଚ୍ଛା' 'ଜଗନ୍ନାଥ ସବୁ ବୁଝିବେ' ର ଉଲ୍ଲେଖଥିଲା । ଓଡିଶା ଭୁଇଁରେ ଜଗନ୍ନାଥଙ୍କ ଉପରେ ଏତେ ବିଶ୍ୱାସ ରଖିଥିବା ଜଣେ ଲୋକଙ୍କୁ ମୁଁ ବହୁତ ଦିନ ପରେ ଭେଟିଲି । ନୀଳାଚଳ ଏକ୍ସପ୍ରେସ ନାମର ସାର୍ଥକତା ଉପଲବ୍ଧି କଲାଭଳି ମନେ ହେଲା ।

ବାଟରେ କେଉଁଠି ଗୋଟାଏ ଷ୍ଟେସନରେ ଗାଡିଟା ଆବଶ୍ୟକତାଠାରୁ ବେଶୀ ସମୟ ଅଟକିବାରୁ ସମସ୍ତେ ପଚରା ପଚରି ହେଲେ । କିଏ କହିଲା 'ଗୋଟାଏ ଡବାରେ ନିଆଁ ଲାଗିଯାଇଛି ।' ଆଉ ଜଣେ କହିଲେ 'ଗାଡିଟା ବହୁତ ଡେରି ହେବ । ଆଜି ରାତିଟା ଦିଲ୍ଲୀ ଷ୍ଟେସନରେ କାଟିବାକୁ ହେବ ।' କିଛି ସମୟ ପରେ ଖାଦ୍ୟ ଯୋଗାଉଥିବା ବିଅରର ଜଣେ କହିଲା 'ନିଆଁ ଲାଗିଛି ଗୋଟାଏ ଡବାରେ ଯେ ହେଲେ ଗାଡି ବୋଧେ ଛାଡିଦେବ ଜଲଦି ।' ଆମର ମତଲବ ଯେ ନିଆଁ ଲାଗୁ ପଛେ ସେ ନିଆଁ ଲଗା ଡବା ସହିତ ଗାଡିଟା ଚାଲୁଥାଉ । ନଚେତ ସେ ଡବାଟିକୁ ଏଠାରେ କାଟିଦେଇ ଆମକୁ ନେଇ ଗାଡିଟା ଚାଲୁ ଦିଲ୍ଲୀକୁ । କିନ୍ତୁ କେହି ଗାଡିରୁ ଓହ୍ଲାଇ ଯାଇ କ'ଣ ହୋଇଛି ତଦାରଖ କରିବାକୁ ବାହାରୁ ନାହାଁନ୍ତି । ଓଡ଼ିଆଜାତି କର୍ମଠ ବୋଲି ଆମର ନାଁ ଅଛି କିନା ।

ଦିଲ୍ଲୀ ପହଞ୍ଚିବାକୁ ଆଉ ତିନି ଘଣ୍ଟା ଅଛି । ସନ୍ଧ୍ୟା ହୋଇଗଲାଣି । ଆମ ଡବା ଭିତରେ ପୋଡ଼ା ଗନ୍ଧ ହେଲା । ଟିକେ ଧୂଆଁ ମଧ ଦେଖାଗଲା । ପୋଡ଼ା ଗନ୍ଧଟା ଟିକେ ଉଗ୍ରହେଲା ଆସ୍ତେ ଆସ୍ତେ । ହଠାତ୍ ଆମେ ସମସ୍ତେ ସେ ଗନ୍ଧଟାକୁ ଅନୁଭବ କଲାରୁ ଏକ ସମୟରେ କେତେଜଣ ପାଟି କରି ଉଠିଲେ କ'ଣ ପୋଡ଼ିଯାଉଛି ? ଟାଟାରୁ ଉଠିଥିବା ଜଣେ ଯୁବକ କହି ଉଠିଲେ' 'ଆମ ଡବାରେ ନିଆଁ ଲାଗିଗଲାଣି ।'

ସମସ୍ତେ ଚଞ୍ଚଳ ହୋଇ ଉଠିଲେ । ନିଆଁ କୋଉଁଠି ଲାଗିଛି ଦେଖ । ତତ୍ପରତାର ସହିତ ପ୍ରତି ସିଟ୍‌ର ତଳେ ଛାତ ପାଖରେ ସବୁ ଅନ୍ଦିକନ୍ଦିରେ ନାକ ପୂରାଇ ଲୋକେ ଖୋଜିବାକୁ ଆରମ୍ଭ କରିଦେଲେ । ମୁଁ ଦେଖିଲି ଏତେ ଲୋକ ନିଆଁର ଅନୁସନ୍ଧାନ କରୁଛନ୍ତି । ମୁଁ ସେଥିରେ ଯୋଗ ଦେଇ କାହିଁକି ଲୋକାରଣ୍ୟ କରିବି । ମୋର କାମ ହେଲା ଭାବିବା ଯେ ନିଆଁ ହୁତୁହୁତୁ ହୋଇ ଜଳିବା ଆରମ୍ଭ କଲେ ଏ ଡବାର ଚାରିଟା ଦରଜା ବାଟେ ଶହେରୁ ଅଧିକ ଲୋକ ଯେତେବେଳେ ଜଳନ୍ତା ରେଳରୁ ଡେଇଁବା ଆରମ୍ଭ କରିବେ ଚେନ କିଏ ଟାଣିବ । ନିଆଁରେ ପୋଡିହୋଇ ମରିବା ଭଲ ନା ରେଳଗାଡିରୁ ଡେଇଁ ପଡି ବାହାରେ ମରିବା ଭଲ । ଗୋଟାଏ ଗରମ ମରଣ ଆରଟା ଏକଦମ ଥଣ୍ଡା । ମଣିଷ ମଲାପରେ ହିନ୍ଦୁ ହୋଇଥିଲେ ପୋଡାଯାଏ । ପୋଡିହୋଇମରିଲେ ବରଂ ଧର୍ମରକ୍ଷା ହେବ । ମୁଁ ଯେମିତି ହେଲେତ ହିନ୍ଦୁ ।



Digitized by srujanika@gmail.com

ହିନ୍ଦୁଙ୍କର ସବୁ ବିଶ୍ୱାସ ମୋର ନଥିଲେ କ'ଣ ହେଲା ?

ପୁଣି ଭାବୁଥିଲି ଏତେ ସହଜରେ ମରିବାଟାକୁ ଗ୍ରହଣ କରିନେବା ଠିକ ହେବନାହିଁ । ଗାଡିଟିକୁ ଅଟକାଇ ଚେନ ଟାଣି ସମସ୍ତଙ୍କୁ ନିଆଁ ଜଳିବା ପୂର୍ବରୁ ଓହ୍ଲାଇ ଦେବାପାଇଁ ନେତୃତ୍ୱ ଦରକାର । କିଛି ଜିନିଷ ବି ସାଙ୍ଗରେ ତଳକୁ ନେଇଯିବା ଦରକାର । ମୋର ଯୋଡାଏ ସୁଟକେଶ । କେଉଁଟିକୁ ନେବି ଚିନ୍ତା କରୁଥିଲି । ବଡ ସୁଟ କେଶରେ ଗରମ ସୁଟ ଦିଟା ରହିଛି । ଦାମ ତ ବେଶୀ ତେଣେ ଦିଲ୍ଲୀ ଶୀତରେ ଦରକାର । କିନ୍ତୁ ଛୋଟ ସୁଟକେଶଟାରେ ବହୁ ଦରକାରୀ କାଗଜପତ୍ର ଓ ଟଙ୍କା ରହିଛି । ପୁଣି ବେଡିଂଟି ରହିଛି । ଏତେ ଦାମ ଦେଇ ଏବେ କିଣିଥିବା କମ୍ବଳଟା ସେଥିରେ ରହିଛି । ପୁଣି ଭାବିଲି । ସେମିତି ଚାଲିଯିବି । ପ୍ରାଣବଞ୍ଚିଲେ ତସବୁ । ମୋ ପରି ଅନ୍ୟ ମାନେ ବି ଭାବୁଥିବେ ।

ହଠାତ୍ ଦେଖିଲି ଗୋଳମାଳ ବନ୍ଦ ହୋଇ ଆସିଲା । ପୋଡା ଗନ୍ଧଟା ବି ସେତେବେଳେକୁ କମି ଆସିଲାଣି । ଆମ ପାଖରୁ ଯେଉଁମାନେ ନିଆଁ ଖୋଜା କାମରେ ଯାଇଥିଲେ ନିଜ ଯାଗାକୁ ଫେରି ଆସିଲେ । 'କ'ଣହେଲା ?' ପଚାରିଲାରୁ ଦିଜଣ ଏକାସାଙ୍ଗରେ କହିଲେ ନାହିଁ । 'ଜଣେ ସାଧୁ ଗଞ୍ଜେଇ ଟାଣୁଛନ୍ତି ।' ଆଉ ଜଣେ କହିଲେ 'ସେ ଗଞ୍ଜେଇ ଲଗେଇଲା ବେଳକୁ କନା ପୋଡିଲା । କନା ଆଉ ଗଞ୍ଜେଇ ଜଳି ଏମିତି ଧୂଆଁ ଆଉ ଗନ୍ଧ ହେଲା ।

ମୁଁ ଭାବିଲି ଆଜିକାଲି କଲେଜ ପିଲାଏ ଗଞ୍ଜେଇ ଟାଣୁଛନ୍ତି ବୋଲି ଆମେ ତାଙ୍କୁ ଅସାଧୁ ବୋଲି ବିଚାରୁଛୁ । ସାଧୁମାନେ ଗଞ୍ଜେଇ ଟାଣିଲେ ତ କେହି ଖରାପ ବୋଲିକହୁନାହିଁ ।

ସାଥୀ ଭଦ୍ରଲୋକ କହିଉଠିଲେ 'ଜଗନ୍ନାଥ ଭରସା ।'

(ତା୧୩.୦୨.୧୯୮୪ରିଖ)





Digitized by srujanika@gmail.com

# ମାଇଚିଆ ନାଗରିକ

ରାଜଧାନୀ(ନୂଆ) ଭୁବନେଶ୍ୱର ଓ ପୁରୁଣା ରାଜଧାନୀ କଟକ ଯାଆଁଳା ସହର । ଅନ୍ୟ କୌଣସି ଉନ୍ନତ ରାଜ୍ୟ ହୋଇଥିଲେ ଏହା ଏବେ ଗୋଟିଏ ବଡ ସହରରେ ପରିଣତ ହୋଇଥାନ୍ତା । ପଛୁଆ ରାଜ୍ୟ ପଛରେ ପଡିଛି । କହିବାର ତାତ୍ପର୍ଯ୍ୟ ହେଲା ଯେ ଏହି ଯାଆଁଳା ସହର ଦୁଇଟି ମଧରେ ଏକ ଅଭିନ୍ନ ସମ୍ପର୍କର ସୂତ୍ର ରହିଛି । ସେଥିପାଇଁ ଯାତାୟତର ଭଲ ବନ୍ଦୋବସ୍ତ ରହିବା ଦରକାର । କିନ୍ତୁ ତାହା ନାହିଁ ।

ଦିନେ ବସରେ ଯାଉଥିଲି ଭୁବନେଶ୍ୱରରୁ କଟକ । ବସଷ୍ଟାଣ୍ଡ ଭିତରୁ ବସ ବାହାରିଲା । କଣ୍ଡକ୍ଟର କ୍ଲିନର ପାଟି କରୁଥାନ୍ତି 'ସିଧା କଟକ ଯିବ । ବାଟ ପେସେଞ୍ଜର ଉଠନ୍ତୁନାହିଁ । ଅର୍ଥାତ୍ ଭୁବନେଶ୍ୱରରୁ କଟକ ମଧରେ କୌଣସି ସ୍ଥାନରେ ଓହ୍ଲାଇବାର ଲୋକଙ୍କ ପାଇଁ କିଛି ବ୍ୟବସ୍ଥା ନାହିଁ । ଦି ତିନିଜଣ ଯାତ୍ରୀ ଫୁଲନଖରା ଯିବାକୁ ବସିଥବଲେ । ତାଙ୍କୁ ବାଧ କରି ତଳକୁ ଓହ୍ଲାଇ ଦିଆଗଲା ।

ବସଷ୍ଟାଣ୍ଡରୁ ବସ ବାହିରିଲା । ମୁଁ ବସର ପଛଆଡକୁ ବସିଥିଲି । ସେହିଆଡୁ ବସମାନଙ୍କର ଟିକେଟ୍ ହୁଏ । ଜଣେ ଆସି ପଇସା ମାଗିଲେ । କଣ୍ଡକ୍ଟର ହୋଇଥିବେ ନିଶ୍ଚୟ । ପଇସା ନେଲେ । କିନ୍ତୁ ଟିକେଟ ନାମରେ ଯେଉଁ ଆଙ୍ଗୁଳିଏ ଚଉଡାର ଓ ଦିଆଙ୍ଗୁଳି ଲମ୍ବାର କାଗଜ ଖଣ୍ଡିଏ ଦିଆଯାଏ ତାହା ମିଳିଲାନି । ଜଣେ ଯାତ୍ରୀ ପଚାରିଲେ ଟିକେଟ କାହିଁ ? କଣ୍ଡକ୍ଟର ଉତ୍ତର ଦେଲେ ଏଇଟା ପ୍ରାଇଭେଟ ଗାଡି । ଏଥିରେ ଟିକେଟ୍ ମିଳିବନି ।'

ପ୍ରାଇଭେଟ ଗାଡିଗୁଡିକତ ବ୍ୟାନର ସ୍କିମ୍(କେହି କେହି ତାକୁ ବିରକ୍ତିରେ ବାନ୍ଦର ସ୍କିମ୍ ବୋଲି କହୁଛନ୍ତି) ଅଧିନରେ ସରକାରଙ୍କ କର୍ତ୍ତୃତ୍ୱରେ ଚାଲୁଛି । ପୁଣି ପ୍ରାଇଭେଟ ଗାଡି କୋଉଠୁ ଆସିଲା ? ଏବଂ ପ୍ରାଇଭେଟ ବସରେ ଟିକେଟ ଦିଆଯାଏ ନାହିଁ, ଏକଥା କୋଉଠୁ ଉଠିଲା ? ଯାତ୍ରୀଜଣକ ପ୍ରତିବାଦ କଲେ । ଟିକେଟ ନଦେଲେ ମୁଁ ପଇସା ଦେବିନି ବୋଲି କହିବାରୁ କଣ୍ଡକ୍ଟରବାବୁ କହିଲେ ତାହେଲେ ଓହ୍ଲେଇ ଯାଅ । ଯାତ୍ରୀ କହିଲେ ଓହ୍ଲେଇବିନି । କଣ୍ଡକ୍ଟର ଡ୍ରାଇଭରକୁ କହିଲେ ଗାଡିରୋକ । ଗାଡି ରହିଲା । ଅମାନିଆ ଯାତ୍ରୀ ନ ଓହ୍ଲାଇଲେ ଗାଡି ଯିବନି । ଗାଡି ସେତେବେଳକୁ ଆସି ପହଞ୍ଚି ଥାଏ ଶହୀଦନଗର ରୂପାଲୀ ଛକ ପାଖରେ । ତର୍କ ବିତର୍କ ଲାଗିଲା । ପ୍ରତିବାଦ କରୁଥିବା ଯାତ୍ରୀଙ୍କ ପକ୍ଷ ନେଇ କେହି କହିଲେନି । ବରଂ ଜଣେ ଯାତ୍ରୀ କହିଲେ- 'ଆରେ ବାବୁ ଆମର ଦିଟା ଟଙ୍କା ଦେଇ ଦେଲେ ଗଲା । ସେ ଟିକେଟରୁ କ'ଣ ମିଳିବ ଆମକୁ ? କଟକରେ ଜଲଦି ପହଞ୍ଚିବା କଥା । ମିଛଟାରେ ଡେରି ହେଉଛି ।'

କଣ୍ଡକ୍ଟର ଡୁଆ ପେଲିଲା 'ଆଜ୍ଞା ମୁଁ ଟିକେଟ କୋଉଠି ଆଣିବି ? ମାଲିକତ ବ୍ୟାନର ସ୍କିମରେ ଗାଡି ପୂରେଇଲେନି । ପ୍ରାଇଭେଟରେ ଚାଲୁଛି ଗାଡି ।'

ଆଉ ଜଣେ ଯାତ୍ରୀ କହିଲେ ପ୍ରତିବାଦୀ ଯାତ୍ରୀଙ୍କୁ 'ଆଜ୍ଞା ଡେରି ହେଉଛି । ଦେଇ ଦିଅନ୍ତୁ ଦି'ଟା ଟଙ୍କା । ସମସ୍ତେ ହରକତ ହେଉଛନ୍ତି । ଦେଶଟାତ ଏମିତି ଚାଲିଛି ।'

ଆଉ ଦି ତିନିଜଣ ଯାତ୍ରୀ ଏକା ସାଙ୍ଗରେ କହି ଉଠିଲେ ଆଜ୍ଞା ଆପଣଙ୍କର ଟିକେଟ ଦରକାର ତ ଓହ୍ଲାଇଯାଚ ପଛ ଗାଡିରେ ଆସନ୍ତୁ । ଆମର ଡେରି ହେଉଛି । କଣ୍ଡକ୍ଟର କହିଲା ହଁ ବାବୁ ଓହ୍ଲାଇ ଯାଅ । ପଛରେ ବ୍ୟାନର ବସ ଆସୁଛି । ସେଥିରେ ଯିବ ।

ବାବୁଙ୍କୁ ଶହୀଦନଗରରୁ କେଉଁ ବସ ଉଠେଇବ ଯେ ସେ ଓହ୍ଲାଇ ଯିବେ ? ମୋଡିମାଡି ହୋଇ



Digitized by srujanika@gmail.com

ପ୍ରତିବାଦୀ [illegible] ବାବୁ [illegible] କଣ୍ଡକ୍ଟରଙ୍କ ହାତରୁ [illegible] । [illegible]
ଚାଲିଲା । ୮୦ ଜଣରୁ ବେଶୀ ଯାତ୍ରୀ ବେଆଇନ ଭାବରେ ଚାଲୁଥିବା ସେ କଣ୍ଡକ୍ଟର ଆଗରେ ମୁଣ୍ଡ ନୁଆଇଲେ । ପ୍ରତିବାଦୀ ଯାତ୍ରୀଙ୍କ ମୁହଁ କଳାକାଠ ପଡିଯାଇଥିଲା କଟକରେ ଓହ୍ଲାଇଲା ବେଳକୁ ।

(ତା୧୧.୦୮.୧୯୮୪ରିଖ)



# ନିଜ ଢୋଲ ନିଜେ ପିଟ

ନିଜକୁ ନିଜେ ନ ଚିହ୍ନାଇଲେ ଆଉ କେହି ତୁମକୁ ଚିହ୍ନାଇବେନି କିମ୍ବା ଚିହ୍ନିବେନି ଏକଥା ଏକାନ୍ତ ସତ୍ୟ ହେଲାଣି ।

ଆମେ ଖବର କାଗଜ ଚଳାଇଲା ବାଲା ପ୍ରତିଦିନ ନିଜକୁ ଚିହ୍ନେଇବା ଲୋକଙ୍କ ସମ୍ପର୍କରେ ଆସୁଛୁ । ପ୍ରତିଦିନ ନିଜକୁ ଚିହ୍ନେଇବା ଲୋକଙ୍କର ବିବୃତି ଓ ଭାଷଣ ଛାପିବା ପାଇଁ ଏହି ଲୋକମାନଙ୍କର ନିଜ ଦସ୍ତଖତରେର ଗଦା ଗଦା ଲେଖା ଆସୁଛି । ଯାହାକି 'ସମ୍ବାଦ' ଆକାରରେ ଛାପିବା ପାଇଁ ପୁଣି ଲିଖିତ କିମ୍ବା ମୌଖିକ ଅନୁରୋଧ ତା' ସାଙ୍ଗରେ ଗୁନ୍ଥା ହୋଇଆସୁଛି । ଯଥାଶୀଘ୍ର ତାହା ଛପା ନହେଲେ ପୁଣି ଟେଲିଫୋନ ଆସିବ ତାହା ଛାପିବା ପାଇଁ ।

ସେ ସବୁ ଲେଖା ଦେଖିଲେ ହସ ଲାଗିବ । ସବୁ ନମୁନାତ ଏଠାରେ କହିହେବନି । ତଥାପି ନିଜକୁ ଚିହ୍ନାଇବାର କେତେକ ନମୂନା ନିମ୍ନରେ ଉଲ୍ଲେଖ କରାଯାଇପାରେ ।

ପୂର୍ବତନ ମନ୍ତ୍ରୀ ତଥା ଲୋକଦଳ ନେତା, ଚାନ୍ଦବାଲି ଯୁବ କଂଗ୍ରେସ(ଇ)ର ସହକାରୀ ସମ୍ପାଦକ, ପୂର୍ବତନ ରାଷ୍ଟ୍ରମନ୍ତ୍ରୀ ତଥା ଜନତା ଦଳ ନେତା, ନିଖିଳ ଉତ୍କଳ ଅମିନ ମହାସଂଘର ସାଧାରଣ ସମ୍ପାଦକ, ନିଖିଳ ଭାରତ ବୁଣାକାର ସହଯୋଗ ସମିତି କର୍ମଚାରୀ ସଂଘର ଓଡ଼ିଶା ଶାଖା ବଲାଙ୍ଗୀର ଜିଲ୍ଲାର କାର୍ଯ୍ୟକାରୀ ସଭାପତି, ଅବିଭକ୍ତ କଂଗ୍ରେସର ପୂର୍ବତନ କଟକ ଜିଲ୍ଲା କମିଟିର ପୂର୍ବତନ ସାଧାରଣ ସମ୍ପାଦକ ତଥା ନିଖିଳ ଉତ୍କଳ ଦିବ୍ୟଜୀବନ ସଂଘର ସଙ୍ଗଠନ ସମ୍ପାଦକ, ନିଖିଳ ଓଡ଼ିଶା ଅଣଗେଜେଟେଡ କର୍ମଚାରୀ ସମନ୍ୱୟ ସମିତିର ମୁଖପାତ୍ର ଶ୍ରୀ ଅମୁକ ମହାପାତ୍ର, ବକ୍‌ସି ଜଗବନ୍ଧୁ କଲେଜର ପୂର୍ବତନ ଦିବାଧାୟୀ ସଂଘର ପୂର୍ବତନ ସମ୍ପାଦକ ତଥା ଯୁବ କଂଗ୍ରେସ ନେତା, ଯୁବନେତା ଅମୁକ ଦାସ, ବାଲେଶ୍ୱର ଜିଲ୍ଲାର ଛାତ୍ରନେତା ଇତ୍ୟାଦି ସ୍ୱୟଂନାମିତ ଉପାଧିଯୁକ୍ତ ବହୁ ବିବୃତି ସର୍ବସ୍ୱ କର୍ମହୀନ ସମ୍ବାଦ ନାମଧାରୀ ଲେଖା ପ୍ରତିଦିନ ଆସେ ।

ଏହାସବୁ ସ୍ୱୟଂକ୍ରିୟ ଶସ୍ତା ବିଜ୍ଞାପନ । କିନ୍ତୁ ସବୁ ତଥାକଥିତ ବଡ ଲୋକ, ସଂଘର (ସମିତି, ସଂସଦ, ପରିଷଦ, କମିଟି ଇତ୍ୟାଦି) କର୍ମକର୍ତ୍ତାମାନେ ଏହି ବିଜ୍ଞାପନ ଛଡା ବଞ୍ଚିପାରୁନାହାନ୍ତି । କଣ ଗୋଟାଏ ନହେଲେ, ନିଜ ନାମର ଆଗରୁ କିମ୍ବା ପଛରେ କଣ ଗୋଟାଏ ଉପାଧି ନଲାଗିଲେ ସମାଜରେ ସ୍ୱୀକୃତି ମିଳୁନାହିଁ । ସେ କିଏ ମାନେ ସେ କଣ ବୋଲି ବୁଝାଉଛି । ନଚେତ୍ ସେ କାହାର କ'ଣ ଏକଥା କହି ଚିହ୍ନିବାକୁ କିମ୍ବା ଚିହ୍ନେଇବାକୁ ପଡୁଛି ।

(ତା୦୭.୦୩.୧୯୮୦ରିଖ)





Digitized by srujanika@gmail.com

# ଓପାସୀ ମଣିଷ ଓ ଉଦାସୀ ଠାକୁର

ଉପବାସ କଲେ ସ୍ୱାସ୍ଥ୍ୟଭଲ ରହେ ବୋଲି କେତେକ ଲୋକ ଓପାସ କରନ୍ତି । ଆଉ କେତେକ ଧର୍ମ ବିଶ୍ୱାସ ଓ ମାନସିକ ମନାସି ଏକାଦଶୀ, ଦ୍ୱାଦଶୀ, ଚତୁର୍ଦ୍ଦଶୀ, ଅମାବାସ୍ୟା, ସୋମବାର, ଗୁରୁବାର, ଶନିବାର, ରବିବାର ଏବଂ ଏବେ ସନ୍ତୋଷୀ ମା'ଙ୍କ ପାଇଁ ଶୁକ୍ରବାର ଉପବାସ କରୁଛନ୍ତି । କିନ୍ତୁ ପୁରା ଚବିଶ ଘଣ୍ଟା କିମ୍ବା ଛତିଶଘଣ୍ଟା ଉପବାସ କରୁଥିବା ଲୋକେ ପ୍ରାୟ ନାହାଁନ୍ତି ।

ଉପବାସ କରିବା ଲୋକେ ଅନ୍ତତଃ ବଖତେ ଖାଆନ୍ତି । କେତେକ ବିଭିନ୍ନ ବାଟରେ ଗୋଟିଏ ବଡ ଭୋଜନ ସହିତ ଆଉ ଗୋଟିଏ ଦୁଇଟି ଛୋଟ ଭୋଜନ ଏବଂ ଭଲ ପାନୀୟ ଗ୍ରହଣ କରନ୍ତି । କିଏ ଅରୁଆ ଭାତ ଓ ଘିଅରେ ଛୁଙ୍କା ଡାଲମା ଖାଆନ୍ତି ଓ କିଏ ଭଲ ଘିଅରେ ମୋଟା ପରଟା ଓ ପିଆଜ ରସୁଣ ନଦେଇ ବେଶ ମେଣ୍ଟାଏ ସନ୍ତୁଳା ଖାଆନ୍ତି । ଆଉ କେତେକ ଗୁଆ ଘିଅରେ ଛଣା ପୋଟଳ ଭଜା ଏବଂ ଗୋଲା ସନ୍ଦେଶ କିମ୍ବା କ୍ଷୀରସାଗର ସହିତ ଫଳ କିଛି ଖାଆନ୍ତି । ଏ ହେଲା ମୁଖ୍ୟ ଭୋଜନ । ଚା ଖାଇବା ଲୋକେ ଚା ଖାଉଥାନ୍ତି । ଭଲ ସରବତ ଓ ପଣା ଆଦି ମଧ ଚଳେ । ଅବଶ୍ୟ ସନ୍ତୋଷୀମା ଉପାସକ ମାନେ ମିଠା କିମ୍ବା ଖଟା ଖାଆନ୍ତି ନାହିଁ । ପ୍ରତିଦିନର ସାଧାରଣ ଖାଦ୍ୟ ସହିତ ତୁଳନା କଲେ କାଲୋରି ଦୃଷ୍ଟିରୁ ଉପାସ କଲା ଦିନ ଅଧିକାଂଶ ହୁଏତ ଅଧିକ କାଲୋରି ଖାଉଥିବେ ।

ମୋର ଜଣେ ବନ୍ଧୁ ଗୋଟିଏ କେନ୍ଦ୍ରୀୟ ରାଷ୍ଟ୍ରୀୟ ଉଦ୍ୟୋଗରେ କାମ କରନ୍ତି । ସେ ଜଣେ ଖାଇବା ପ୍ରିୟ ଲୋକ । କିନ୍ତୁ ଶନିବାର ଓପାସ କରନ୍ତି । ଦିନେ ଦୈବାତ ଶୁକ୍ରବାର ରାତିରେ ମୁଁ ହଠାତ୍ ଯାଇ ତାଙ୍କର ଅତିଥି ହେବାର ଦରକାର ପଡିଲା । ଶୁକ୍ରବାର ରାତିରେ ମୋ ପାଇଁ ସେଠାକାର ଗେଷ୍ଟ ହାଉସରୁ ମାଂସ ତରକାରୀ ଓ ଡାଲି ପ୍ରାୟ ଇତ୍ୟାଦି ଭଲ ଖାଦ୍ୟ ଟିଫିନ କ୍ୟାରିଅରରେ ମଗା ହୋଇ ଆସିଲା । କାରଣ ବନ୍ଧୁ ସେଠାରେ ଏକଲା ରହନ୍ତି । ସ୍ତ୍ରୀପିଲା ତାଙ୍କର ଅନ୍ୟତ୍ର ରହନ୍ତି । ଶନିବାର ସକାଳୁ ଅବଶ୍ୟ ଚା ଖିଆ ଘରେ ହେଲା । ବନ୍ଧୁ ଘୋଷଣା କଲେ ଆଜି ମୋର ଶନିବାର ଉପାସ । ମୋ ପାଇଁ କିଛି ଜଳଖିଆ ମଗାଇ ଆଣିବାର ବରାଦ ଦିଆଗଲା ଅର୍ଡରଲିକୁ ।

ଓପାସ ଦିନ ବନ୍ଧୁ ସେଠାରେ ଥିବା ଦୁଇଟି ମନ୍ଦିରରୁ ଗୋଟିକରେ ନିଜର ସାତ୍ତ୍ୱିକ ଖାଦ୍ୟ ବରାଦକରି ଆଣିଥାଆନ୍ତି । ଅର୍ଡରଲି ସେଦିନ ବଡ ମନ୍ଦିରକୁ ଯାଇ ଫେରିଆସି କହିଲେ ଯେ ସେଠାରେ ରୋଷେଇ ହେବନାହିଁ କାରଣ ଜାଳେଣୀ କାଠନାହିଁ । ପୁଣି ଅର୍ଡରଲିକୁ ଛୋଟ ମନ୍ଦିରକୁ ପଠାଗଲା । ସେଠାରୁ ଫେରି ସେ ଘୋଷଣା କଲା ଯେ, ସେଠାରେ ମଧ ଆଜି ଭୋଗ ବନ୍ଦ କାରଣ ପୂଜାରୀ ଗାଁକୁ ଯାଇଛି । କ'ଣ କରାଯାଏ ? ଦୁଇ ଦୁଇଟି ଠାକୁରଙ୍କର ତେଣୁ ମନୁଷ୍ୟକୃତ ଓପାସ ହୋଇଗଲା । କିନ୍ତୁ ଓପାସୀ ମଣିଷ କ'ଣ କରିବ ?

ବନ୍ଧୁ ମନେ ପକେଇ କହିଲେ ତାଙ୍କ ପଡିଶାରେ ରହୁଥିବା ଓ ତାଙ୍କ ସହିତ ଭଲ ସମ୍ପର୍କ ଥିବା ଜେନାବାବୁଙ୍କ ଘରେ କହିଦେଇ ଆସିବାକୁ ତାଙ୍କ ପାଇଁ ଦିଟା ଅରୁଆ ଚାଉଳ ଭାତ ଓ ପିଆଜ ରସୁଣ ନପକେଇ ଡାଲମାଟିକେ କରି ଦେବାକୁ । ଅର୍ଡରଲି ଯାଉଥିଲା । ପୁଣି ବନ୍ଧୁ ଅର୍ଡରଲିକୁ ପଛରୁ ଡାକି



Digitized by srujanika@gmail.com

ପକେଇଲେ । କହିଲେ ଆରେ ନାହିଁ ତାଙ୍କ ଘରକୁ ଯାଅନା । ତାଙ୍କର କ'ଣ ଅସୁବିଧାଥିବ କରିଥିବ । ଥାଉ ଦେଖିବା କ'ଣ ଗୋଟାଏ ବ୍ୟବସ୍ଥା କରିବା ।

କିଛି ସମୟ ଭାବି ବନ୍ଧୁ ବରାଦ କଲେ ତୁ ଯା ଗେଷ୍ଟହାଉସ ମ୍ୟାନେଜରକୁ କିମ୍ବା ଖାନସାମାକୁ କହିବୁ ଯେ ମୋ ପାଇଁ ଅଲଗା ମାଛ, ମାଂସ, ପିଆଜ, ରସୁଣ ତେଲ ଆଦିକୁ ବାଦଦେଇ ଟିକେ ପରଟା ଓ ଘିଅରେ ଆଳୁପୋଟଳ ଭାଜିଦେବ । ଦିନ ଅଢେଇଟା ବେଳକୁ ମତେ ଆସି ଦେଇଯିବୁ ।

ମୁଁ ପଚାରିଲି ଗେଷ୍ଟ ହାଉସ ଖାନସାମା କ'ଣ ବ୍ରାହ୍ମଣ । ଅନ୍ତତଃ ହିନ୍ଦୁ କି ?'

ବନ୍ଧୁ କହିଲେ 'ନାଇଁ ନାଇଁ ହେଡ୍ କୁକ୍ ହେଲା ରହିମ ଆଉ ଜଣେ ହେଲା ଜନ । କିନ୍ତୁ କ'ଣ କରାଯାଏ ? ଚଳେଇବାକୁ ହେବ ।

(ତା୦୩.୦୭.୧୯୮୪ରିଖ)





Digitized by srujanika@gmail.com

# ସହଯାତ୍ରିଣୀ, ହୃଦରୋଗ ଓ ରାମନାମ

ନୂଆଦିଲ୍ଲୀ ଷ୍ଟେସନରୁରେଳଗାଡି ଛାଡିବାର ପ୍ରାୟ କୋଡିଏ ମିନିଟପରେ ସାମନାରେ ବସିଥିବା ଦୁଇଜଣ ପଞ୍ଜାବୀ ଭଦ୍ରମହିଳାଗାର ପଡିଥିବା ଫୁଲସ୍କେପ କାଗଜ ଗୁଡାଏ ନିଜ ଭିତରେ ବାଣ୍ଟିନେଇ ଖୁବ୍ ତତ୍ପରତାର ସହିତ କ'ଣ ଗୁଡାଏ ଲେଖିବାକୁ ଲାଗିଲେ । ସାମନା ପଟରେ ବସି କାଗଜପୃଷ୍ଠା ଗୁଡାକ ନିଜ ପଟକୁ ବଙ୍କାଇ ଧରି ଥିବାଯୋଗୁଁ ଦେଖି ହେଉନଥାଏସେମାନେ କ'ଣ ଲେଖୁଥାଆନ୍ତି । ମଝିରେ ମଝିରେ ଥକ୍କା ମାରିଲା ପରି ଡଟ୍ ପେନଟାର ଉପର ମୁଣ୍ଡ ଓଠରେ ଠେସି ଧରି ଟିକେ କ'ଣ ଭାବୁଥାଆନ୍ତି ।

ମୋର ଉତ୍ସୁକତା ଥାଏ ଜାଣିବାକୁ କ'ଣଏ ମଧ ବୟସ୍କା ମହଳା ଦି ଜଣଏତେ ତରଚରରେ କର୍ତ୍ତବ୍ୟ ପରାୟଣତାର ସହିତ ଲେଖୁଛନ୍ତି । ଭାବୁଥାଏ ବୋଧହୁଏ ଦୁହେଁ କବି । ଅଭ୍ୟାସ କରି ହୁଏତ ନିତି କବିତା ଲେଖୁଥିବେ । କିନ୍ତୁ ରେଳରେ ବସିବାର ଏତେ ଅଳ୍ପ ସମୟ ଭିତରେ ଏମିତି ଚରତରରେ ଅଣ ନିଶ୍ୱାସୀ ହୋଇ ଯେ ସେମାନେ କବିତା ଲେଖୁଥିବେ ଏକଥା ମଧ ମନେ ହେଲାନି ।

ଦୁଇତିନି ଘଣ୍ଟା ପରେ ସେମାନଙ୍କ ମଧରୁ ଜଣେ ଆସି ମୋକଡରେ ଖାଲିଥିବା ସ୍ଥାନରେ ବସି ପୁଣି ଲେଖିବା ଆରମ୍ଭ କରି ଦେଲେ । କାଗଜଟାକୁ କଣେଇ କରି ଭଦ୍ର ମହିଳା ଧରିଥାନ୍ତି ଯେମିତି ମୁଁ ଦେଖି ନପାରେ । ସାମନା ସିଟରେ ଅନ୍ୟ ଜଣକ ମଧ ତାଙ୍କ ଲେଖାରେ ରିହାତି ଦେଉ ନଥାନ୍ତି । ଶେଷରେ ବିନମ୍ର କଣ୍ଠରେ ଭଦ୍ରତାର ହିନ୍ଦିଭାଷା ପ୍ରୟୋଗ କରି ମୁଁ ପଚାରିଲି ଭଉଣି ଯଦି କିଛି ଭୁଲ ମନେ ନକରିବେ ମୁଁ ଗୋଟିଏ କଥା ଆପଣଙ୍କୁ ପଚାରି ପାରେକି ?

ଭଉଣୀ ଲେଖା ବନ୍ଦକରି କହିଲେ କ'ଣ ପଚାରନ୍ତୁ ?

କ'ଣ ଆପଣ ଦୁହେଁ ସେତେବେଳୁ ଲେଖୁଛନ୍ତି ଜାଣିପାରେ କି ? ଅବଶ୍ୟ ଯଦି କିଛି ଏକାନ୍ତ ବ୍ୟକ୍ତିଗତ କଥାହୋଇ ନଥାଏ... ମୋ କଥା ନ ସରୁଣୁ ଭଦ୍ର ମହିଳା ଉତ୍ତର ଦେଲେ ଆମର ଜଣେ ଭିଣୋଇ ହାର୍ଟଆଟାକ୍‌ରେ ବୋକାରୋଠରେ ପଡିଛନ୍ତି । ତାଙ୍କ ଅବସ୍ଥା ବଡ ଗୁରୁତର । ଆମେ ତାଙ୍କୁ ଦେଖିବାକୁ ଯାଉଛୁ । ବଞ୍ଚିବେ କିନାହିଁ ଜଣାନାହିଁ । ଜଣେ ପଣ୍ଡିତ କହିଛନ୍ତି ସାଓ୍ୱାଲାଖଥର (ଅର୍ଥ ଲକ୍ଷେ ପଚିଶହଜାର) ରାମ ରାମ ଲେଖିତାକୁ ଚିରି ଅଟାରେ ମିଶାଇ ମାଛକୁ ଖାଇବାକୁ ଦେଲେ ଭିଣୋଇଙ୍କର ଜୀବନ ରକ୍ଷାରେକାମ ଦେବ । ଆମେ କାଲିଠୁ ଲେଖୁଛୁ । ଆଉ ଗୋଟିଏ ଭଉଣୀ ଭିଣୋଇ ବସିଛନ୍ତି । ସେମାନେ ବି ରାମ ନାମ ଲେଖୁଛନ୍ତି ।

କେତେ ଥର ହେଲାଣି ? ମୁଁ ପଚାରିଲି ।

ଚଉଠେବି ହେଇନାହିଁ ଭଉଣୀ ଉତ୍ତରଦେଲେ । ଅର୍ଥାତ୍ ପଚିଶ ହଜାରରେ ମଧ ପହଞ୍ଚି ନାହାନ୍ତି ।

ମୁଁ ଭାବୁଥିଲି ଯେ ପଣ୍ଡିତ କି ସାଧନା କରିବାକୁ ଦେଇଛନ୍ତି ଏମାନଙ୍କୁ । ପ୍ରଥମକଥା ଏପରି ଏକ ପ୍ରେସକ୍ରିପସନରେ ମଣିଷ ବିଶ୍ୱାସ କରିବା ମଧ ବଡ କଥା । ପୁଣି ପ୍ରାଣ ବିକଳରେ ଲକ୍ଷେ ପଚିଶ ହଜାର ଥର ରାମ ନାମ ଲେଖିବାର ଧୈର୍ଯ୍ୟ ଓ ନିଷ୍ଠା ଆଉ ଏକକଥା ।



Digitized by srujanika@gmail.com

ମଣିଷ ତ ସୁସ୍ଥ ସମୟରେ ଏତେ ଆକୁଳ ବିକଳ ହୋଇ ଭଗବାନଙ୍କୁ ଡାକେ ନାହିଁ । ପୁଣି ରୋଗରୁ ଭଲ ହେଲେତ ଭଗବାନଙ୍କୁ ଆସନ୍ତା ରୋଗ ପର୍ଯ୍ୟନ୍ତ ଭୁଲି ଯାଏ । ଭଗବାନ କ'ଣ ଏ ଠକାମି ଜାଣିପାରନ୍ତି ନାହିଁ ?

ରାତି ନ'ଟା ପର୍ଯ୍ୟନ୍ତ ଉଭୟ ଭଦ୍ରମହିଳା ମଝିରେ ଟିକେଟିକେ ବିଶ୍ରାମ ନେଇ ରାମନାମ ଲେଖୁଥାଆନ୍ତି । ସାଢେ ନଟା ବେଳକୁ ବର୍ଥ ଟେକା ହେଲା । ଶୋଇବା ସମୟ ।

ପରଦିନ ସକାଳୁ ଉଠିଲା ପରେ ଦେଖିଲି ସେମାନେ ଆଉ ରାମ ନାମରେ ମନ ଲଗାଉ ନାହାନ୍ତି । ପ୍ରାୟ ଦିନ ଗୋଟାଏ ପରେ ସେମାନେ ଧାନବାଦଠାରେ ଓହ୍ଲାଇ ଗଲେ । କିନ୍ତୁ ସେଦିନ ଆଉ ରାମନାମ କଥା ସେମାନଙ୍କର ମନେ ନଥିଲା ପରି ମନେ ହେଉଥିଲା । କାରଣ ସକାଳୁ ଗୋଟାଏ ଭିତରେ ସେମାନେ ଆଉ କାଗଜ କଲମ ଧରି ନାହାନ୍ତି । ପଣ୍ଡିତଙ୍କର କଠୋର ହୁକୁମନାମା ପ୍ରଥମେ ବିଶ୍ୱାସ ଏବଂ ପ୍ରିୟଜନର ପ୍ରାଣ ରକ୍ଷା ପାଇଁ ନିଜର ପ୍ରଚେଷ୍ଟା ଏକ ରୂପ ନେଇଥିଲା । କିନ୍ତୁ ମଣିଷ ପ୍ରାଣ ବଞ୍ଚାଇବା ପାଇଁ ମଧ ଯେତିକି ସାଧନା ଦରକାର ତାହା କରିବାକୁ ଆମର ତାକତ କାହିଁ । ତା'ପରେ ଲକ୍ଷେ ପଚିଶ ହଜାର ଥର ରାମ ନାମ ଲେଖିବାକୁ ଯେତିକି ସମୟ ଦରକାର ହୃଦରୋଗରେ ଆକ୍ରାନ୍ତ ଗୁରୁତର ରୋଗୀ ସେତେ ସମୟ ଅପେକ୍ଷା କରିପାରିବତ ?

(ତା୨୦.୦୨.୧୯୮୪ରିଖ)





Digitized by srujanika@gmail.com

# ମୋ ପତ୍ନୀଙ୍କର ଲଫାପା ଅର୍ଥନୀତି

ଅନେକ ପୁରୁଷ ଅଛନ୍ତି ଯେଉଁମାନେ ନିଜର ଆୟ ହାତରେ ନିଅନ୍ତି ଓ ଖର୍ଚ୍ଚ ମଧ୍ୟ ନିଜହାତରେ କରନ୍ତି । ସେମାନେ ନିଜ ସ୍ତ୍ରୀଙ୍କୁ ହୁଏତ ବିଚାରବୁଦ୍ଧିରେ ପାକଳବୋଲି ଭାବିପାରନ୍ତି ନାହିଁ କିମ୍ବା ନିଜର କଞ୍ଜୁସି ଦୋଷରୁ ଭାବନ୍ତି ନିଜେ ଟଙ୍କା ରଖିଲେ କମଖର୍ଚ୍ଚ ହେବ ।

କିନ୍ତୁ ମୋ ପରି ମଧ୍ୟ ଅନେକ ପୁରୁଷ ଅଛନ୍ତି ଯେଉଁମାନେ ଜୀବନର ପାରିବାରିକ ବୋଝ ହାଲକା ରଖିବାକୁ ଚାହାଁନ୍ତି । ତେଣୁ ପଇସାପତ୍ର ଖର୍ଚ୍ଚ, ପିଲାଛୁଆଙ୍କ ଅଳି ଓ ଓଜର ଆଦି ସବୁ ଝଞ୍ଜଟ ସ୍ତ୍ରୀ ଉପରେ ଲଦି ଦେଇ ସେ ଦୃଷ୍ଟିରୁ ନିଧଡକ ଜୀବନ ଯାପନ କରିବାକୁ ପସନ୍ଦ କରନ୍ତି । କାରଣ ଅଳ୍ପ କିମ୍ବା ସୀମିତ ଆୟ ଭିତରେ ଚଳିବାଠାରୁ ଚଳାଇବା ବଡ କଷ୍ଟକର ବ୍ୟାପାର । କିଏ ସେ ବୋଝ ଉଠେଇବ ?

ମୋ ପତ୍ନୀ କିପରି ଘରଚଳାନ୍ତି ମୁଁ ସେ କଥା ଜାଣିବାକୁ ବି ଚାହେଁନା । ମୋର ନିଜର ବାଜେଖର୍ଚ୍ଚ କିଛିନାହିଁ । ତେଣୁ ଯାହାଦରକାର ତାଙ୍କଠାରୁ ଅନ୍ୟମାନଙ୍କ ଭଳି ମାଗିନିଏ । ପଇସା ନଥିଲେ ସେ ଟିକେ ଗୁଣୁଗୁଣକଲେ ମୁଁ ଜାଣିଯାଏ । ମୋ ପଇସା ପାଇଁ ଛୁଆଙ୍କ ଭଳି ଜିଦ୍ କରେନାହିଁ । ବରଂ ପାମ୍ପେଇବାକୁ ଚେଷ୍ଟା କରେ ।

ଦିନେ ଦେଖିଲି ପତ୍ନୀ ମୋର ଶୋଇବା ଘର ଖଟଉପରେ ବସି ମୋଟା ମାଟିଆ ଲଫାପାଗୁଡାକ ଭିତରେ ହାତ ପୂରାଉଛନ୍ତି । ପୁଣି ଖାଲି ହାତ ବାହାରକରି ଆଣି ଆଉ ଗୋଟାଏ ଲଫାପାରେ ହାତ ପୂରାଉଛନ୍ତି । ପାଞ୍ଚ ଛଅଟା ଲଫାପା ଭିତରୁ ଖାଲି ହାତବାହାର କରିବା ପରେ ମୁଁ ପଚାରିଲି କଣ ଖୋଜୁଛ ? ସେ କିଛି ନକହି ଆଉ ଗୋଟାଏ ଲଫାପାରେ ହାତ ପୂରାଇଲେ । ମୁଁ ପୁଣି ପଚାରିଲି ।

ସେ ମୋ ଆଡକୁ ନଅନାଇ ଆଉଗୋଟାଏ ଲଫାପା ଭିତରେ ହାତ ପୁରେଇଲେ । କହିଲେ ତମେ ସେ ସବୁକଥା ବୁଝିପାରିବନି ।

କଣ କଥାଟା ଏମିତି ମୁଁ ବୁଝିପାରିବିନି ? ମୁଁ କହିଲି ।

ସେ କହିଲେ ଘର ବିଷୟରେ ତମ କିଛି ହୋଲଡୋଲ ଅଛି ? ଆଜି ତିନିତାରିଖ । ହାତକୁ ପଇସା ଆସିବାକୁ ଆହୁରି ଆଠ ଦଶଦିନ ବାକି । ପଇସା ନାହିଁ ଘରଖର୍ଚ୍ଚ ପାଇଁ ।

ମୁଁ ସେଇଠୁ ପଛେଇଲି । ପ୍ରକୃତରେ ମୋର ସେ କଥାରେ ମୁଣ୍ଡ ପୁରେଇବା ଅନ୍ୟର କଥାରେ ନାକ ପୁରେଇବା ସହିତ ସମାନ । ମୁଁ ଚୁପ ରହିବାକୁ ଭାବୁଥିଲି । କିନ୍ତୁ ଭାବିଲି ଏ ଲଫାପା ଏତେ ଗୁଡା କ'ଣ ? ଯା ଭିତରେ କ'ଣ ପଇସା ସବୁ ଥାଏ ? ସେଇଥି ପାଇଁ ଉତ୍ସୁକତା ନିବାରଣ କରିବାକୁ ପଚାରିଲି 'ଏତେଗୁଡାକ ଲଫାପା କ'ଣ ପାଇଁ ? ସେଥିରେ କ'ଣ ପଇସା ରଖୁଛ ?

ପତ୍ନୀ ମୋର ପଇସା ନପାଇ ବିରକ୍ତିରେ ହାତ ଛିଞ୍ଚାଡୁଥିଲେ । ହଠାତ୍ ଗୋଟାଏ ଲଫାପା ଭିତରୁ ଚାରି ପାଞ୍ଚଟା ପାଞ୍ଚଟଙ୍କିଆ ନୋଟ ତାଙ୍କ ଆଙ୍ଗୁଠି ଭିତରେ ପଶି ବାହାକୁ ବାହାରି ଆସିଲା । ଟିକେ ଆଶ୍ୱସ୍ତ ହୋଇ କହିଲେ ପତ୍ନୀ ଓଃ ! ପରିବା ଲଫାପାରେ ଅଛି କିଛି ପଇସା ।

ମୁଁ ଭାବୁଥିଲି ପରିବା ଲଫାପା ପୁଣି କ'ଣ ? ମୋ ମନକଥା ବୁଝି ପାରି ସେ ମତେ ବୁଝାଇବାକୁ ଆରମ୍ଭ କଲେ । ମାସକର ଆୟକୁ ସେ କେତୋଟି ଲଫାପାରେ ଖର୍ଚ୍ଚର ହେଡ୍ ଅନୁଯାୟୀ ଭର୍ତ୍ତି କରିଦିଅନ୍ତି ।



Digitized by srujanika@gmail.com

ସେ ଗୋଟିଏ ହାରାହାରି ହିସାବ ବାହାର କରିଛନ୍ତି । ଖର୍ଚ୍ଚର ବିଭିନ୍ନ ହେଡ୍‌ରେ ସେହି ପଇସା ବାଣ୍ଟିକରି ରଖିଦିଅନ୍ତି । ହେଡ୍ ଗୁଡ଼ିକ ହେଲା ମାଛ-ମାଂସ, ପରିବା, ଚାଉଳ-ଅଟା, ଡାଲି-ମସଲା ଆଦି ମାସିକିଆ ସଉଦା, ଔଷଧ, ପିଲାଙ୍କ ପଢାଖର୍ଚ୍ଚ, ଦୁଧ, ମିଠା, ଫଳ, ଗ୍ୟାସ, ରୋଷେଇ ତେଲ, ଲୁଗାପଟା-ଦରଜୀ ଓ ଅନ୍ୟାନ୍ୟ । ଗୋଟିଏ ହେଡରୁ ପଇସା ସରିଗଲେ ପୃଥିବୀ ପ୍ରଳୟ ହେଲେ ବି ସେ ହେଡ୍‌ରେ ଆଉ ଖର୍ଚ୍ଚ ହୋଇପାରିବନି । ଯଦି କୋଉ ମାସରେ ଅତିଥି ବେଶୀ ଆସି ମାଛ ମାଂସ ଅଣ୍ଡା ଆଦି ଆମୀଷ କିଣାରେ ଅଧିକା ଖର୍ଚ୍ଚ ହୋଇ ପଇସା ସରିଗଲା ତେବେ ସେ ମାସରେ ଶେଷ ପର୍ଯ୍ୟନ୍ତ ଓ ଆସନ୍ତା ମାସର ଦରମା ମିଳିବା ପର୍ଯ୍ୟନ୍ତ ଏକାଦଶୀ ଦ୍ୱାଦଶୀ ପାଳିତ ହେବ । ପରିବା ଲଫାପାରୁ ମାଛ କି ଅଣ୍ଡା ପାଇଁ ପଇସା ଅଣାଯାଇ ପାରିବନି ।

ମନେମନେ ମୁଁ ଖୁବ୍ ଖୁସି ହେଲି । ମୋ ସ୍ତ୍ରୀ ଅର୍ଥନୀତି ବିଶାରଦ ନହେଲେ ବି ଆର୍ଥୀକ ଶୃଙ୍ଖଳା ରକ୍ଷା କରିବାରେ କି ସମର୍ଥ ? ପାଠକମାନେ ନିଜ ଘରେ ଗୃହିଣୀଙ୍କୁ ଏବଂ ପାଠିକା ଯଦି ନିଜେ ଗୃହିଣୀ ହୋଇଥାନ୍ତି ତେବେ ଶିଖନ୍ତୁ କେମିତି ଘର ଚଳାଇବାର ସୂକ୍ଷ୍ମ ଉପାୟ ଆମ ଘରେ ବାହାର କରିଛି । ଓଡିଶାର ଅର୍ଥମନ୍ତ୍ରୀ ମଧ କିଛି ଶିଖିବାର ଅଛି । ନହେଲେ ଶିକ୍ଷାବିଭାଗରୁ ଟଙ୍କା ନେଇ ପୂର୍ତ୍ତ ବିଭାଗରେ ଖର୍ଚ୍ଚ କରି ବିପତ୍ତି ସୃଷ୍ଟି କରୁଥିବେ ।

(ତା୧୦.୦୯.୧୯୮୪ରିଖ)





Digitized by srujanika@gmail.com

# ଶସ୍ତା ପଇସା : ଦାମୀ ମହିଳା

କଲିକତାରେ କେତେ ବର୍ଷ ହେଲା ବଡଲୋକ ଅର୍ଥାତ ଧନୀ ଲୋକଙ୍କ ପାଇଁ ଗୋଟାଏ ନୂଆ ବଜାର ଖୋଲିଛି । ସେକ୍‌ସପିଅର ସରଣୀ'ରେ ଏହି ଶୀତତାପ ନିୟନ୍ତ୍ରିତ ବଜାର ଏୟାର କଣ୍ଡିସନଡ ମାର୍କେଟ ନାମରେ ଖ୍ୟାତିଲାଭ କରୁଛି ।

ବଡଲୋକ ଅର୍ଥାତ ଧନୀଲୋକ ଅର୍ଥାତ ଯେଉଁମାନେ ଅଳ୍ପଚେଷ୍ଟା ଓ ପରିଶ୍ରମରେ ବୁଦ୍ଧି, ଚତୁରତା ଓ ଶଠତା ପ୍ରୟୋଗ କରି ସହଜରେ ବହୁତ ଅଧିକ ଧନ ରୋଜଗାର କରି ପାରୁଛନ୍ତି ସେମାନେ ଓ ସେମାନଙ୍କ ସ୍ତ୍ରୀ-ପିଲାମାନେ ଏଠାକୁ ଜିନିଷ କିଣିବାକୁ ଆସନ୍ତି । ବହୁ ପ୍ରକାର ଫ୍ୟାନ୍‌ସି ଜିନିଷ ମିଳେ । କିନ୍ତୁ ଆକଶଛୁଆଁ ଦାମ୍ ।

ଜଣେ ବନ୍ଧୁ ମୁଁ କଲିକତା ଯାଇଥିବା ବେଳେ ରାତିରେ ତାଙ୍କ ଘରେ ଖାଇବାକୁ ଡାକିଥିଲେ । ବିଭିନ୍ନ କଥା ନହସରେ ଏଆରକଣ୍ଡିସଣ ମାର୍କେଟ କଥା ଉଠିବାରୁ ନିମ୍ନୋକ୍ତ କଥାଟି ସେ କହିଲେ । ତାଙ୍କର ଗୋଟିଏ ଚିହ୍ନା ଦୋକାନୀ ସେ ମାର୍କେଟରେ ଦୋକାନ ଦେଇଛି । ଆମ ବନ୍ଧୁଙ୍କ ସାଙ୍ଗରେ କେମିତି ଗୋଟାଏ ପଟିଯାଇଛି । ୫୦ ଟଙ୍କାର ଜିନିଷ ୨୫ କିମ୍ବା୩୦ ଟଙ୍କାରେ ତାଙ୍କୁ ଦିଏ । ସେଥିରେ ବି ସେ କେତେ ଲାଭ କରୁଥିବ । ସେ ଦୋକାନୀ ତା' ନିଜର ଅଭିଜ୍ଞତା ତାଙ୍କୁ କହୁଥିଲା । ତା'ର ଦୋକାନ ଚମଡା, ଫୋମ ଲେଦର ଓ ପ୍ଲାଷ୍ଟିକ ବ୍ୟାଗ ଇତ୍ୟାଦି ପାଇଁ । ବିଶେଷ କରି ମହିଳାମାନଙ୍କ ପାଇଁ ଆକର୍ଷଣୀୟ ବ୍ୟାଗ ସବୁ ରଖିଥାଏ । ଯେତେବେଳେ ସେ ଦୋକାନୀ ପ୍ରଥମେ ସେଠାରେ ଦୋକାନ ଖୋଲିଲା ସେ ଅନ୍ୟମାନଙ୍କ ଠାରୁ କମ୍ ଦାମରେ ତା' ଜିନିଷ ବିକିଲା । ତା'ର ମତ ଯେ ଅଳ୍ପ ଦରରେ ବିକି କରି ମଧ ତା'ର ଶହେରେ ପଚାଶ ଲାଭ ରହୁଛି । ଅନ୍ୟ ଦୋକାନୀମାନେ ସେହି ଜିନିଷ ଚାରିଗୁଣ, ପାଞ୍ଚଗୁଣ, ଚଢ଼ା ଦାମରେ ବିକିଲେ । ସେ ଗୋଟିଏ ବଢ଼ିଆ ଫ୍ୟାନ୍‌ସି ଭାନିଟବ୍ୟାଗ ବରାଦ କରି ତିଆରି କରି ମାତ୍ର ୨୦ ଟଙ୍କାରେ ବିକିଲା । କଳା ବଜାର କରି ଅଜସ୍ର ପଇସା ରୋଜଗାର କରୁଥିବା ଲୋକଙ୍କ ମହିଳାମାନେ ବ୍ୟାଗଟି ଦେଖି ଭାରି ପସନ୍ଦ କଲେ । ଦାମ ପଚାରିଲାରୁ ୨୦ ଟଙ୍କା ଶୁଣି ଆଉ କିଣନ୍ତିନି ।

ସେଠାରୁ ଯାଇ ଅନ୍ୟ ଦୋକାନରେ ୬୦ ଟଙ୍କା ୮୦ ଟଙ୍କା ଦେଇ ତା'ଠାରୁ ନିକୃଷ୍ଟ ବ୍ୟାଗ କିଣି ନିଅନ୍ତି । ଏ ମହିଳାମାନେ ଯେତେବେଳେ ଅନ୍ୟ ଦୋକାନରେ କହନ୍ତି ଯେ ଅମୁକ ଦୋକାନୀ କେମିତି ଏତେ ଶସ୍ତାରେ ବିକୁଛି, ଚଢାଦର ଦୋକାନୀମାନେ ଉତ୍ତର ଦିଅନ୍ତି 'ଆଜ୍ଞା ସେ ପରା ରଦିମାଲ ନିଲାମରେ କିଣି ପଲିସମାରି ଚକ୍ ଚକ୍ କରି ଦେଉଛି । ସେ ଜିନିଷ କ'ଣ ଆପଣଙ୍କ ଲାଏକ ?'

ଆମ ଏ ଦୋକାନୀର ବିକ୍ରି କ୍ରମେ ବଡ ମାନ୍ଦା ପଡିଲା । ସେ କୋଡିଏ ଟଙ୍କିଆ ବ୍ୟାଗ ପ୍ରାୟ ଦୁଇ ଶହଟି ଆଣିଥିଲା । ସେ ଭାବିଲା ଯେ, ତା'ର କେଉଁଠି ଗୋଟାଏ ଭୁଲ ରହୁଛି । ତା'କୁ ବୁଦ୍ଧି ଜୁଟିଗଲା । ସେ ବ୍ୟାଗ ଗୁଡିକୁ ନେଇ ଦୁଇ ତିନିମାସ ଦୋକାନର ପଛ ଭାଗରେ ଲୁଚାଇ ଦେଲା । ସବୁ ଜିନିଷରେ ପୁରୁଣା ଲେବଲ ଗୁଡାକ ଉଠେଇ ଦେଇ ନୂଆ ଲେବଲରେ ତିନି ଚାରିଗୁଣ ଦାମ କଷି କରି ଲଗେଇଲା । କ୍ରମେ ବିକ୍ରି ବଢିଲା । ଲାଭର ମାତ୍ରା ଖୁବ୍ ବଢିଲା । ଚାରିମାସ ପରେ ସେ ୨୦ଟଙ୍କିଆ ବ୍ୟାଗକୁ ଚକଚକିଆ ଜରିଖୋଲ ଭିତରେ ପୂରାଇ ୯୦ ଟଙ୍କା ଦାମ୍ ଲେଖି ତା' ଉପରେ ଲେବଲମାରି ଦୋକାନର ସାମନା ପଟକୁ ଝୁଲେଇଲା । ଦଶ ଦିନ ଭିତରେ ତା'ର ସେ ବ୍ୟାଗଗୁଡାକ ସବୁ ବିକ୍ରି ହୋଇଗଲା । ଆହୁରି ଚାହିଦା ହେଲା । ଏବେ ସେ ବ୍ୟାଗ କୁଆଡେ ଶହେ ଦଶ ଟଙ୍କାରେ ବିକ୍ରି ହେଉଛି ।

(ତା୦୧.୧୦.୧୯୮୪ରିଖ)

❑❑❑



Digitized by srujanika@gmail.com

# କଙ୍କଡା ପାଖରେ ପରାଜୟ

ଯେଉଁକଥାଟି ମୁଁ କହିବାକୁ ଚାହୁଁଚି ସେ କଥାଟାକୁ ନେଇ ଆପଣ ମତେ ହସରେ ଉଡେଇ ଦେବେନାହିଁ । କଥାଟି କିନ୍ତୁ ସତ୍ୟ । ମୋ ଜୀବନରେ ମୁଁ ସାଧାରଣତଃ ପରାଜୟ ମାନି ନେଇ କର୍ମଆଦରି ରହିଯାଏ ନାହିଁ କିମ୍ୱା କିଛି ଫାଇଦା ଉଠେଇବା ପାଇଁ ସାମୟିକ ହେଉ ବା ସ୍ଥାୟୀ ଭାବରେ ହେଉ ସାଲିସର ପନ୍ଥା ଗ୍ରହଣ କରିନିଏନାହିଁ । କିନ୍ତୁ ଗତ କେତେବର୍ଷ ଧରି ମୁଁ 'ଗୋଟାଏ' କଙ୍କଡା ପାଖରେ ବାରମ୍ବାର ପରାସ୍ତ ହୋଇ ଆସିଛି । ଅନ୍ତତଃ ଆଉକିଏ ଜାଣନ୍ତୁ ନଜାଣନ୍ତୁ ମୋ ମନ ଭିତରେ ମୁଁ ପରାଜୟ ସ୍ୱୀକାର କରିବାକୁ ବାଧ ହୋଇଛି ।

ଆପଣ ଭାବୁଥିବେ ଗୋଟାଏ କଙ୍କଡା ପାଖରେ ଏପରି ଗୋଟାଏ ଦମ୍ଭଥିଲା ଲୋକ ପରାସ୍ତ କେମିତି ହେଉଛି ? ତେବେ ଶୁଣନ୍ତୁ ସେ କାହାଣୀ ।

ମୁଁ ଯେତେବେଳେ ବ୍ରହ୍ମପୁରରୁ କଟକ କିମ୍ୱା ଭୁବନେଶ୍ୱର ଆସୁଥାଏ ବାଲୁଗାଁ ବଜାରଠାରେ ବସରୁ ବା କାରରୁ ହେଉ ଓହ୍ଲାଇ ଗୋଟାଏ ଜୀଅନ୍ତା କଙ୍କଡା କିଣିବାକୁ ବାହାରେ । ପ୍ରାୟ ପାଞ୍ଚ, ଛ ବର୍ଷ ତଳେ ଯେତେବେଳେ ମୁଁ କଙ୍କଡା ମୂଲେଇଲି କଙ୍କଡା ଗୋଟାଏ ଛଅଟଙ୍କା ଦାମ ଥିଲା । ମତେ କାବ୍‌ବା ଲାଗିଲା । ମୁଁ ତିନିଟଙ୍କା କହିଲି । ଅବଶ୍ୟ ବଡ କଙ୍କଡା । କଙ୍କଡାବାଲା ହସିଲା । କହିଲା ବାବୁ ତମର କଙ୍କଡା କିଣିବାର ନାହିଁ ।

ମୁଁ କହିଲି 'କେତେ ନିହାତି ନବ ? ଚାରିଟଙ୍କା ?'

କହିଲା ସେ- କହୁଚ ଯଦି ଚାରଣା ଆଠଣା କାଟିଦେଇ ନେଇଯାଅ ।

ମୁଁ କହିଲି- ଚାରିଆଠଣା ? କଙ୍କଡାବାଲା ହସିଲା । ହଉବାବୁ ଯା ।

ବସ ଡ୍ରାଇଭର ହର୍ଣ୍ଣଦେଉଥିଲା । ମୁଁ ଦଉଡିଲି ବସକୁ ।

ତା ପରବର୍ଷ କଙ୍କଡାଦାମ ଆଠଟଙ୍କା । ସେହିବର୍ଷ ତିନିମାସ ପରେ ନ ଟଙ୍କା । ତା ପରବର୍ଷ ମୁଁ କାହାସିହତ ଜିପରେ ଆସୁଥିଲି । କଙ୍କଡା ନବାକଥା କହିଲାରୁ ସମସ୍ତେ ବାହାରିଲେ । କଙ୍କଡା ଗୋଟାଏ ବାରଟଙ୍କାରୁ କମନୁହେଁ । ଅବଶ୍ୟ ବଡକଙ୍କଡା ଚିଲିକାର । ତା' ପରବର୍ଷ ପନ୍ଦରଟଙ୍କା । ମୁଁ ବରାବର ହାରିଯାଉଥାଏ । ପନ୍ଦର ଟଙ୍କା କହିଲାବେଳକୁ ମୁଁ ଭାବୁଥାଏ ଗତବର୍ଷ ବାରଟଙ୍କାରେ ନେଇ ଯାଇଥିଲେ ତ ସରିଥାନ୍ତା । ଏ କଙ୍କଡାଟା ପାଖରେ ଏତେ ଥର କିଏ ହାରମାନିବ ? କଙ୍କଡା ଉପରେ ରାଗ ଯେତିକି ମୋ ନିଜ ଉପରେ ମୋ ବୋକାମୀ ପାଇଁ ରାଗ ସେତିକି । ତଥାପି ସାହସକରି ବାରଟଙ୍କା କହି ତେରଟଙ୍କାରେ ଶେଷକଥା ଛିଡାଇଲି । ପରାସ୍ତ ହୋଇ ଫେରିଲି ।

ଏଇ ସପ୍ତାହକ ତଳେ ମୁଁ ଗଣେଶ ପୂଜାଦିନ ପୁଣି ବ୍ରହ୍ମପୁରରୁ ଫେରୁଥିଲି । ଆମେ ଅଟକିଲୁ । କଙ୍କଡା ଟୋକେଇସବୁ ଅଛି । ଖରା ବେଳ । କଙ୍କଡାବାଲାମାନେ କୁଆଡେ ଶୋଇଛନ୍ତି । ବହୁତ ଖୋଜାଖୋଜି



Digitized by srujanika@gmail.com

ପରେ କଙ୍କଡାବାଲା ମିଳିଲା । ଗୋଟାଏ ବଡ ପାନ ଦୋକାନ ସାମନା ବେଞ୍ଚରେ ଶୋଇଥିଲା । ନିଦମଳମଳ ଆଖିରେ ସେଇ ବଡ କଙ୍କଡାକୁ କୋଡିଏ ଟଙ୍କା କହିଲା ।

ମୁଁ ହତଭମ୍ବ । ଭାବିଲି, ଏଥର ଯେମିତି ହେଲେ କଙ୍କଡାଟାକୁ ହରେଇବାକୁ ପଡିବ । କିନ୍ତୁ ପାଞ୍ଚବର୍ଷ ଭିତରେ କଙ୍କଡା ଛଟଙ୍କାରୁ କୋଡିଏ ଟଙ୍କାରେ ପହଞ୍ଚିଲାଣି । କହିଲି, ଆରେ କେତେ ଠିକ ନବ କୁହ ।

କଙ୍କଡାବାଲା କହିଲା- ଆଜି ଗଣେଶପୂଜା କାରବାର ନାହିଁ । ନହଲେ ପଶିଶ-ତିରିଶ-ପଇଁତିରିଶ ଟଙ୍କାରେ ଯାଉଛି ।

ମୁଁ କହିଲି ' ଏ କଙ୍କଡାଦର କାହିଁକି ବଢୁଛି ।'

ସେ କହିଲା 'କଙ୍କଡା ମିଳୁଛି କୋଉଠି ? ସବୁତ ଚାଲାଣହେଉଛି । କଲିକତାକୁ ଆମେରିକାକୁ ଆଉ ଜାପାନକୁ । କଙ୍କଡା କଣ ଆମ ଦେଶଲୋକେ ଆଉ ଖାଇପାରିବେ ?'

ନିହାତି ଉଣେଇଶି ଟଙ୍କାରୁ କମ୍ କରିବାକୁ ସେ ରାଜିହେଲାନି । କିନ୍ତୁ ମୋର ଏଥର ବି ହାରହେଲା, ଫେରିଲି ବିଫଳମନୋରଥ ହୋଇ । ଭାବୁଥିଲି ହୁଏତ ଡଲାର ଓ ୟେନ୍ ପାଖରେ ଭାରତୀୟ ଟଙ୍କାର ଏ ପରାଜୟ । ମୋର ବ୍ୟକ୍ତିଗତ ମନରେ ଏଥିପାଇଁ ଗ୍ଲାନିଆସିବା ଅନାବଶ୍ୟକ ।

କିନ୍ତୁ ଘରେ ପହଞ୍ଚି ସ୍ଥିର କଲି-ଯା ପରେ ଯେବେ ମୁଁ ବାଲୁଗାଁ ଯିବି, କଙ୍କଡାଟା ଯଦି ପଚାଶଟଙ୍କା ହୁଏ, ତେବେ କିଣିବି । ଆମେରିକା ଓ ଜାପାନକୁ ପରାସ୍ତ କରିବି । କଙ୍କଡାକୁ ଜୟକରିବି ।

(ତା୦୮.୧୦.୧୯୮୪ରିଖ)





Digitized by srujanika@gmail.com

# ସର୍ବସାଧାରଣ ସେବାରେ ଚିକ୍କଣ ହାତ

ପୂଜା ଋତୁ ଆସିଗଲା । ଚାନ୍ଦା ଅସୁଲକାମ ଆରମ୍ଭ ହେଲା । ଗଣେଶ ପୂଜାରୁ ଆରମ୍ଭ, ସରସ୍ୱତୀ ପୂଜାରେ ଶେଷ ।

ସାଧାରଣତଃ ଧାରଣା ଥାଏ ଯେ, ଟୋକାମାନେ ବିଶେଷକରି ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ବେକାର ମାନେ ଚାନ୍ଦାଖାତାଧରି ବାହାରନ୍ତି । କିନ୍ତୁ ସେଥିରେ ବି ବ୍ୟତିକ୍ରମଅଛି । ମୁଁ ଜଣେ ହୋମିଓପ୍ୟାଥ୍ ଡାକ୍ତରଙ୍କ ଘରକୁ ଔଷଧ ପାଇଁ ଯାଇଥିଲି । ମୋ ପୂର୍ବରୁ କୋଠରୀ ଭିତରେ ଆଗରୁ ଦୁଇଜଣ ପାକଳିଆ ହୃଷ୍ଟପୁଷ୍ଟ ଷାଠିଏରୁ ଅଧିକ ବୟସର ବୁଢା(ବୟସରେ ସିନା, ଆଚରଣରେ ଟୋକାଙ୍କୁ ଚିତାକାଟି ଦେବେ) ଆଗରୁ ସେଠାରେ ଆସ୍ଥାନ ଜମେଇ ବସିଥିଲେ । ଜଣକହାତରେ ଚାନ୍ଦା ରସିଦବହି ଖୋଲାହୋଇ ରହିଛି ।

ଡାକ୍ତରଙ୍କ କୋଠରୀ ବାହାରେ ବଡ ବଡ ଅକ୍ଷରରେ ଯୋତା ଓହ୍ଲାଇ ଭିତରକୁ ଯିବାପାଇଁ ଲେଖାରହିଛି । କିନ୍ତୁ ଏ ବାବୁମାନେ ଚପଲ ସ୍ୟାଣ୍ଡାଲ ଗୋଡରେଦେଇ ଘର ଭିତରେ ବସିଛନ୍ତି । ଗୋଡ ତଳେ ବର୍ଷାଦିନର ଓଦା ଶୁଖିଲା ବାଲିମାଟି ମେଞ୍ଚାଏ ଲେଖା ।

ଡାକ୍ତର ଔଷଧର ପୁଡିଆ ବାନ୍ଧୁଛନ୍ତି । ସେମାନେ କଥାର ପୁଡିଆ ମାରୁଛନ୍ତି । ଶେଷରେ ଚାନ୍ଦା କଥା ହେଲା ।

ଜଣେ କହିଲେ 'ଆଜ୍ଞା ! ଆପଣ ଗତଥର ପୂଜାକୁ ଦେଇଥିଲେ କୋଡିଏ ଟଙ୍କା । ଏଥର କୋଡିଏ ପରସେଣ୍ଟ ବଢିଯାଇଛି । ସବୁଦର ବଢୁଛି ତ କ'ଣ କରିବା ? ଆପଣ ନଦେଲେ କିଏ ଦବ ?'

ଡାକ୍ତର ରୋଗୀ ଆଡକୁ ପୁଡିଆ ବଢେଇ ଦେଉଦେଉ ଛୋଟିଆ ହଁଟିଏ ମାରିଲେ । ହଁ ନମାରିବା ଛଡା ଆଉ ଚାରା କଣ ? ମୁଁ ଭାବୁଥିଲି ଏ ଡାକ୍ତରତ କୋଉଠି ଚାକିରୀ କରନ୍ତି । ମାଗଣା ଔଷଧ ଦିଅନ୍ତି । ଲୋକଙ୍କର ପ୍ରତ୍ୟକ୍ଷ ସେବା ଉଦ୍ଦେଶ୍ୟରେ ମାସକୁ ଦେଢଶ ଦୁଇଶ ଟଙ୍କାର ଔଷଧ କିଣନ୍ତି । ତେଣୁ ଡାକ୍ତରୀରୁ ଆୟ କିଛି ନାହିଁ । ବରଂ ସମୟ ନଷ୍ଟ । ଘରେ ସ୍ତ୍ରୀ ପିଲା ବ୍ୟସ୍ତ । ଖାଇବା ଶୋଇବାରେ ସମୟ ନାହିଁ । ଗତ ବର୍ଷକଭିତରେ ତାଙ୍କର ଦରମା ଶତକଡା କୋଡିଏ ବଢିଛି କି ?

ରସିଦ ଲେଖୁଲେଖୁ ବାବୁ କହିଲେ 'ଆଜ୍ଞା ! ପଚିଶ ଟଙ୍କା ଲେଖିଲି ।'

ଛୋଟିଆ ହଁଟିଏ ମାରି ଡାକ୍ତର ଭିତରକୁ ଗଲେ ଟଙ୍କା ଆଣିବାକୁ । ଯିଏ ରସିଦ ଲେଖୁଥିଲେ ସିଏ ଚୁପ କିନା କହିଲେ ଅନାକୁ ଏଥିରେ କୋଡିଏ ଲେଖୁଛି । ଅର୍ଥାତ ରସିଦର ଦେଲା ଭାଗରେ ପଚିଶ ଓ ନେଲ ଭାଗ ଯାହାକୁ ମୁଣ୍ଡା କହନ୍ତି ସେଥିରେ କୋଡିଏ ଲେଖା ହେଲା । ଅନ୍ୟଜଣକ ଗୋଟାଏ ତୀର୍ଯ୍ୟକଦୃଷ୍ଟି ମୋ ଆଡକୁ ଚଟ୍‌କରି ଫିଙ୍ଗି ଦେଇ ଟୁଙ୍ଗ କରି ଚପା ହଁ ଟାଏ ମାରିଲେ ।

ରାଜଧାନୀରେ ଯେଉଁ 'ନଗର'ରେ ଏହି ପୋଖତ ଚାନ୍ଦାଆଦାୟକାରୀଙ୍କୁ ଦେଖିଥିଲି ସେ ନଗରରେ ଅନ୍ୟୁନ ହଜାରେ ଘରଥିବା ମାଲିକ ମିଶାଇ ଦୁଇ ହଜାର ପରିବାର ଚାନ୍ଦା ଦେଇଥିବେ । ହାରାହାରି ପାଞ୍ଚଟଙ୍କା ହେଲେ ଏହି ଦୁଇଜଣ ଭଦ୍ରଲୋକ କେତେ ଟଙ୍କା ପୂଜାଫଣ୍ଡରୁ ମାରିବେ ତାହା ପାଠକେ ହିସାବ କରନ୍ତୁ । ପୂଜା ପାଣ୍ଠିରେ ଯାହା ମୁଣ୍ଡାରସିଦ ଅନୁସାରେ ଦାଖଲ ହେବ ତା'ର ହିସାବ କ'ଣ ଦାତା ଦେଖନ୍ତି ? ସେଥିରୁ ଭାଉଚର କରି ବର୍ତ୍ତମାନ କେତେ ଉଠେଇବେ ତା'ର ହିସାବ କିଏ ପାଇବ ।

ସେମାନେ ଯିବାପରେ ବୁଝିଲି ସେମାନେ ପଦସ୍ଥ ସରକାରୀ ଚାକିରୀରୁ କେତେ ବର୍ଷ ହେଲା ଅବସର ଗ୍ରହଣ କରି ଦେହମନ ସୁସ୍ଥ ରଖିବା ଉଦ୍ଦେଶ୍ୟରେ ସାଧାରଣ କାମରେ ନିଜମାନଙ୍କୁ ନିୟୋଜିତ କରିଛନ୍ତି ।

(ତା୨୪.୦୯.୧୯୮୪ରିଖ)





Digitized by srujanika@gmail.com

# ଚିନିର ବହଳତଳେ କୁଇନାଇନ

'ପ୍ରଗତିବାଦୀ'ର ପାଠକଗୋଷ୍ଠୀ ଖୁବ୍ ସଚେତନ ବୋଲି ଜଣାପଡୁଛି । ଏବେ କେତେକ ପାଠକ ସମ୍ପାଦକଙ୍କୁ ଆମମାନଙ୍କ ପରି ଲେଖକ ମାନଙ୍କ ସମ୍ପର୍କରେ ଅଭିଯୋଗ କରିଛନ୍ତି ଯେ ଆମ 'ଲେଖାଗୁଡ଼ିକରେ କୌଣସି ସୂଚନା ମିଳୁନାହିଁ ।' ଆଭିମୁଖ୍ୟ ନଥିବାରୁ ଆମ ଲେଖାଗୁଡା 'ସାଧାରଣ ପାଠକମାନଙ୍କ ଉପରେ କିଛି ହେଲେ ପ୍ରଭାବ ପକାଇ ପାରିବ ନାହିଁ ।' ତେଣୁ ଏହି ପାଠକମାନେ ସମ୍ପାଦକଙ୍କ ଜରିଆରେ ଆମମାନଙ୍କୁ ଅନୁରୋଧ କରିଛନ୍ତି ଯେ ଆମେମାନେ 'ଯେ କୌଣସି ଏକ ସମସ୍ୟା ଉପରେ ନିଜର ମତାମତ ଦେଇ ପ୍ରବନ୍ଧ ରଚନା' କରିବା ଉଚିତ୍ । ତାହା ହେଲେ ଆମ ଲେଖାଗୁଡା 'ପାଠକ ମାନଙ୍କର ଦୃଷ୍ଟି ଆକର୍ଷଣ କରିବା ସଂଗେ ସଂଗେ ସେମାନଙ୍କ ମଧରେ ସଚେତନତା ସୃଷ୍ଟିକରିବ ।' ତାହାଛଡା ଏହି ପାଠକମାନେ ମନ୍ତବ୍ୟ ଦେଇଛନ୍ତି ଯେ, 'ଲକ୍ଷ୍ୟହୀନ ତଥା ଉଦ୍ଦେଶ୍ୟହୀନ ଲେଖା ଲେଖିବା ଦ୍ୱାରା ବା ପ୍ରକାଶ କରିବା ଦ୍ୱାରା ସମାଜର କିଛି ହେଲେ ମଙ୍ଗଳ ସାଧନ ହୋଇ ପାରିବ ନାହିଁ ।' ଏହା ଛଡା ଆଉ କେତେ ମନ୍ତବ୍ୟ ଓ ଉପଦେଶ ପରାମର୍ଶ ଆମକୁ ଓ ସମ୍ପାଦକଙ୍କୁ ଏହି ପାଠକମାନଙ୍କର 'ସମ୍ପାଦକଙ୍କୁ ପତ୍ରରେ ଗତ ୧୨।୧।୮୪ ତାରିଖରେ 'ପ୍ରଗତିବାଦୀ'ରେ ପ୍ରକାଶିତ ହୋଇଛି ।

ଭଲ ଲାଗିଲା ଯେ, 'ପ୍ରଗତିବାଦୀ'ର ଏମିତି ସଚେତନ ପାଠକ ଅଛନ୍ତି ଯେଉଁମାନେ 'ସମ୍ପାଦକଙ୍କୁ ପତ୍ର' ଲେଖି ପ୍ରକାଶିତ ଲେଖାର ବିଷୟ ବସ୍ତୁ ଉପରେ ଆଲୋଚନା କରୁଛନ୍ତି । ଓଡିଶାରେ ସମ୍ପାଦକଙ୍କୁ ପତ୍ର ଲେଖି କେଉଁଠି ବସ ଚାଲିଲା ନାହିଁ, କେଉଁଠି କାହାକୁ ଦେଢ ବର୍ଷ ହେଲା ଦରମା ମିଳିନାହିଁ, କେଉଁଠି ଗାଁର ବିରୋଧୀ ସ୍କୁଲ ଶିକ୍ଷକ 'କେଆର' ସଂସ୍ଥା ଦ୍ୱାରା ପ୍ରଦତ୍ତ ଦୁଧଗୁଣ୍ଡ ବିକ୍ରି କରି ଦେଉଛନ୍ତି ବା କେଉଁଠି କେଉଁ ଗଳିରେ ରାସ୍ତା ଆଲୁଅ ଜଳୁନାହିଁ ଆଦି ବିଷୟରେ ଅଭିଯୋଗ ଜଣାନ୍ତି ।

ଯେଉଁ ପ୍ରକାର ଲେଖାଗୁଡିକ ବିଷୟରେ ସଂପୃକ୍ତ ପାଠକମାନେ ଏଠାରେ ଅବତାରଣା କରିଛନ୍ତି ସେ ଲେଖାଗୁଡିକୁ ପଢି ସେଥିରୁ ଆଭିମୁଖ୍ୟ ବାହାର କରିବା ପାଇଁ ଯେତିକି କଷ୍ଟ କରିବା ଦରକାର ତାହା ବୋଧେ ପାଠକମାନେ କରୁନାହାନ୍ତି । ତା ପରେ ସବୁ ଲେଖାର ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ଖୋଜି ତାହା ସାଧାରଣ ପାଠକ ଉପରେ ପ୍ରଭାବ ପକାଇବା ଭଳି ହେବ ଏବଂ କୌଣସି ଏକ ସମସ୍ୟା ଉପରେ ପ୍ରବନ୍ଧ ରଚନା କରି ତାହା ସମାଜର ମଙ୍ଗଳ ସାଧନ ନିମିତ୍ତ ଉଦ୍ଦିଷ୍ଟ ହେବ ଏହା ସଂପୃକ୍ତ ପାଠକମାନଙ୍କର ବରାଦ ।

ସାଧାରଣ ଲୋକଙ୍କ ଜୀବନରେ ଯାହାସବୁ ସାଧାରଣ ଘଟଣା ଘଟୁଛି ତାହାକୁ ଆଧାର କରି ଏ ଲେଖା ଗୁଡିକ ଲେଖାଯାଉଛି । ଶ୍ରୀ ଅନୁପମ, ମୃଣାଳ ଚାଟାର୍ଜୀ ଓ ଚକ୍ରଧର ମହାନ୍ତ ପ୍ରଭୃତି ଯେଉଁ ସବୁ ଅନୁଶୀଳନ ମୂଳକ ଲେଖା ଜୀବନର ନିତିଦିନିଆ ନାକତଳ ବିଷୟକୁ ନେଇ ଲେଖୁଛନ୍ତି ସେଥିରେ ଆଭିମୁଖ୍ୟ ରହିନାହିଁ ବୋଲି ସିନା ସାଧାରଣ ପାଠକ କହିବେ । କିନ୍ତୁ ଯେଉଁମାନଙ୍କ ଚମଡା ତଳ ଭେଦ କରି ସବୁ କଥାକୁ ସମୀକ୍ଷା କରିବାର ଶକ୍ତି ରହିଛି ସେପରି ଅସାଧାରଣ କିମ୍ବା ଅଣ ସାଧାରଣ ପାଠକମାନେ ସେମିତି ଭାବିଲେ ଆମକୁ କଷ୍ଟ ଲାଗୁଛି ।

ସମାଜକୁ ସବୁବେଳେ ଶିକ୍ଷା ଦେବା, ପରାମର୍ଶ ଓ ଉପଦେଶ ଦେବାପାଇଁ ଆମେ ବେତବାଡି ଧରି ରହିନାହୁଁ । ହାସ୍ୟରସ ସହିତ ଟିକେ ଉପହାସ, ପରିହାସ ଓ ଅଟ୍ଟହାସ୍ୟର ସହିତ ପାଠକଙ୍କୁ ଛୋଟିଆ



Digitized by srujanika@gmail.com

[illegible] ସେହି [illegible] । ପାଠକ ମାନେ ସେଥିରୁ [illegible]
କଥା ପାଉଛନ୍ତି ଯାହା ସବୁଦିନେ ସେମାନେ ଦେଖୁଛନ୍ତି ଓ ତାଙ୍କ ନିଜ ଜୀବନରେ ଘଟୁଛି । ଆମର ସଚେତନ ପାଠକ ମାନେ ଧାଡି ମଝିରେ (Between the lines) ଥିବା ଗୁଢ ମର୍ମଟିକୁ ଧରିବାକୁ ଚେଷ୍ଟା କଲେ ସେମାନେ ଯାହାସବୁ ଚାହୁଁଛନ୍ତି ସେଥିରୁ ମିଳିବ । ସେଥିରେ ସମାଜର ମ୍ୟାଲେରିଆ ନିପାତ କରିବାକୁ କୁଇନାଇନ ଅଛି । କେବଳ ପାଟିକୁ ପିତା ଲାଗିବ ବୋଲି ଉପରେ ଚିନିର ବହଳ ଦିଆଯାଇଛି ।

(ତା୧୬.୦୧.୧୯୮୪ରିଖ)



# ଆଧୁନିକ ଭଦ୍ରତା

ଏବେ ଦିନକର କଥା । ଭୁବନେଶ୍ୱରରୁ କଟକ ଯାଉଥିଲି । ରୂପାଲି ଛକ ପାଖରେ ଗୋଟିଏ ମିନିବସରେ ଉଠିଲି । ମୋ ସହିତ ଆଉ କେତେଜଣ ଭଦ୍ରଲୋକ ଓ ଦୁଇଜଣ ମହିଳା ଉଠିଲେ । ଜଣେ ମହିଳାଙ୍କ ସହିତ ଥିବା ଭଦ୍ରଲୋକଜଣକ ବସରେ ଉଠିଲା ପୂର୍ବରୁ କଣ୍ଡକ୍ଟରଙ୍କୁ ପଚାରିଲେ 'ଲେଡିଜ ସିଟ ଅଛି ?' କଣ୍ଡକ୍ଟର ହଁ ଭରିଲାରୁ ସେ ଉଠିଲେ ।

ବସ ଭିତରେ ଆଉ ଜଣେ ମହିଳା ଛୁଆଟିଏ କାଖେଇ ଠିଆ ହେଇଥିଲେ । ଗୋଟିଏ ମହିଳା ଚିହ୍ନିତ ସିଟରେ ଦୁଇଜଣ ମହିଳା ବସିଥିଲେ । ଅନ୍ୟଟିରେ ଦୁଇଜଣ ଶିକ୍ଷିତ ଜଣାପଡୁଥିବା ପ୍ୟାଣ୍ଟପିନ୍ଧା ଯୁବକ ବସିଥିଲେ । କଣ୍ଡକ୍ଟର ସେମାନଙ୍କୁ ଅନୁରୋଧ କଲେ ମହିଳା ସିଟଟି ଛାଡି ଦେବାପାଇଁ । ସେମାନେ କଣ୍ଡକ୍ଟରକୁ ବସଟିକେଟ ଦେଖାଇ କହିଲେ ଯେ, 'ଆମେ କଣ ପଇସା ଦେଇନୁ ?'

କଣ୍ଡକ୍ଟର କହିଲେ ଯେ ମୁଁ ମୂଳରୁ କହିଛି 'ଆପଣ ସେଠାରେ ବସନ୍ତୁ ନାହିଁ । ଲେଡିଜ ଆସିଲେ ଉଠିବାକୁ ପଡିବ ।' ଯୁବକ ଦୁଇଜଣ ଉଠିଲେ ନାହିଁ ।

ବରଂ ପଛରୁ ଆଉ ଜଣେ ପ୍ରାପ୍ତ ବୟସ୍କ ପ୍ରୌଢ ଯିଏକି ବସିବାକୁ ଜାଗା ନପାଇ ଠିଆ ହୋଇଥିଲେ, ପାଟିକରି କଣ୍ଡକ୍ଟର ସହିତ ତର୍କ କରିବା ଆରମ୍ଭ କଲେ । କିହୋ ସେମାନେ କଣ ପଇସା ଦେଉନାହାନ୍ତି ? ଲେଡିଜ କଣ କୁଆଡୁ ଆସିଲେ । ଇତ୍ୟାଦି ।

ତଥାପି କଣ୍ଡକ୍ଟର ସେମାନଙ୍କୁ ଅନୁରୋଧ କରୁଥିଲା ଯେ, ସେମାନେ ଯେଉଁ ସିଟ୍‌ରେ ବସିଛନ୍ତି ତାହା ମହିଳାମାନଙ୍କ ପାଇଁ ସୁରକ୍ଷିତ । 'ମହିଳା' ବୋଲି ଲେଖାଯାଇଛି ମଧ ।

ଶେଷରେ ଦୁଇଜଣଙ୍କ ମଧ୍ୟରୁ ଜଣେ ଯୁବକ କହିଲେ 'ଆଚ୍ଛା ଏ ଟିକଟରୁ କିଛି ପଇସା ଯଦି କାଟିଦେବ ତେବେ ଆମେ ଠିଆ ହୋଇପଡିବା ।'

ବସରେ ଠିଆହୋଇ ଯାଉଥିବା ଜଣେ ଭଦ୍ରଲୋକ ଏକଥାର ଉତ୍ତର ଦେବାକୁ ଯାଇ ଯୁବକଙ୍କୁ ପଚାରିଲେ । 'ଆମେ ସବୁ ଯିଏ ଠିଆ ହୋଇଯାଉଛୁ କ'ଣ କମ୍ ପଇସା ଦେଇଛୁ ?'

ଯୁବକ ଜଣକ କଡା ଉତ୍ତର ଦେଲେ 'ମୁଁ ଆପଣଙ୍କୁ କିଛି କହିନି, ଚୁପ ରହନ୍ତୁ ।'

ଭଦ୍ରଲୋକ ଜଣକ ଉଚ୍ଚବାଚ କରିବାକୁ ଉଦ୍ୟତ ହେଉଥିଲେ । ଠିଆ ହେଉଥିବା ଭଦ୍ରମହିଳା ମାନଙ୍କ ମଧ୍ୟରୁ ଜଣେ ତାଙ୍କୁ ବାରଣ କରି କହିଲେ 'ଥାଉ ଆଜ୍ଞା । ଆମେ ଠିଆହୋଇ ଚାଲିଯିବୁ ।'

(ତା୨୧.୦୮.୧୯୮୭ରିଖ)





Digitized by srujanika@gmail.com

# କଥାଟିଏ କହୁଁ

ରାଜଧାନୀର ଗୋଟିଏ ଛୋଟିଆ ହୋଟେଲରେ ଉତ୍କଳବିଶ୍ୱବିଦ୍ୟାଳୟର ଜଣେ ଷଷ୍ଠ ବାର୍ଷିକ ଶ୍ରେଣୀର ଛାତ୍ର ଖାଉଥିଲେ । ଆଉ କେତେଗୁଡିଏ ଛାତ୍ର ଖାଇସାରି ଖାଇବାଜିନିଷ ଖରାପ ଇତ୍ୟାଦି ଅଭିଯୋଗ କରି ଦୋକାନୀ ସହିତ ଝଗଡା କରୁଥିଲେ । ହୋଟେଲବାଲା ଏହି ଝଗଡାବାଜ ଛାତ୍ରମାନଙ୍କୁ ସ୍ଥାନୀୟ 'ଦାଦା' ଭାବରେ ଜାଣେ ବୋଲି ବଚସାରେ ବେଶୀ ବାଟ ଆଗେଇ ପାରୁ ନଥିଲା । କାରଣ ହଠାତ୍ ଗାଳି ସାଙ୍ଗକୁ ମାଡ ଓ ତା'ପଛକୁ ଭଙ୍ଗାରୁଜା କାମ ଘଟିବ । ତା'କୁତ ଦୋକାନ ଚଳାଇବାକୁ ପଡିବ । ଛାତ୍ରମାନଙ୍କର ଅସଲ ଉଦ୍ଦେଶ୍ୟ ପଇସା ନଦେବା କିମ୍ବା ହୁଏତ କମ ପଇସା ଦେବା ।

ବଚସା ଭିତରେ ହଠାତ୍ 'ଦାଦା'ମାନଙ୍କ ଭିତରେ ଜଣେ କିଏ ଗିଲାସେ ପାଣି ଦୋକାନୀ ମୁହଁକୁ ଛାଟି ଦେଲା । ଦୋକାନୀ ଛଟା ପାଣିରୁ କିଛି ଅଂଶ ବାଣୀବିହାର ଛାତ୍ରଜଣକ ଦେହରେ ପଡିଲା । ସେ ପ୍ରତିବାଦ କଲାରୁ 'ଦାଦା'ମାନେ କହିଲେ '' ହ, ହ ବେଶୀ ବକ୍ ବକ୍ କରନା । ବାଜିବ ଦି'ଟା । ଥଣ୍ଡା ହୋଇଯିବୁ ।''

ସିନିୟର ଛାତ୍ର କହିଲେ 'ତମେ ସବୁ କୋଉଠି ପଢିଛ ?'

'କାହିଁକି ? ବି.ଜେ.ବିରେ । କ'ଣ କରିବୁ ?'' ଉତ୍ତର ମିଳିଲା ।

''ନାଇଁ, ମୋର ଦିଟା ଭାଇ ବି ସେଠି ପଢୁଛନ୍ତି ।''

'' ଓହୋ ! କ'ଣ ଆମକୁ ପିଟେଇ ବୁ ନା କଣ ?''

''ନାଇଁ, କହୁଥିଲି କ'ଣକି ମୋ ସାନ ଭାଇମାନେ ମଧ୍ୟ ତୁମମାନଙ୍କ ସାଙ୍ଗରେ ପଢୁଛନ୍ତି ।''

''କ'ଣ ହେଲା ସେଥୁ ?''

''କିଛି ନାହିଁ'' କହି ସିନିୟର ଛାତ୍ର ହୋଟେଲ ବାଲାକୁ ପଇସା ଦେଇ ବାହାରକୁ ଆସିଲେ ।

ତା'ର କିଛି ଦିନ ପରେ ଦିନେ ସିନିୟର ଛାତ୍ରଜଣକ ରାସ୍ତାରେ ଯାଉଥିଲେ । ଗୋଟାଏ ରାସ୍ତାର କଲଭର୍ଟ ଉପରେ ସେହି 'ଦାଦା'ମାନେ ବସିଥିଲେ । ସିନିୟର ଛାତ୍ର ପଛରୁ ଶୁଣିଲେ 'ହେ, ହେ, କୁଆଡେ ଯାଉଛୁ ?' ସେ ନଶୁଣିଲା ପରି ଆଗକୁ ଚାଲିଲେ । 'ଆବେ କୁଆଡେ ଯାଉଛୁ ?' ପୁଣି ଡାକ ଶୁଭିଲା । ବାଧ୍ୟ ହୋଇ ପଛକୁ ମୁହ ଫେରାଇ ସେ ଟିକେ ଚାହିଁ ପୁଣି ଚାଲିଲେ ।

'ଆବେ ତତେ ଡକା ହେଉଛି । ଅନେଇ ଦେଇ ଚାଲିଯାଉଛୁ କ'ଣ ?

ସିନିୟର ଛାତ୍ର ବାଧ୍ୟ ହୋଇ ସେମାନଙ୍କ ପାଖକୁ ଫେରିଲେ । 'କ'ଣ କହୁଚ ?' ପଚାରିଲାବେଳକୁ ଦେଖିଲେ ତାଙ୍କର ଦୁଇଭାଇ ମଧ୍ୟ ସେଇ ଦଳରେ ଅଛନ୍ତି । ବଡ ଭାଇକୁ ଦେଖି ସାନଭାଇ ଦୁଇଜଣ ସାମାନ୍ୟ ଇତସ୍ତତଃ ହୋଇ ନିଜ ସାଙ୍ଗମାନଙ୍କୁ କହିଲେ 'ଆବେ ସେ ଆମ ଭାଇ ପରା । ତାକୁ କେମିତି କ'ଣ କହୁଚ ?'

'ଦାଦା'ମାନେ କହିଲେ 'ହଉ ଭାଇ ଯା-ଯା । ଆମେ ଜାଣିନଥିଲୁ ।' କଥାଟି ସରିଲା ।

(ତା୦୭.୦୯.୧୯୮୧ରିଖ)





Digitized by srujanika@gmail.com

# ରସନା, ରସାୟନ ଓ ରୋଷେଇ

ଗୋଟିଏ ବିଷୟରେ ବେଶ କିଛି ଜ୍ଞାନ ଅର୍ଜନ କଲେ ସେମାନଙ୍କୁ ସାଧାରଣତଃ ବିଶାରଦ ବା ଏକ୍ସପର୍ଟ କୁହାଯାଏ । ଏହି ପ୍ରକାର ବିଶାରଦମାନେ ଉଚ୍ଚଶିକ୍ଷା କ୍ଷେତ୍ରରେ ଅଧ୍ୟାପକ କିମ୍ବା ଗବେଷକ ହୁଅନ୍ତି । ମୋର ଜଣେ ବନ୍ଧୁ ଅଧ୍ୟାପକ ତାଙ୍କ ରସାୟନ ବିଦ୍ୟାଛଡା ଆହୁରି ଅନେକ କାମରେ ବିଶାରଦ ନ ହେଲେ ବି ପାଖାପାଖି ସେଇଆ । ଭାରି ମାଛ ଖାଇବା ପ୍ରିୟ । ତେଣୁ ବନିସି ପକାନ୍ତି । ଖାଇବା ପ୍ରିୟ । ତେଣୁ ନିଜ ଘର ପଛଆଡେ ରୋଷେଇ ବଗିଚାରେ ଭଲ ଚାଷ କରି ପରିବା ଫଳାନ୍ତି । ଫୁଲର ସଉକ ଅଛି ତେଣୁ ତାଙ୍କ ବଗିଚାରେ ଭଲ ଫୁଲ ଫୁଟେ । ସବୁ ଖାଇବା ପ୍ରିୟ ଲୋକ ଭଲ ରୋଷେଇ ଜାଣନ୍ତିନି । କେତେକେତ ଟା କରି ଜାଣନ୍ତିନି ।

ଆମ ବନ୍ଧୁ ଅଧ୍ୟାପକ ତାଙ୍କ ବିଦ୍ୟାରେ ଫାଷ୍ଟ । ରୋଷେଇରେ ବି ଫାଷ୍ଟ । ନିଜ ପାଠଟି ଛଡା ଅନ୍ୟ କଥା ଜାଣିଥିଲେ ଜୀବନରେ କେମିତି କାମରେ ଲାଗେ ଶୁଣନ୍ତୁ ।

ଅଧ୍ୟାପକଙ୍କ ସ୍କୁଟର ଥରେ ଶନିବାର ସଂଧ୍ୟା ବେଳେ ଖରାପ ହେଲା । ସ୍କୁଟର ମେକାନିକ ପାଖକୁ ନେଲା ବେଳକୁ ସେ ଆଗରୁ ଆଉ ଗୋଟିଏ ଦୁଇଟି କାମ ଧରିଛି । ସେ କାମ ସାରୁ ସାରୁ ରାତି ସାଢ଼େ ଆଠ । ଅଧ୍ୟାପକଙ୍କ ସ୍କୁଟରର ନମ୍ବର ଆସିଲା ନ'ଟା ବେଳେ । ମେକାନିକ ରାଜି ହେଲାନି କାରଣ ମରାମତି କାମ ଦେଢ଼ ଦୁଇ ଘଣ୍ଟାରୁ କମ ଲାଗିବନି । କହିଲା ବାବୁ '' କାଲି ରବିବାର ଦୋକାନ ବନ୍ଦ । ପ'ରି ଦିନ ସକାଳୁ କରିଦେବି ।''

ଅଧ୍ୟାପକ ବଡ ନେହୁରା ହୋଇ କହିଲେ ଯେ ସେ କାଲି ରବିବାର ଗାଁକୁ ଯିବେ । ସ୍କୁଟରଟି ମରାମତି କରିନଦେଲେ ସେ ବଡ ହଇରାଣ ହେବେ । ମେକାନିକର ସମସ୍ୟା ହେଲା ସେ ଯଦି ସ୍କୁଟର ମରାମତି କରିବ ତେବେ ତାହା ସାରି ରୋଷେଇ କରି ଖାଇଲା ବେଳକୁ ରାତି ସାଢେ ବାରଟା ବାଜିବ । ଅଧ୍ୟାପକ କହିଲେ 'ତୁମେ ସ୍କୁଟର ମରାମତି କର । ମୁଁ ତୁମର ରୋଷେଇ କରିଦେବି । ମତେ ଭଲ ରୋଷେଇ ଆସେ ।'

ସ୍କୁଟର ବାଲା ଅପ୍ରତିଭ ହୋଇ କହିଲା 'ନାହିଁ ଆଜ୍ଞା, ଆପଣ କଣ ଆମ ଗରିବ ମାନିଆ ରୋଷେଇ ଜାଣିବେ । ଆପଣ କେମିତି ରୋଷେଇ କରିବେ ? ସେ କଥା ହବନି ।'

ଅଧ୍ୟାପକ ଜବରଦସ୍ତି ତା ଚାଳିଆ ଭିତରପଟ ଘରକୁ ପଶିଯାଇ ବାସନକୁସନରେ ହାତ ଦେଲେ । ପ୍ୟାଣ୍ଟ ସାର୍ଟ ଓହ୍ଲେଇ ଦେଇ ଅଣ୍ଡର ପ୍ୟାଣ୍ଟରେ ଚୁଲି ଲଗେଇବାକୁ ବସି ପଡିଲେ । ମେକାନିକକୁ କହିଲେ ତମର କଣ ରୋଷେଇ ହେବ ମତେ ସରଞ୍ଜାମ ଯୋଗେଇ ଦିଅ । ମେକାନିକ ବଡ ଅଡୁଆରେ ପଡି ପ୍ରଥମେ ଅଧ୍ୟାପକଙ୍କ ହାତରୁ ଜିନିଷ ଛଡେଇଲା । ପରେ ହତାଶ ହୋଇ ଜିନିଷ ଯୋଗେଇ ଦେଲା । ଅଧ୍ୟାପକ ରୋଷେଇରେ ଲାଗି ପଡିଲେ । କାର୍ତ୍ତିକ ମାସ ପ୍ରଥମ ସପ୍ତାହରେ କୋବି ଦର ଯାହା ହୁଏ ଆପଣ ଜାଣନ୍ତି । ବିଲାତି ବାଇଗଣ ମଧ । ଏତେଟିକେ ପାଏ ହେବକି ନାହିଁ କୋବିର ଦାମ ତିନିଟଙ୍କା ପଚାଶ ପଇସା । ପରିବା ପାଚିଆରେ ଦୁଇଟି କୋବି ଓ ପ୍ରାୟ ତିନିଶ ଗ୍ରାମ ବିଲାତି ବାଇଗଣ । ବିଲାତି ବାଇଗଣ ଦାମ କିଲୋ ଆଠଟଙ୍କା ।

ଅଧ୍ୟାପକ ରୋଷେଇ କଲାବେଳେ ଭାବୁଥିଲେ ସେ ମାର୍କେଟ ଗଲାବେଳେ କୋବି ଆଉ ବିଲାତି ବାଇଗଣ ଆଡେ ଅନାନ୍ତିନି, ସେଥିରେ ହାତ ଦେବା ତ ଦୂର କଥା । ତାଙ୍କ ଅଢ଼େଇ ହଜାରରୁ ଅଧିକ ଦରମା ମାସର ଆଠ ତାରିଖ ବେଳକୁ ବାକି ଶୁଝିଲା ବେଳକୁ ଆଉ ମାସିକିଆ ସଉଦା ଆଣିଲା ପରେ ତିନିଶ ଟଙ୍କାକୁ ଖସିଆସେ ।



Digitized by srujanika@gmail.com

[illegible] ଷ୍ଟୋଭର ଶେଷ । ଅଧ୍ୟାପକ ଟିକେ [illegible]
କଥା ଜାଣିଲା ଭଳି କହିଲା "ସାର୍, ଟିକେ ତରକାରୀ ଚାଖୁନାହାନ୍ତି ?'' ଏହା କହି ମେକାନିକ ହାତଧୋଇ ତରକାରୀ ବାଢ଼ି ଦେଲା । ଅଧ୍ୟାପକ ନିଜର ରାନ୍ଧଣା ସମ୍ପର୍କରେ ନିଜକୁ ମନେ ମନେ ତାରିଫ କରୁଥିଲେ । ମେକାନିକ ନେଲା ତିରିଶ ଟଙ୍କା ।

(ତା୨୨.୧୦.୧୯୮୪ରିଖ)



# ଗଣ୍ଡଗୋଳ ଓ କମିଶନ

ଦେଶରେ ଏବେ ବିଭିନ୍ନ ସ୍ଥାନରେ ହିଂସାକାଣ୍ଡ ଘଟୁଛି । ଫଳରେ ପୋଲିସ ହସ୍ତକ୍ଷେପରୁ ଗୁଳିଚାଳନା କିମ୍ବା ଲାଠିଚାଳନା ହେଉଛି । ଏହିପରି ଗୋଟିଏ ସମ୍ବାଦକୁ ଖୁବ ଅଗ୍ରାଧିକାର ଦିଆଯାଇ ସମ୍ବାଦ ପତ୍ରରେ ପ୍ରକାଶିତ ହୋଇଥିଲା । ମୁଁ ମୋର ଜଣେ ବଂଧୁଙ୍କୁ ଏହି ସମ୍ବାଦ ପତ୍ର ପ୍ରତି ଦୃଷ୍ଟି ଆକର୍ଷଣ କରାଇଲି । ଏତେ ଲୋକ ମରିଯାଇଛନ୍ତି ଏବଂ ସୈନ୍ୟ ବାହିନୀକୁ ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ଡକାଗଲାଣି ।

ବନ୍ଧୁ ଜଣକ ଅତି ସହଜରେ ଉତ୍ତର ଦେଲେ ଯେ, କାଲି ସମ୍ବାଦ ପତ୍ରରେ ତୁମେ ଦେଖିବ 'ଚରଣ ସିଂହ ସଂପୃକ୍ତ ଘଟଣା ଉପରେ ଏକ ତଦନ୍ତ କମିଶନ ଦାବି କରିଛନ୍ତି ' । ସରକାରଙ୍କ ପକ୍ଷରୁ ପ୍ରଥମେ ତଦନ୍ତ କମିଶନ ବସିବାର କୌଣସି ଆବଶ୍ୟକତା ନାହିଁ ବୋଲି କୁହାଯାଇ ପରେ ବସାଯିବ ।

ବାସ୍ତବରେ ଦେଶରେ ଯେତେ ସଂଖ୍ୟାରେ ଗଣ୍ଡଗୋଳ ଘଟୁଛି ସେଥିରେ କମିଶନ ବସାଇବା ପାଇଁ ଅବସରପ୍ରାପ୍ତ ହାଇକୋର୍ଟ ବିଚାରପତି ମଧ୍ୟ ଅଭାବ ପଡିଯିବାର ସମ୍ଭାବନା ରହିଛି ବୋଲି ବନ୍ଧୁ ଜଣକ ହସି ହସି କହିଥିଲେ ।

ମୁଁ ତାଙ୍କୁ କହିଲି ଯେ ତୁମେ ଏଟା ବଡ ହାଲକା ଭାବରେ ନେଉଛ କିପରି ? ତୁମର ଦେଶ ପ୍ରୀତି ନାହିଁ ।

ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ 'କାହାର ଅଛି' ? ବର୍ତ୍ତମାନର ପ୍ରଧାନମନ୍ତ୍ରୀ ବିରୋଧୀ ଦଳରେ ଥିଲାବେଳେ ସହଯୋଗର କଥା କହୁ ନଥିଲେ । ଏବେ ପୁଣି ଯେଉଁମାନେ ବିରୋଧୀ ଦଳରେ ରହି କମିଶନ ଦାବି କରୁଛନ୍ତି ସେମାନେ ସରକାରରେ ଥିବା ସମୟରେ କଣ କରିଛନ୍ତି ?

ମୁଁ ଦେଖିଲି କଥାଟି ବାସ୍ତବରେ ହାଲକା ଭାବରେ ହେବା ଦରକାର । କାରଣ ଏସବୁ ବିଷୟରେ ଚିନ୍ତା କରି କିଛି ଲାଭ ନାହିଁ । ଅବସର ପ୍ରାପ୍ତ ବିଚାରପତିମାନଙ୍କ ପାଇଁ ନିଯୁକ୍ତି ସୁବିଧା ସୃଷ୍ଟି ହେବା ସଂଗେ ସଂଗେ କମିଶନ ବହୁ ଓକିଲ ଓ ଅନ୍ୟ ବ୍ୟକ୍ତିମାନଙ୍କୁ ମଧ୍ୟ ନିଯୁକ୍ତି ଦେଉଛି । ନହେଲେ ଏଗୁଡାକ ଯେ ବେକାର ରହନ୍ତେ ।

ପ୍ରତି ଗଣ୍ଡଗୋଳ ପରେ ଗୋଟିଏ ତଦନ୍ତ କମିଶନ ବସାଇ ପୁଣି ରିପୋର୍ଟ ମିଳିବା ପରେ ତାହାକୁ ଭୁଲିଯିବା ତ ଜାତୀୟ ଅଭ୍ୟାସରେ ପରିଣତ ହେଲାଣି । ଏଣୁ କମିଶନ ରିପୋର୍ଟକୁ ସମ୍ବାଦପତ୍ରମାନେ ମଧ୍ୟ ଗୁରୁତ୍ୱ ଦେଉନାହାନ୍ତି । ହିଂସାକାଣ୍ଡ ଯେପରି ପ୍ରଥମ ପୃଷ୍ଠାରେ ବାହାରୁଛି ୬ ମାସ ପରେ କମିଶନ ରିପୋର୍ଟ ଠିକ୍ ସେହିପରି ଭିତର ପୃଷ୍ଠାରେ କୁଆଡେ ଲୁଚି ଯାଉଛି ।

(ତା୧୮.୦୮.୧୯୮୭ରିଖ)





Digitized by srujanika@gmail.com

# ମନ୍ତ୍ରୀଙ୍କ ଅର୍ଗଳି ସଂକଟ

ଏହି ଆମ ବାପୁଜୀନଗର କଥା । ସେଦିନ ଆମେ ରିକ୍ସାରେ ରାମକୃଷ୍ଣ ମିଶନ ପାଖରେ ରହୁଥିବା ଜଣେ ବନ୍ଧୁଘରକୁ ଯାଉଥିଲୁ । ବାଟରେ ରେଳ ଲେଭଲ କ୍ରସିଂ । ଲେଭଲ କ୍ରସିଂ ଗେଟ୍‌ଟି ପଡ଼ିଥିଲା । ଉଭୟ ପଟରେ ଟ୍ରକ, କାର, ସ୍କୁଟର, ରିକ୍ସା, ସାଇକେଲ ଓ ପଥଚାରୀ ।

ରେଳଗାଡ଼ିଟିଏ ପାସ କରି ଚାଲିଗଲା । ଗେଟ୍ ଉଠିଲା । ଦି'ପଟର ଗେଟ୍ ବାଡ ଦଣ୍ଡା ଏକାବେଳକେ ଉଠେ । ଗେଟ୍ ଦଣ୍ଡା ଦୁଇଟା ଅଳ୍ପ ଉଠି ରହିଗଲା । ଆଉ ଉଠିଲାନି । ବୋଧେ ଗେଟ ଲିଭର କିଛି ଖରାପ ହୋଇଗଲା । ଯେତିକି ଉଠିଥିଲା ସେଥିରେ ଉଭୟ ପଟରୁ କିଛି ସାଇକେଲ ଚଢ଼ାଳୀ, ଗୋଟାଏ ଦୁଇଟା ରିକ୍ସାବାଲା, ଜଣେ ସ୍କୁଟରବାଲା ଲାଇନ ଉପରକୁ ପଶିଗଲେ । ଗେଟ୍ ବାଡ଼ା କିନ୍ତୁ ଆଉ ଉଠିଲାନି ।

ଦେଖିଲା ବେଳକୁ ସେପଟେ ଗୋଟାଏ ମନ୍ତ୍ରୀଙ୍କ ଗାଡ଼ି । ଉପରେ ନାଲି ଆଲୁଅର ଡୁମ୍ । ସାମ୍ନାରେ ଜାତୀୟ ପତାକା । ମନ୍ତ୍ରୀଙ୍କ ଗାଡିରୁ ବୋଧେ କିଏ ଓହ୍ଲାଇ ରେଳ କର୍ମଚାରୀଙ୍କୁ ଗେଟ୍ ଉଠାଇବାକୁ ସଙ୍କେତ ଦେଲେ । ଲେଭଲ କ୍ରସିଂରେ ଥିବା ରେଳ କର୍ମଚାରୀ ଓ ରିକ୍ସାବାଲା ମାନେ ଲାଗିପଡ଼ିଲେ ହାତରେ ଗେଟ୍‌ବାଡାକୁ ଟେକିଲେ । ସେହି ଅଧା ଟେକା ଗେଟ୍ ଭିତରେ ମନ୍ତ୍ରୀଙ୍କ ଗାଡି ସେ ପଟରୁ ଲେଭଲ କ୍ରସିଂର ଲାଇନ ଉପରକୁ ପଶିଆସିଲା । ଗାଡ଼ିଟି ପଶିଆସିବା ପରେ ଗେଟ୍‌ଟା ପୁଣି ବେଶୀ ଅମାନିଆ ହୋଇ ତଳକୁ ଖସିଲା । ରେଳଲାଇନ ଉପରେ ମନ୍ତ୍ରୀଙ୍କ ଗାଡି । ଏପଟର ଗେଟ୍ ଉଠୁନାହିଁ । ଏପରି ହେଲା ଯେ ଗେଟ୍‌ଟା ପୁଣି ପୁରା ପଡ଼ିଗଲା । ମନ୍ତ୍ରୀଙ୍କ ଗାଡି ଦୁଇବାଡା ମଝିରେ ରେଳ ଧାରଣା ଉପରେ ବନ୍ଦୀ ହୋଇ ରହିଲା ।

ରେଳ ଆସିଯାଇପାରେ ଭାବି ମନ୍ତ୍ରୀ ବାଧ ହୋଇ ଗାଡ଼ି ଭିତରୁ ଓହ୍ଲାଇ ପଡ଼ିଲେ । ମନ୍ତ୍ରୀଙ୍କ ସାଙ୍ଗରେ ଥିବା ତାଙ୍କ ପି.ଏ. ମଧ୍ୟ ଓହ୍ଲାଇଲେ । କେତେକ ଲୋକ, ରେଳ କର୍ମଚାରୀ ଓ ଶେଷରେ ମନ୍ତ୍ରୀ ମଧ୍ୟ ନିଜେ ହାତ ଲଗାଇ ଗେଟ୍ ଉଠାଇବାକୁ ଲାଗିଲେ । ଏଣେ ଲୋକଙ୍କର ବୋଲତି ଫିଟିଗଲା । "ମନ୍ତ୍ରୀ ଗାଡ଼ି ଥାଉ ଥାଉ ସେଠି । ଦେଖନ୍ତୁ ମନ୍ତ୍ରୀ- ଦେଶର ଅବସ୍ଥା । ରୁହ, ଗେଟ୍ ଉଠାଇବା ଦରକାର ନାହିଁ । ସରକାର ଜାଣନ୍ତୁ କେମିତି ସବୁ କାମ ଚାଲିଛି" ଇତ୍ୟାଦି ଅନେକ କଥା । ମନ୍ତ୍ରୀ ଅପ୍ରତିଭ ହୋଇ ଗେଟ୍ ଟେକିବା ଛାଡ଼ି ଅଣ୍ଟାରୁ ମୁଣ୍ଡ ନୁଆଁଇ ଗେଟ୍ ତଳେ ଗଳି ବାହାରକୁ ଆସିଲେ । ଆସିଲାବେଳେ ଛଟ୍‌ପଟ୍ ହୋଇ ଟିକେ ଟିକେ ଏପଟ ସେପଟ ଅନେଇ ଦେଉଥାନ୍ତି । ଯଦିଓ ମନ୍ତ୍ରୀମାନେ ସବୁବେଳେ ଚାହାଁନ୍ତି ଯେ ତାଙ୍କୁ ସମସ୍ତେ ଦେଖନ୍ତୁ, ଚିହ୍ନନ୍ତୁ, ସେତେବେଳର ମନର ଅବସ୍ଥା କିନ୍ତୁ ନିଶ୍ଚୟ ଅଲଗା । କେହି ନ ଦେଖନ୍ତୁ । ଦେଖିଲେ ନ ଚିହ୍ନନ୍ତୁ । ମନ୍ତ୍ରୀ ସେଠୁ ଚାଲି ଚାଲି ଦୂରକୁ ଆସିଲେ ।

ପ୍ରାୟ ପନ୍ଦର ମିନିଟ୍ ଚେଷ୍ଟା ପରେ ଗେଟ୍ ବହୁ କଷ୍ଟରେ ସେତିକି ଉଠିଲା ଯେତିକିରେ ମନ୍ତ୍ରୀଙ୍କ ଗାଡି ଗଳିକରି ବାହାରକୁ ଆସିପାରିବ । ମନ୍ତ୍ରୀ ଆସିଲେ ଅର୍ଗଳି ସଂକଟ ପାର ହୋଇ ।

(ତା୧୦.୦୯.୧୯୮୧ରିଖ)





Digitized by srujanika@gmail.com

# ଏନିମା ଫିସ୍ ମାତ୍ର ଦୁଇଟଙ୍କା

ଦିନେ ସକାଳେ ରାଜଧାନୀର ବଡ ଡାକ୍ତରଖାନାକୁ ଜଣେ ପରିଚିତ ରୋଗୀଙ୍କୁ ଦେଖିବାକୁ ଯାଇଥିଲି । ରୋଗୀ ଭଦ୍ର ଲୋକଙ୍କର ଚାରିଦିନ ହେବ ଝାଡା ହୋଇ ନଥିଲା । ପୂର୍ବଦିନ ରାତିରେ ଡାକ୍ତର କହିଯାଇଥିଲେ 'ଏନିମା' ଦେଇ ଝାଡା କରାଇ ଦେବାକୁ । ରୋଗୀଙ୍କ ଆଟେଣ୍ଡାଣ୍ଟଙ୍କୁ କୁହାଗଲା ତହିଁ ପରଦିନ ସକାଳ ଦଶଟା ବେଳକୁ ଏନିମା ଦିଆଯିବ ।

ମୁଁ ରୋଗୀଙ୍କୁ ଦେଖିବାକୁ ଗଲାବେଳକୁ ଆଟେଣ୍ଡାଣ୍ଟ ମଧ୍ୟ ଆସିଯାଇଥିଲେ । ସକାଳ ସାତଟା ହେବ । ରୋଗୀ ଶୀତରେ ଥରୁଥାଆନ୍ତି । ଚାଦର ଖଣ୍ଡିଏ ଅବଶ୍ୟ ଦେହରେ ଥାଏ । ପଚାରିଲି ଥଣ୍ଡାରେ ଥରୁଛନ୍ତି । ରୋଗୀ ଉତ୍ତରଦେଲେ 'ଆଜ୍ଞା ପୁରାପୂରି ତିନ୍ତି ଯାଇଛି । ଲୁଗାପଟା ସବୁ ଓଦା ହୋଇଗଲା ।''

ଦେଖିଲି ଖଟ ତଳକୁ ରୋଗୀଙ୍କର ଗାମୁଛା, ପିନ୍ଧା ଧୋତି ଓ ସାର୍ଟ ସବୁ ଓଦା ହେଇ ପଡିଛି । ଘଟଣା ହେଲା ଏଇଆ ।

ୱାର୍ଡରେ ଥିବା ମେହେନ୍ତର ଯାହାଙ୍କୁ ସୁଇପର ବା ବେହେରା କୁହାଯାଏ ଏନିମା ଦେବାକୁ ଡାକିଲା । କହିଲା ଯେ ଏନିମା ଦେବି । ଦୁଇଟଙ୍କା ନେଇ ଆସ । ।ଗୀଙ୍କ ପାଖରେ ପଇସାନଥିଲା । କହିଲେ ବାବୁ ମୋ ପାଖରେ ପଇସା ନାହିଁ । ପୁଅ ଆସୁ ଇସାଦେବ । ଏନିମା ପରେ ନେବି । ବେହେରାଟି କିଛି ସମୟ ପଇସା ପାଇଁ ଅପେକ୍ଷା କଲା । ବୋଧେ ଭାବିଲା ପଇସା ରଖି ରୋଗୀବାବୁ ଠକୁଛନ୍ତି । ପୁଣି ପରେ ଦୟା ପରବଶ ହୋଇ କହିଲା ହଉ ପଇସା ନଦେଇନାହିଁ । ଆସ ଏନିମା ନେଇଯାଅ ।'' ବେହେରା ସକାଳ ଡିଉଟି ସାରି ଦେଲେ ଜଲଦି ଘରକୁ ଯିବ ପରା ।

ବାଧ ହୋଇ ରୋଗୀ ବାହରକୁ ଗଲେ । ତାଙ୍କୁ ବାରଣ୍ଡାରେ ତଳ ଚଟାଣରେ ଶୋଇବାକୁ ବେହେରା ନିର୍ଦ୍ଦେଶ ଦେଲେ । ରୋଗୀଟିକେ ମୃଦୁ ପ୍ରତିବାଦ କଲେ । କହିଲେ 'ତଳଟାରେ କେମିତି ଶୋଇବି ବାବୁ କହିଲ ।'' ହଁ ଶୋଇପଡ ସେଇଠି । ଝାଡି ଦେଇଛି । ହସପିଟାଲରେ ସେଠିକା ଅଧିକାରୀ ମାନଙ୍କ ସହିତ ବିଶେଷ ତର୍କ କରିବା ବିପଦଜନକ । ତେଣୁ ରୋଗୀ ବାଧ ଶିଶୁପରି ଶୋଇଲେ । ଏନିମାରେ ଖାଲି ଉଷୁମ ପାଣି । ସାବୁନ ମିଶାଯାଏ । କିନ୍ତୁ ସାବୁନ ନଥିଲା । ଏନିମା ପାଣି ଭିତରକୁ ଗଲା ଓ ବାହାରି ଆସିଲା । ଝାଡା ହେଲାନାହିଁ ।

ବେହେରା ବାବୁ କହିଲେ ପାଣିଗୁଡାକ ଚାପି କରି ରଖିଲ ନାହିଁ । ବାହାର କରିଦେଲ, ଝାଡା କେମିତି ହେବ । ପୁଣି ଥୋଡାଏ ଗରମପାଣି ତଳଆଡୁ ଭର୍ତ୍ତି ହେଲା । ଏଥର ଦୁର୍ବଳ ବୃଦ୍ଧ ରୋଗୀ ଗରମ ପାଣିକୁ ପେଟ ଭିତରେ ଚାପି ରଖିବାକୁ ଚେଷ୍ଟା କଲେ । ଯିଏ ଏନିମା ନେଇଛନ୍ତି ସିଏ ସିନା କହି ପାରିବେ ଯେ ତଳପଟୁ ପେଟକୁ ଗରମ ପାଣି ଭର୍ତ୍ତି କରି ବେଶୀ ସମୟ ରଖିହୁଏ ନା । ରୋଗୀଙ୍କର ସେଇଆ ହେଲା ଦ୍ୱିତୀୟବାର, କିନ୍ତୁ ମଳ ଆସିଲାନି ।

ରୋଗୀ କିଛି ସମୟ ପେଟକୁ ଚିପା ଚିପି କଲା ପରେ ମଡେଇଲା । ଝାଡା ବସିଲେ ।



Digitized by srujanika@gmail.com

ଦେହ ଥରୁଛି । ପାଇଖାନାରେ ଉପରୁ ପାଣି ଝରୁଛି । ଓଦାହୋଇଗଲେ ।

ଏସବୁ ଯେକୌଣସି ଡାକ୍ତରଖାନାରେ ନିତିଦିନିଆ କଥା । ଡାକ୍ତରଙ୍କର ଘରୋଇ ଚିକିତ୍ସା ଥିଲା । ଏବେ ଆଇନ ଦୃଷ୍ଟିରୁ ବନ୍ଦ ହୋଇଛି । ବେହେରା ବା କେତେକର ମୁଣ୍ଡ । ତା'ର ବା କେତେ ଆୟ । ଏନିମା ଦେବାକୁ ବ୍ୟାଣ୍ଡେଜ ବାନ୍ଧିବାକୁ କିମ୍ବା ଆଉ ଟହଲ ଟୁକୁରା ଟିକେ କରି ଟଙ୍କେ ଦି ଟଙ୍କା ଉପାୟ ନକଲେ ପିଲା ପୋଷିବ କିପରି ? ମନେ ପଡୁଥିଲା ସାତ ଆଠ ବର୍ଷ ତଳେ କଟକ ବଡ ଡାକ୍ତରଖାନାରେ ଥରେ ଏନିମା ଦେଇସାରି ବେଡପ୍ୟାନ ଦେବା ପାଇଁ ବେହେରା ଆଠଅଣା ମାଗୁଥିଲା । ଏହା ମଧ୍ୟରେ ଦରବୃଦ୍ଧି ଘଟିଛି । ସେଇଥିପାଇଁ ଏନିମା ଦେବାର ଫିସ ଦୁଇଟଙ୍କା ହୋଇଛି । ବେଶୀ କିଛି ବଢିଛି ବୋଲି ମନେହୁଏ ନାହିଁ ।

ଯଦି କେହି ଅଧିକାରୀ ଚାଲେଞ୍ଜ କରନ୍ତି ତେବେ ଦିନ, ବାର, ବେଡ ନମ୍ବର ଓ ରୋଗୀନାମ ମଧ ଦିଆଯିବ ।

**(ତା୨୫.୧୦.୧୯୮୦ରିଖ)**





*Digitized by srujanika@gmail.com*

# ବାବୁ ହେବାର ସ୍ୱପ

ସକାଳେ ପ୍ରାତଃ ଭ୍ରମଣ ଫେରନ୍ତା ବାଟରେ ଗୋଟାଏ ରିକ୍‌ସାବାଲା ଜଣେ ମହିଳାଙ୍କୁ ନେଇ ଯାଉଥିଲା । ରାଜଧାନୀ ଭୁବନେଶ୍ୱରର ଉଠାଣି ସଡ଼କରେ ମଣିଷ ଚାଲିଲେ ରିକ୍‌ସାଠାରୁ ବେଶୀ ଯୋରରେ ଚାଲିପାରେ ।

ମୁଁ ଚାଲୁଥାଏ ଆଉ ମୋ କଡ଼େ କଡ଼େ ରିକ୍‌ସାଟା ଚାଲୁଥାଏ । ରିକ୍‌ସାବାଲା ପିନ୍ଧିଥାଏ ମଇଳା ଛିଣ୍ଡା ଧୋତି । କିନ୍ତୁ ଦୋକଛା ମାରିଛି । ଦିହରେ ଛିଣ୍ଡା ଗେଞ୍ଜି । ଅଧାଚନ୍ଦା ମୁଣ୍ଡରେ ନାରଙ୍ଗି ରଙ୍ଗର ଗାମୁଛା ମୋଡ଼ିକରି ଗୁଡ଼େଇ ଥାଏ । ପାଦରେ କିନ୍ତୁ ବେଶ ମଜବୁତ ମଟର ଟାୟରରୁ ତିଆରି ସାଣ୍ଡାଲ୍ ।

ଭଦ୍ର ମହିଳା ନିତିଦିନିଆ ଯାତ୍ରୀ ହେବେ କି କ'ଣ ? କାରଣ ବଡ଼ ପାରିବାରିକ ସୂତ୍ରରେ ରିକ୍‌ସାବାଲା ମନକୁ ମନ ଗପି ଚାଲିଥାଏ । ଭଦ୍ର ମହିଳା ଖୁବ୍ ଡେ଼ରିରେ ଗୋଟାଏ ଗୋଟାଏ 'ହୁଁ' ମାରୁଥାନ୍ତି । 'ହୁଁ' ମାରିବାର ଆବଶ୍ୟକତା ନଥିଲା । କାରଣ ରିକ୍‌ସାବାଲା ସେ 'ହୁଁ'କୁ ଅପେକ୍ଷା ରଖୁଥିଲେ ସରଳ ଭାବରେ ଗପି ପାରୁନଥାନ୍ତା ।

ରିକ୍‌ସାବାଲାର କଥନ ହେଲା ମୋଟାମୋଟି ଏଇଥା-

ମୋ ଟୋକାଟା ପାଠ ପଢୁଛି । ମୁଁ ତ ଗରିବ ଘରେ ଜନମ ହୋଇଥିଲି ଯେ ଇସ୍କୁଲ ଯିବା ମୋ ଭାଗ୍ୟରେ ହେଲାନି । କେତେଥର ତା'କୁ ବୁଝେଇଲିଣି- ହଇରେ ମନଦେଇ ପାଠ ପଢ଼ । ମୁଁ କେତେ କଷ୍ଟରେ ରିକ୍‌ସା ଟାଣି ତତେ ପାଠ ପଢ଼ଉଚି । ପାଠ ଦି ଅକ୍ଷର ପଢ଼ିଦେଲେ ତୁ ବାବୁ ହେଇଯିବୁ । ମୋ ଆଶା ପୂରଣ ହୋଇଯିବ । ପାଠ ନପଢ଼ିଲେ ନଙ୍ଗଳ ମୁଠା ଛଡ଼ା ଆଉ ଗତି କଣ ଅଛି ? ଆମର ତ ଜମି ନାହିଁ । ଚଷିଲେ ଆଉ କାହା ପାଖରେ ହାତ ପତେଇବାକୁ ହେବ । ଆଜିକାଲି ତ ସରକାର ଭାଗଚାଷ ଆଇନ କରିଚି ଯେ ଜମି ବାଲା କେହି ଜମି ଚଷିବାକୁ ଦଉ ନାହାନ୍ତି । ଏ ଶଳା ଟୋକାଟା ଯଦି ପାଠ ନପଢ଼ିବ କରିବ କ'ଣ ?

ମୋର ଟିକେ ଉତ୍ସୁକତା ହେଲା । ତଥାପି ଭଦ୍ର ମହିଳା କାଳେ ଅପ୍ରତିଭ ହେବେ ଭାବି ରିକ୍‌ସାବାଲା ସହିତ ଗପିବାର ଲୋଭକୁ ଦାବିଲି । ବାସ୍ତବିକ ଭଦ୍ର ମହିଳା ଆଉ ଉଁ କି ଚୁ କହୁନଥାନ୍ତି । ମୁଁ ତ ପ୍ରାୟ କଡ଼େ କଡ଼େ ଚାଲୁଥିଲି । ରାସ୍ତାରେ ଗାଡ଼ିଘୋଡ଼ା ସେପରି ବେଶୀ ଯା'ଆସ କରିବା ବେଳ ହୋଇ ନଥାଏ ।

ମତେ ଲକ୍ଷ୍ୟ କରି ହଠାତ୍ ରିକ୍‌ସାବାଲା କହିଲା 'କହିଲ ବାବୁ ଆଜିକାଲି ଯୁଗରେ ପାଠ ଦି ଅକ୍ଷର ନପଢ଼ିଲେ ସେ ଟୋକାଟା କ'ଣ କରିବ ଆଉ ?'

ମତେ ସୁଯୋଗ ମିଳିଗଲା । କହିଲି 'କାହିଁକି ରିକ୍‌ସା ଟାଣିବ ।'

'ହୁଁ... । ରିକ୍‌ସା ଟାଣିବ ବାବୁ ସିଏ । ତା ଦିହରେ ଏତେ ତାକତ କାହିଁ ?' କହିଲା ସେ ।

'କୋଉ କ୍ଲାସରେ ପଢୁଛି ପୁଅ ?' ପଚାରିଲି ।



Digitized by srujanika@gmail.com

'ଆଠ କିଲାସ ବାବୁ । ଏ ବରଷକୁ ନଗେଇ ତିନି ବରଷରେ ମେଟରିକ ପାସ ହୋଇଯିବ ।'

ପଚାରିଲି- 'ତା ପରେ?

'ତା ପରେ କୋଉ ଅଫିସରେ ପଶିଯିବ ନି ଆଜ୍ଞା । କିନ୍ତୁ ମେଟରିକ ପାସ କ'ଣ ହେବ । ଢମା ପଢୁନି । ବଦମାସ ହଉଚି ।'

ରିକ୍‌ସାବାଲାର ସ୍ୱପ୍ନ କଥା ଭାବୁଥିଲି । ତା ପିଲା ପାଠ ପଢ଼ି ମାଟ୍ରିକ୍ ପାସ କଲେ ବି କ'ଣ କରିବ ? ବାପକୁ ତ ନିଣ୍ଡେ-ଚିହ୍ନିବନି । ତା ଛଡ଼ା ଚାକିରି କେଉଁଠି ପାଇବ ?

ରିକ୍‌ସା ତ ଟାଣିବନି । ଟାଣି ପାରିବନି । ଆଉ ନଙ୍ଗଳ ମୁଠି କଥାର ପ୍ରଶ୍ନ ଉଠେନି । କୁଆଡ଼େ ଯାଉଛି ଏ ଦେଶ । ଏ ଲୋକଗୁଡ଼ାକଙ୍କର ଭବିଷ୍ୟତ କ'ଣ ଭାବୁଥିଲି । ବାବୁମାନଙ୍କର ଭବିଷ୍ୟତ କୁଆଡ଼େ ଯାଉଛି ।

(ତା୨୪.୧୦.୧୯୮୦ରିଖ)





Digitized by srujanika@gmail.com

# ଏଠିକା ମାଛଙ୍କ ପାଇଁ ବି ଠେଙ୍ଗା ଆଉ ଦଉଡ଼ି ଦରକାର

ମୋର ଜଣେ ସମ୍ପର୍କୀୟ ବେଶୀ ପାଠପଢ଼ା ପାଇଁ ବିଦେଶ ଯାଇଥିଲେ । ସେ ଟିକେ ଖାଇବା ପ୍ରିୟ । ବିଶେଷ କରି ଆଇଁଷ ପ୍ରତି ବେଶୀ ଲୋଭ ।

ବିଦେଶରେ ମାଛ ଧରିବା ପାଇଁ ହୁଇଲ୍ ବନ୍‌ସି ବ୍ୟବହାର ହୁଏ । ସେଥିରୁ ଦି' ତିନିଟା କିଣି ମାଛ ଧରୁଥିଲେ ବିଦେଶରେ । ବିଦେଶରେ ମାଛ ଗୁଡ଼ାକ କୁଆଡ଼େ ବେଶ ନରମା ପ୍ରକୃତିର ଓ ଭଦ୍ର । ଦୁର୍ବଳିଆ ବନ୍‌ସି ଛଡ଼ରେ ଛୋଟ କଣ୍ଟା ଓ ସରୁ ସୂତାରେ ମାଛମାନେ ଥୋପ ଗିଳି କରି ଶୀଘ୍ର ଧରା ଦିଅନ୍ତି । ବନ୍‌ସି ପକେଇଲାବାଲାକୁ ବିଶେଷ ହଇରାଣ କରନ୍ତି ନାହିଁ । ଲୋକ ଗୁଡ଼ିକ ଯେମିତି ଆଇନକୁ ମାନି ଚଳନ୍ତି ମାଛମାନେ ମଧ୍ୟ ସେମିତି ନିୟମ ମାନନ୍ତି ।

ବିଦେଶରୁ ବେଶ ପାଠୁଆ ହୋଇ ଫେରିଲେ ସମ୍ପର୍କୀୟ ଜଣକ । ଗାଁକୁ ବନ୍‌ସି ଛଡ଼ ନେଇଗଲେ । ନଈକୂଳ ଗାଁ ତାଙ୍କର । ନଈରେ ବଢ଼ି ଆସିଲେ ବଡ଼ ବଡ଼ ଭେକଟି, ଇଲିଶି ଓ ରୋହୀ ଇତ୍ୟାଦି ବନ୍‌ସିରେ ପଡ଼ନ୍ତି । ଏ ବାବୁ ଗାଁରେ ତାଙ୍କ ଚକଚକିଆ ବନ୍‌ସି ଛଡ଼, କିଛି ନୁଣି ବିସ୍କୁଟ ଓ ଥର୍ମସରେ ଗରମ ଚା' ଧରି ନଈକୂଳରେ ବସିଲେ ବନ୍‌ସି ଧରି ।

ଗୋଟାଏ ବନ୍‌ସିରେ କୁଆଡ଼େ ଏମିତି ବ୍ୟବସ୍ଥା ଅଛି ଯେ, ବିଭିନ୍ନ ଉଚ୍ଚତାରେ ଅଲଗା ଅଲଗା ଜୀଅଳ ଲଗେଇ ହେବ । ଭଏ ଚାରିଟା ଜୀଅଳ ଲଗେଇ ବଢ଼ନ୍ତା ନଈ କୂଳରେ ବନସି ସୂତାକୁ ପାଣିକୁ ଛାଡ଼ିଲେ । ସାଙ୍ଗେ ସାଙ୍ଗେ ମାଛ ଧରିଲେ ଜୀଅଳକୁ ।

କିନ୍ତୁ ଆହା ! ଏଠିକା ମାଛ ଗୁଡ଼ାକ ଭାରି ବଳୁଆ ଆଉ ଦୁଷ୍ଟ । ଏମାନେ ଏତେ ଅଭଦ୍ର ଯେ ନିୟମ ମୋଟେ ମାନନ୍ତି ନାହିଁ । ଥୋପ ଗିଳିଲେ ତ ଘୋଷାରି ନେବେ । ଛାଟିପିଟି ହୋଇ ବନିସି ସୂତା ଛାଡ଼ିବାକୁ ତର ନଦେଇ ସୂତାକୁ ଟାଣି ଟାଣି ଛିଡ଼େଇ ଦେବେ । ବଡ଼ ବଡ଼ ଭେକଟି ମାଛ ବିଦେଶୀ ଫେରନ୍ତା ବାବୁଙ୍କ ଥୋପ ତୁରନ୍ତ ଗିଳୁଥାନ୍ତି । କିନ୍ତୁ କଣ୍ଟା ନେଇ କରି ହେଉ ବା କଣ୍ଟାକୁ ଖସେଇ ଖଣ୍ଡିଆ ଖାବରା ହୋଇ ଖସି ଯାଉଥାନ୍ତି । ପାଖରେ ଗାଉଁଲି ବନସି ଧରି କେତେଲୋକ ମାଛ ଧରୁଥାନ୍ତି । ସେମାନେ ଛୋଟବଡ଼ ମାଛ ଧରୁଥାନ୍ତି । କିନ୍ତୁ ଏ ଦେଶୀ ମାଛଗୁଡ଼ା ନିୟମ ଉଲଘଂନ କରି ବାବୁଙ୍କୁ ଧୋକା ଦେବାରେ ଲାଗିଥାନ୍ତି ।

ଗାଁରେ ଏଣେ ପ୍ରଚାର ହୋଇଗଲା ଯେ, ବିଦେଶରୁ ଅମୁକ ବାବୁ ବଢ଼ିଆ ବନ୍‌ସି ଆଣିଛି ଯେ ବଡ଼ ମାଛ ଢ଼ପ୍ କରି ସାଙ୍ଗେ ସାଙ୍ଗେ ଥୋପ ଗିଳୁଛି । କିନ୍ତୁ ବନ୍‌ସି, କଣ୍ଟା ଆଉ ଡ଼ୋର ଏତେ କମ ଜୋରର ଯେ ମାଛ ଡୋର ଛିଣ୍ଡାଇ ପଳାଉଛି । ଏହା ଶୁଣି ଗାଁର ଡ଼େଙ୍ଗା ମଜବୁତିଆ ଟୋକାଟାଏ ଗୋଟାଏ ଶକତ ବନ୍‌ସି ଆଣି ପହଂଚିଲା ।

ବନ୍‌ସି ଛଡ଼ ତ ନୁହେଁ ଠେଙ୍ଗାଟାଏ । ସେଥିରେ ଲାଗିଛି କୂଅ ଦଉଡ଼ିଠୁ ସାମାନ୍ୟ କମ୍ ମୋଟର ପାକଳିଆ ରସି । କୂଅରୁ ଗରା କାଢ଼ିଲା ଭଳିଆ କଣ୍ଟା । ଏ ସରଞ୍ଜାମ ଦେଖି ବାବୁ ହସିଲେ । ଥଟ୍ଟା କରି କହିଲେ 'ହଇରେ ମଦନା, ତୁ କ'ଣ କୂଅରୁ ନୋଟା କାଢ଼ିବାକୁ ଆସିଛୁ ?'

ମଦନା କହିଲା ବାବୁ 'ତମ ବନ୍‌ସିରେ ଏଠିକା ମାଛ ପଡ଼ିବେନି । ଯାଙ୍କୁ ଏମିତିଆ ବନ୍‌ସି



Digitized by srujanika@gmail.com

ଦରକାର । ତମ ବନ୍‌ସିରେ ଏ ଗୁଣ୍ଡା ମାଛଙ୍କୁ ଧରିବାକୁ ତାକତ କାହିଁ ?'

ବାବୁ କହିଲେ, 'ହଉ ହଉ ନେ ଟିକେ ଚା ଖା । କେତେବେଳେ ଯାଏ ବସିବୁ ଏଇନା ।'

ମଦନା ଚା' ଖାଉ ଖାଉ କହିଲା, 'ବସିବ ? ଦେଖ କେମିତି ସେ ଧୋକାବାଜ ମାଛକୁ ଧରୁଛି ଧଡ଼କରି ।' ଏହା କହି ମଦନା ଢିଆଜ ଗୁଛି ଠେଙ୍ଗା ଅଗରୁ କୂଅ ଦଉଡ଼ି ଅଗରେ ଝୁଲୁଥିବା କୁଅ କଣ୍ଟାକୁ ନୂଆଇ ଦେଲା ପାଣି ଭିତରକୁ । କଣ୍ଟା ପାଣିରେ ବୁଡ଼ିବାର ଦି ଚାରି ମିନିଟ ଭିତରେ ମଦନା ଝାଙ୍କିଲା ବନ୍‌ସିଟାକୁ । ପାଞ୍ଚ କିଲୋର ଭେକ୍‌ଟିଟାଏ ଆଣି ଶୁଖିଲାରେ ବାଡ଼େଇ କଚାଡ଼ି ଦେଲା । ବାବୁ ତ ତାଟଙ୍ଗା ।

ମଦନା କହିଲା, 'ଦେଖିଲ ବାବୁ ? ତମର କଣ୍ଟା ଗିଳିଛି ଶଳା ଭେକ୍‌ଟିଟା । ତମ ସୂତା ଝୁଲୁଛି ତା ଗାଲିରୁ ।'

ବାବୁ ନିଜେ ବନ୍‌ସିରେ ଧରିଥିଲା ପରି ମାଡିବସିଲେ ମାଛଟାକୁ । 'ଯା' ହଉ ଏ ମାଛଟା ମୁଁ ନେବି ମଦନା । ତୁ ପଇସା ନେ । କେତେ ଦେବି ?

'ନିଅ ବାବୁ । ଯା' ଦବତ ଦିଅ । ମାଛଟା ଜାଣିକି ତମର ।'

ବାବୁ ପ୍ୟାଣ୍ଟ ପଛ ପକେଟରୁ ଦଶଟା ଟଙ୍କା ବାହାର କଲେ । ମଦନା ମୁହଁରେ ହସ ଫୁଟିଲାନି । କିନ୍ତୁ ସେ କିଛି କହୁ ନଥିଲା । ବାବୁ ଜାଣିପାରିଲେ । କହିଲେ, 'ହଉ ନେ ଆଉ ପାଞ୍ଚ ଟଙ୍କା ।'

ମଦନା ଏଥର ହସିଲା । କହିଲା 'ଜାଣିଲ ବାବୁ ତମ ବନ୍‌ସିରେ ଏ ମାଛ ବୋଲ ମାନିବେନି । ତମେ ଯୁଆଡେ ଥେଇ ସାତିକା କଥା ଅଲଗା । ଦେଖିଲ ନି ?' ତା ପରେ ସେ ବୋତଲରୁ ଯୋଉ ଚା ଦେଲ ସେ ଚା ବି ଭାରି ଫିକା । ଭଲ କରି ଫୁଟେଇନି ଚା'ଟାକୁ । ନୁଣ ବି ପଡିନି ।

ବାବୁ ଏଥିରେ କ'ଣ କହିବେ ? ମଦନା କହିଲା 'ହଉ ଯା' ବାବୁ, ସକାଳୁ ଆସିଲଣି । ମାଛଟା ଛାଇ ଥାଉ ଥାଉ କାଟିଦବ ଯେ ତରକାରୀ ସୁଆଦିଆ ହେବ । ତମ ପେଣ୍ଟ ପିନ୍ଧା ବାବୁମାନଙ୍କ ଏ ନିର୍ଜୀବା ବନ୍‌ସିରେ ଆମ ଏଠିକା ମାଛ ଧରାଦେବେନି । ଯାଙ୍କୁ ସଳଖ ଠେଙ୍ଗା, କୂଅ ଦଉଡି ଆଉ ତେଣ୍ଟା ଦରକାର । ନିଜେ ଦେଖିଲନି ?'

ବାବୁ ଛୋଟିଆ ହଁ ଟିଏ କହି ଉଠିଲେ ।

(ତା୧୬.୦୯.୧୯୮୦ରିଖ)





Digitized by srujanika@gmail.com

# ସ୍ଥାୟୀ ଶିଷ୍ଟାଚାର

ଆମ ଦେଶରେ 'ଶିଷ୍ଟାଚାର ସପ୍ତାହ' ପାଳିତ ହୁଏ । କିଛି ଦିନ ତଳେ 'ମହିଳା ସମ୍ବତ୍ସର' ଓ 'ଆନ୍ତର୍ଜାତିକ ଶିଶୁବର୍ଷ' ମଧ ପାଳିତ ହୋଇଯାଇଛି ।

ଭଦ୍ରତା ଦେଖାଇବାରେ ପଇସା ଯେ ଖର୍ଚ୍ଚ ହୁଏନା ବରଂ ଏହାକୁ ପୁଞ୍ଜି କରି ଅର୍ଥ ଉପାର୍ଜନର ସ୍ଥାୟୀ ମଞ୍ଜି ପୋତାଯାଏ ଏକଥା ଅନେକ ବୁଝନ୍ତି ନି ।

ଏଇ ଶ୍ରୀଧର କଥା ଦେଖନ୍ତୁ । ଆମ ରାଜଧାନୀର ନାମକରା ହୋଟେଲ 'ରାଜମହଲ'ରେ ଥିଲା । ମୁଁ ବି ଅନେକ ଦିନ ହେଲା ରାଜମହଲକୁ ଯାଇନି । ତେଣୁ ଶ୍ରୀଧରକୁ ଅନେକ ଦିନ ହେଲା ଦେଖିନଥିଲି ।

ଦେଢବର୍ଷ ହେଲା ଆମେ ଭାବୁଛୁ ଜନପଥରେ ଥିବା ହୋଟେଲ 'ଗେ'ଲର୍ଡ'କୁ ଯିବୁ । ଚାଟ୍ କିମ୍ବା ରୋଲ ଖାଇବୁ । ସେଠି ମାଡ୍ରାସି ଦୋଷାଠାରୁ ଆରମ୍ଭ କରି ତନ୍ଦୁରି ପର୍ଯ୍ୟନ୍ତ ସବୁ ମିଳେ ବୋଲି ଲୋକେ କହନ୍ତି । ଯିଏ ଖାଇଛନ୍ତି ସେ ତ କହନ୍ତି ।ଯିଏ ଖାଇନାହାନ୍ତି ସେ ଅନ୍ୟମାନଙ୍କ ଠାରୁ ଶୁଣିକରି ମଧ ପ୍ରଶଂସାକରନ୍ତି ।

ସେ ଦିନ ସଂଧ୍ୟାରେ ପିଲାମାନେ ବଜାରରୁ କ'ଣ ଏଣୁ ତେଣୁ ଖାଇ ଆସିଲେ । ରାତିରେ ଆଉ ଖାଇବେନି ବୋଲି କହିଲେ । ଆମେ ମିଆଁ ବିବି କ'ଣ ରୋଷେଇ ହବ ଭାବିଲା ବେଳକୁ ପିଲାମାନେ କହିଲେ ତମେ ବି ଯାଅ । ବାହାରୁ ଖାଇ ଆସିବ । ଆମେ ପ୍ରାୟ ବାହାରେ ଖାଇବାକୁ ଯାଉନା ।

ମୁଁ କହିଲି ଚାଲଯିବା ଗେ' ଲର୍ଡକୁ । ରୋଲ ଖାଇ ଆସିବା । ବିବି କହିଲେ 'ନା ପିଲାମାନେ ଯିବେନି । ଆମେ ଏତେ ଦିନରୁ ଭାବିଚେ ସମସ୍ତେ ଯିବା ବୋଲି ।'

'ମୁଁ କହିଲି ଆଉ ଦିନେ ସମସ୍ତେ ଯିବା । ଆଜିଚାଲ ତମେ ଆଉ ମୁଁ । ଗେ'ଲର୍ଡରେ ତଳେ ଯେଉଁ ସାଇନ ବୋର୍ଡ ଟଙ୍ଗା ହୋଇଛି ସେଥିରେ ଗୋଟିଏ ଲାଇନଲେଖା ଯାଇଛି ଶ୍ରୀଧରସ୍ କାଟରିଂ । ଯଦିଓ ମୁଁ ଦେଖିଲି ତଥାପି ମତେ ହଠାତ କିଛି ଷ୍ଟ୍ରାଇକ କଲାନି । ଉପରେ ଯାଇ ଆମେ ଟେବୁଲରେ ବସିଲାପରେ ଶ୍ରୀଧର ଆସି ସେହି ପୁରୁଣା ଢଙ୍ଗରେ ଅଣ୍ଟାପାଖରୁ ଟିକେ ନଇଁପଡି ହାତ ଯୋଡି ନମସ୍କାରଟାଏ କଲା । ମୁଁ କହିଲି 'ତମେ ଏଠି ପରା ?'

'ହଁ ଆଜ୍ଞା ଶ୍ରୀଧର ପୁଣି ଟିକେ ମୁଣ୍ଡ ନୁଆଇ କହିଲା ।

ପଚାରିଲା 'କ'ଣ ଅଛି ?' ସବୁ ତାଲିକା କହିଗଲା ଶ୍ରୀଧର । ଆମେ ଦୁଇଟା ରୋଲ ଓ ଦୁଇଟା ମୋଗଲାଇ ପରଟା ବରାଦ କଲୁ । ପରଟା ସହିତ ଆଳୁଦମ । ଆଳୁ ଦମଟା ଭଲ ନହେଲେ ବି ରୋଲଟା ଭଲ ଲାଗିଲା । ମୋଗଲାଇ ପରଟା ବେଶ ଭଲ ।

ବିଲ ଆସିଲା ନଟଙ୍କା ଅଶୀ ପଇସାର । ବିଲ ସାଙ୍ଗରେ ଗୋଟାଏ ବଡ ଚିରୁଟ ଆଉ ଦିଟା ସାଦାପାନ । ଗୋଟିଏ ଇଂରାଜୀ ହାତଲେଖା ଅନୁରୋଧ ମଧ ସେହି ଥାଳିଆରେ ଲେଖା ଥିଲା-

ସମ୍ମାନାସ୍ପଦ ମହାଶୟ,

ପ୍ରାର୍ଥନା- ଆପଣଙ୍କର ବନ୍ଧୁ ମାନଙ୍କୁ ସୁପାରିଶ କରିବେ । ଏହି ଶରଣାଗତକୁ ଦୟାକରି ମନେ ରଖିବେ । ଛୋଟ ବଡ ଯେମିତିଆ ଖାନା ପିନା ହଉପଛେ ।

ସର୍ବଦା ଆପଣଙ୍କର<br>
ଦୟାଶ୍ରିତ<br>
ଶ୍ରୀଧର



Digitized by srujanika@gmail.com

ସେ ଚିରୁଟ ଆଉ ପାନର ଦାମ ମୁଁ ଦେଇନି । ଅନ୍ୟବାଟରେ ତାହା ଶୁଝିବାକୁ ହେବ । ଫେରିଲା ବେଳକୁ ପାହାଚ ପାଖରେ ଶ୍ରୀଧର । ପୁଣି ସେମିତିଆ ବିଦାୟୀ ନମସ୍କାର । ଯେଉଁମାନେ 'ଶିଷ୍ଟାଚାର ସପ୍ତାହ' ବର୍ଷକୁ ଥରେ ପାଳନ କରନ୍ତି ସେମାନେ ଶିଖନ୍ତୁ ସ୍ଥାୟୀ ଶିଷ୍ଟାଚାର ।

(ତା୩୧.୧୨.୧୯୮୦ରିଖ)



# ଛୁଆ ବିକ୍ରି କ'ଣ ବିବେକ ବିକ୍ରୀଠାରୁ ହୀନ ?

ବ୍ରହ୍ମପୁର ମେଡିକାଲ କଲେଜ ହସପିଟାଲରେ ଜଣେ ଗରିବ ସ୍ତ୍ରୀଲୋକ ନିଜର ସଦ୍ୟଜାତ ଶିଶୁକୁ ପାଞ୍ଚଶହ ଟଙ୍କାରେ ବିକ୍ରି କରିଦେଲା । ଏକଥା ଭାରତବର୍ଷର ଅନେକ ବଡ ବଡ କାଗଜରେ ପ୍ରଥମପୃଷ୍ଠାରେ ବକ୍‌ସ ସମ୍ବାଦ ହୋଇ ପ୍ରକାଶ ପାଇଲା । ସେହିପରି ଦୁଇବର୍ଷ ତଳେ କଳାହାଣ୍ଡି ଜିଲ୍ଲାର କେଉଁ ଅନାମଧେୟ ଗାଁର ଅନାମଧେୟ ସ୍ତ୍ରୀଲୋକ ଫାନସ ପୁଞ୍ଜି ତା'ର ନଣନ୍ଦକୁ ବିକ୍ରି କରିଦେଲା ବୋଲି ପ୍ରକାଶ ପାଇଲା । ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧୀ କେତେ ଲକ୍ଷ ଟଙ୍କା ଲୋକଙ୍କ ଟିକସରୁ ଖର୍ଚ୍ଚ କରି କଳାହାଣ୍ଡି ଆସି ବୁଲିଗଲେ । ଆଶ୍ୱସନା ଦେଇଗଲେ ଯେ, କଳାହାଣ୍ଡିର ନିରନ୍ନ ଦୁର୍ଭିକ୍ଷଗ୍ରସ୍ତ ଲୋକଙ୍କ ହେପାଜତ କରାଯିବ ।

ରାଜୀବଗାନ୍ଧୀ କିମ୍ବା କେହି ସାମ୍ବାଦିକ ବୁଝିଛନ୍ତି ଯେ ଫାନସ ପୁଞ୍ଜିର କ'ଣ ହେଲା ? ତା' ପିଲାଛୁଆଙ୍କୁ ସେ କେମିତି ଚଳାଉଛି ? ସେମିତି ବ୍ରହ୍ମପୁର ହସପିଟାଲରେ ସ୍ତ୍ରୀଲୋକଟି କାହିଁକି ପିଲାଟିକୁ ବିକ୍ରି କରିଦେଲା ? କେଉଁ ମା ଚାହିଁବ ଦଶମାସ ଗର୍ଭରେ ଧରିଥିବା ପିଲାକୁ ବିକ୍ରି କରିବାକୁ ? ତା'ର ଆଉ ତିନିଚାରି ପିଲା ଅଛନ୍ତି । ସ୍ୱାମୀ ନାହିଁ ପୋଷିବାକୁ । ସେ ପରିବାର ବଞ୍ଚିଛି କି ନାହିଁ ଜଣାନାହିଁ । ପୁଣି ସାନପିଲାଟିକୁ ବଞ୍ଚାଇବା କି କଷ୍ଟକର । ଯିଏ କିଣିଲେ ସେମାନେ ନିସନ୍ତାନ । ସେମାନଙ୍କ କୋଳପୁରିଲା । ସେମାନଙ୍କୁ ବାପା ବୋଉ ଡାକିବାକୁ ପିଲାଟିଏ ମିଳିଲା । ଜନ୍ମ କରିଥିବା ମା'ଠାରୁ ସେମାନେ ନିଶ୍ଚୟ ଭଲରେ ପାଳିବେ ଛୁଆଟିକୁ । ପାଞ୍ଚଶହ ଟଙ୍କା ଏକାଥରକେ ଲକ୍ଷେ ଟଙ୍କାରୁ ବେଶୀ କାମ ଦେଇପାରେ ।

ଆମେ ମନେରଖୁନୁ ମଣିଷ ପ୍ରତିଦିନ କିଣାବିକା ହେଉଛନ୍ତି । କଣ୍ଟ୍ରାକ୍ଟରଙ୍କ ପାଖରେ ଦାଦନ ଶ୍ରମିକ, ମହାଜନ ଘରେ ଗୋତି, ଖାଇପିଇ ମାସକୁ କୋଡିଏ ତିରିଶ ଟଙ୍କାରେ ଯେଉଁ ବାପ ମା' ନିଜର ଦଶ ବାରବର୍ଷର ପୁଅ ଝିଅଙ୍କୁ ଘରେ ଚାକର ଚାକରାଣୀ ରଖାଉଛନ୍ତି, ତାହା କ'ଣ କିଣା ବିକା ନୁହେଁ ? ବେଶ୍ୟାମାନେ, କଲଗାର୍ଲମାନେ ଦେହ, ଇଜ୍ଜତ ବିକୁଛନ୍ତି । କଂଗ୍ରେସ ଦଳରେ କେତେ ବଡ ବଡ ନେତା, ରାଜୀବ ଗାନ୍ଧୀଙ୍କ ପାଖରେ ବିକିଛନ୍ତି, କିଛି ପାଇକରି ନିଜକୁ, ବିବେକକୁ ବା କିଛି ପାଇବା ଆଶାରେ ।

ଉପର ହାକିମଙ୍କ ପାଖରେ ଖୋସାମତିଆ ଅଧସ୍ତନ କର୍ମଚାରୀ ବିବେକ ବିକୁଛନ୍ତି । ବିବେକ ଗୋଟାଏ ନିତିଦିନିଆ ସ୍ଥାୟୀ ବିକ୍ରୟ ସାମଗ୍ରୀ ହୋଇଗଲାଣି । ସାରା ସମାଜ ନିଜର ବିବେକ ବିକୁଛି କ୍ଷମତା ଆଗରେ, ପଇସା ଆଗରେ ଆଉ ଦେହବଳ ଆଗରେ । କିଏ କେଉଁଠି କେମିତି କାଁ ଭାଁ ପ୍ରତିବାଦ କରୁଛନ୍ତି ।

ଛୁଆ ବିକ୍ରି କରିବାରେ ସେମାନଙ୍କର ବାଧ୍ୟତା ଅଛି । ନୈତିକ ଓ ଆର୍ଥିକ ବାଧ୍ୟତା । କିନ୍ତୁ ବିବେକ ବିକ୍ରି ପାଇଁ .... ?

(ତା୧୭.୦୨,୧୯୮୭ରିଖ)





Digitized by srujanika@gmail.com

# ଉକୁଣୀ ଓ ଦାଢିଆ ବର

ପୃଥିବୀରେ ଏତେ ରୋଗ ଓ ରୋଗର ଜୀବାଣୁ ଗୁଡ଼ିକ ଲୋପ କରାଯାଉଛି କିମ୍ବା ଜୀବାଣୁଗୁଡ଼ିକୁ ସମୂଳେ ନାଶ କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି । କିନ୍ତୁ ସବୁଠାରୁ ପୁରୁଣା ଜୀବାଣୁ ଯାହା ଆଖିରେ ଦେଖିହେବ, ଖାଲି ହାତରେ ମଧ୍ୟ ମାରି ହେବ ତାହା କଥା କ'ଣ ହେବ ? ଆପଣ ଭାବୁଥିବେ କାହା କଥା କହୁଛି । ସମସ୍ତଙ୍କ ଘରେ ସେମାନେ ଅଛନ୍ତି । ପ୍ରାୟ ଅର୍ଦ୍ଧାଧିକ ଲୋକଙ୍କ ଦେହରେ ଚାଲବୁଲ କରୁଛନ୍ତି । ଯେତେବେଳେ ଚାହିଁବ ଖୋଜିଲେ ପାଇବ ।

ଏଇ ଉକୁଣୀଟା କଥା କହୁଛି । ଉକୁଣୀକୁ ମାନବବାଦୀ କୁହାଯାଇପାରେ । ମାର୍କସବାଦୀ ହୋଇଥିଲେ ତ କେବଳ ଗରିବଙ୍କ ମୁଣ୍ଡରେ ଥା'ନ୍ତା । ସେ ଗରିବ ଧନୀ ଭେଦଭାବ ରଖେନା । ଏବେ ପୁଅଝିଅ ଏକାଠି ପଢୁଛନ୍ତି ସ୍କୁଲ କଲେଜରେ । ତେଣୁ ଉକୁଣୀ ଜୀବଟି (କାରଣ ଏହାକୁ ଜୀବାଣୁ କହିବାକୁ ଲାଜ ଲାଗୁଛି) ଜାତି,ଧର୍ମ, ବର୍ଣ୍ଣ, ଧନୀ, ଦରିଦ୍ର ଏବଂ ଲିଙ୍ଗ ନିର୍ବିଶେଷରେ ସବୁ ଠାରେ ବିଦ୍ୟମାନ । ଏବେ ପୁଅ ପିଲାମାନେ ମଧ୍ୟ ଉକୁଣୀକୁ ଆଦରି ନେଇଛନ୍ତି । ଲମ୍ବା ବାଳିଆ ପୁଅ ପିଲାମାନଙ୍କ ମୁଣ୍ଡରେ ଉକୁଣୀ ପାଳିବା ଫାର୍ମ କରି ଚାଲିଛନ୍ତି ।

ସେଦିନ ଖାଇବା ପାଖରେ ଆମ ପିଲାମାନେ ସବୁ ଖୁବ୍ ଜୋରରେ ହସାହସି ହେଲେ ମୁଁ ପଚାରିଲି କଣ କାରଣ ସମସ୍ତେ ହସୁଛନ୍ତି । କେହି କଥାଟା ଖୋଲିବାକୁ ନାରାଜ ।

ଶେଷରେ ମୋ ସାହାସିଆ ସାନପୁଅ ଗଣ୍ଠି ଫିଟେଇ ଦେଲା । ମୋ ଝିଆରୀ ରୋଜୀ କହୁଛି ଯେ ସେ ଦାଢିଆ ଲୋକଙ୍କୁ ବାହା ହେବନାହିଁ । କାରଣ ପ୍ରଥମ କଥା ତାକୁ ଦାଢି ଭଲ ଲାଗେନାହିଁ । ଦ୍ଵିତୀୟ ଏବଂ ବେଶୀ ଗୁରୁତ୍ଵପୂର୍ଣ୍ଣ କଥା ହେଲା ଯେ ରୋଜୀ ମୁଣ୍ଡରେ ବହୁତ ଉକୁଣୀ । ଦାଢିଆ ସ୍ଵାମୀ ହେଲେ ଉକୁଣୀ ଗୁଡାକ ସେ ଦାଢିରେ ପୁଣି ଚଳପ୍ରଚଳ ହେବେ । କଥାଟି ଫିଟିଲାରୁ ହସଟା ଆହୁରି ଜୋର ହେଲା ।

ପିଲାଙ୍କ ଭିତରେ କିଏ ଜଣେ ସମାଧାନର ସୂତ୍ରବାହାର କଲା । ରୋଜୀ ଅପା ଦାଢିଆ ବର ବରଂ ବାହା ହେବାଉଚିତ । ତାହା ହେଲେ ଉକୁଣୀର ଉତ୍କଟ ପ୍ରାଦୁର୍ଭାବ ଦାମ୍ପତ୍ୟ ଜୀବନରେ ବାଣ୍ଟିକରି ଭୋଗ କରିବେ । ନଇଲେ କି ଜୀବନସାଥୀ ? ରୋଜୀ ଅପା ମୁଣ୍ଡରୁ କିଛି ଉକୁଣୀ ବର ଦାଢିକୁ ଚାଲିଗଲେ ସେତିକି ତ ରିହାତି ମିଳିବ ରୋଜୀକୁ ।

ଆଉ ରୋଜୀକୁ ଯଦି ଦାଢିଆ ବର ଭଲ ନଲାଗିଲା ତାହାହେଲେ ସେ ବର ନିଦରେ ଶୋଇ ଥିଲା ବେଳେ ହାତରେ ଉକୁଣୀ କାଢି ଅଧିକ ସଂଖ୍ୟାରେ ଦାଢିରେ ଛାଡିଦେବେ । ଉକୁଣୀ ବେଶୀ ଉତ୍ପାତ କଲେ ବରଟି ବଳେ ବଳେ ଦାଢି କାଟି ପକେଇ ବନି ଯେ !

କିଏ ଜଣେ କୁଆ କହିଲା ତା'ପରେ ବରଟି ରୋଜୀ ଅପା ମୁଣ୍ଡରୁ ଉକୁଣୀ ନିପାତ କରିବାକୁ ତା'କୁ ଯଦି ଲଣ୍ଡା କଲା ତା' ହେଲେ କ'ଣ ହେବ ?

(ତା୪.୦୬.୧୯୮୩ରିଖ)





Digitized by srujanika@gmail.com

# ସଭ୍ୟତା ଓ ସଂସ୍କୃତିର ପରିମାପକ କ'ଣ ?

ସେ ଦିନ କଲିକତାରେ ଜଣେ ବନ୍ଧୁଙ୍କ ଚାରିମହଲା ଉପରେ ଥିବା ଅଫିସରେ ବସିଥିଲି । ଅଫିସର ସାଜସଜ୍ଜାରେ ବହୁତ ପଇସା ଖର୍ଚ୍ଚ ହୋଇଛି । ବ୍ୟବସାୟ ବି ଖୁବ୍ ଲାଭଦାୟକ ହେଉଛି । ସେଥିପାଇଁ ଅଫିସର କାଠ ଓ କାଚ ପ୍ୟାନେଲ, ଦାମିକା ଟେବୁଲ, ଚଉକୀ, ବେଶ ଦାମୀ ପରଦା, ଏୟାର କଣ୍ଡିସନର ଆଦିରେ ଆଗନ୍ତୁକମାନେ ଇମ୍ପ୍ରେସଡ୍ ହେବା ସ୍ୱାଭାବିକ ।

କଲିକତାରେ ବିଜୁଳି ଅଭାବ କଥା ନ କହିବା ଭଲ । ତେଣୁ ଲିଫ୍ଟ ନଚାଲିଲେ ହୃଦରୋଗୀକୁ ମଧ୍ୟ ପାହାଚ ଉଠିବାକୁ ହେବ । ଅବଶ୍ୟ ଆମ ରାଜଧାନୀ ଭୁବନେଶ୍ୱରରେ ବିଜୁଳିକାଟ ଛଡା ଭୋଲଟେଜ କମିବାର ଯେଉଁ ଦୋଷ ତାହା କଲିକତାର ବିଜୁଳିକାଟଠାରୁ ଆହୁରି ଦୁଃଖଦାୟକ । ମୋର ବ୍ୟବସାୟୀ ବନ୍ଧୁଙ୍କ ପନ୍ଦର ଷୋଳ ବର୍ଷର ପୁଅ ଲିଫ୍ଟ ବିହୁନେ ପାହାଚ ଚଢ଼ି ଉପରକୁ ଆସିଲା । ଗୋରା ତକ୍ ତକ୍ ସୁନ୍ଦର ଚେହେରା । ଭଲ ସ୍ୱାସ୍ଥ୍ୟ । ଯେଉଁ ସଫାରି ସୁଟ୍ ପିନ୍ଧିଥିଲା ସିଲେଇ ମଜୁରି ସହିତ ଦାମ ହଜାରେ ଟଙ୍କାରୁ କମ ହେବ ନାହିଁ ହୁଏତ । ଅବଶ୍ୟ ସଫାରି କନା ଓ ସିଲେଇ ମଜୁରି ସମ୍ପର୍କରେ ମୋର ପ୍ରତ୍ୟକ୍ଷ ଜ୍ଞାତ ସୀମିତ । ମୁହଁ ଦେହରେ ଝାଳର ପ୍ରାଚୁର୍ଯ୍ୟ ।

ବନ୍ଧୁଙ୍କ ପୁଅ ଆସି ସେ ଝାଳୁଆ ମୁହଁ ଓ ହାତ ଦୁଇଟାକୁ ଦାମିକା ହଳଦୀ-ସୁନେଲୀ ଝରକା ପରଦା କନାରେ ବେଶ୍ ରଗଡି କରି ପୋଛି ପକାଇଲା । ତାପରେ ଥକ୍କା ମାରିବା ପାଇଁ ଧସ୍‌କିନା ଚଉକୀରେ ବସି ପଡିଲା । ମୁଁ ନିରୀକ୍ଷଣ କରି ଦେଖିଲି ଝରକା ପରଦାଗୁଡାକର କେତେକ ଅଂଶ ଈଷତ୍ ମଇଳା ହୋଇଛି । ଅର୍ଥାତ୍ ସେଗୁଡିକ ନିୟମିତ ମୁହଁହାତ ପୋଛିବାରେ ବ୍ୟବହୃତ ହେଉଛି ।

ମୋର ମନେ ପଡ଼ିଲା ଆମ ଘରକୁ ଦିନେ ଦୁଇଜଣ ଓକିଲ ଆସିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଗୋଟିଏ ସୋଫାର ଶେଷ ଭାଗରେ ବସିଥିଲେ । ଖରାବେଳେ ବାହାରୁ ଆସୁଥିଲେ । ଗରମ ଲାଗୁଥିଲା ଓ ମୁହଁରେ ଝାଳ ବେଶ୍ ଲାଗି ରହିଥିଲା । ଓକିଲ ଜଣକ ପାଖ ଦରଜାରେ ଝୁଲୁଥିବା ସମ୍ବଲପୁରୀ ପରଦାକୁ ଗୋଟାଏ ହାତରେ ଟାଣିଆଣି ବେଶ୍ ଆରାମରେ ନିଜ ମୁହଁର ଟିକିନିଖି ଅଂଶ ଶୁଦ୍ଧ ଭାବରେ ପୋଛିବାକୁ ଲାଗିଲେ । ଭଦ୍ରଲୋକ ପାନ ମଧ୍ୟ ଖାଆନ୍ତି । ତେଣୁ ଓଠରେ ପାନଛାପର ଓଦାଳିଆ ଅଂଶ ଓ ଗୁଆଗୁଣ୍ଡିର ଛୋଟିଆ ଛୋଟିଆ ପରିତ୍ୟକ୍ତ ଗୁଣ୍ଡିଗୁଡାକୁ ମଧ୍ୟ ଭଲ ଭାବରେ ପୋଛି ସଫା କଲେ । ତାପରେ ହାତ ପାପୁଲି ଓ ଉପର ପଟ ଆଙ୍ଗୁଠି କନ୍ଦିଗୁଡିକୁ ମଧ୍ୟ ପୋଛି ସଫା କରି ହାଫ୍ ସାର୍ଟ ପିନ୍ଧା ହାତ ଦୁଇଟାରେ ଖାଲି ଅଂଶକୁ ମଧ୍ୟ ପରିଷ୍କାର କରିନେଲେ । ଯେମିତିକି ଭଦ୍ରଲୋକ ନିଜ ବାଥରୁମ୍‌ରେ ବସି ନିଜ ତଉଲିଆରେ ପୋଛି ହେଉଛନ୍ତି ! ମୋ ଆଗରେ ଏସବୁ ଅତ୍ୟାଚର ଘଟୁଥାଏ । ସୌଜନ୍ୟ ଦୃଷ୍ଟିରୁ କିଛି କରିବାର ନଥାଏ । କିନ୍ତୁ ମୋ ମନଟାରେ ବିରକ୍ତି ଭରିଯାଇଥାଏ ।

ମୁଁ ଭାବୁଥାଏ ମଣିଷ ପଇସାରେ ବଡଲୋକ କୋଟିପତି ହୋଇଗଲେ କିମ୍ବା ବିଶ୍ୱବିଦ୍ୟାଳୟର ଉଚ୍ଚ ଡିଗ୍ରୀ ପାଇଗଲେ ସେ ସଭ୍ୟ ହୋଇଯାଏ ତାହା ନୁହେଁ, ଡିଗ୍ରୀଧାରୀ ଅଶିକ୍ଷିତ ମଣିଷ ବହୁତ ଅଛନ୍ତି । ସଭ୍ୟତା, ସଂସ୍କୃତି ଓ ସଂସ୍କାର ଶ୍ରେଣୀଗତ ବିଦ୍ୟା କିମ୍ବା ବ୍ୟାଙ୍କ ବାଲାନ୍‌ସରେ ଗଢ଼ି ଉଠେନା । ଆଚାର, ବ୍ୟବହାର, ରୁଚି ସଭ୍ୟତା ସମ୍ପନ୍ନ ଓ ପରିମାର୍ଜିତ ହେବାକୁ ଆଉ କେତେକ ଜିନିଷ ଦରକାର ଯାହା ପାଠ୍ୟକ୍ରମର ବାହାରେ । ତଥାପି ସଭ୍ୟ ମଣିଷର ଚଲାପଥରେ ସେ ହୃଦୟ, ମନ, ମସ୍ତିଷ୍କର ଆଖି ଖୋଲିଲେ ସେ ଅଦୃଶ୍ୟ ପଦାର୍ଥ ସବୁ ଆହରଣ କରିହୁଏ ।

(ତା୨୭.୦୮.୧୯୮୫ରିଖ)





Digitized by srujanika@gmail.com

# ବାହାଦୂରରୁ ବେହେରା ଓ ବଢେଇରୁ ବାହାଦୁର

ସରକାରୀ କଳରେ ନିଯୁକ୍ତି ନେଇ ଅଦ୍‌ଭୁତ୍ ମାପକାଠି ସବୁ ପ୍ରୟୋଗ କରାଯାଏ । ନିମ୍ନ ବର୍ଣ୍ଣିତ କଥାରୁ ଆପଣ ଏହି ବିଚିତ୍ର ବିଚାର ବୁଝିପାରିବେ ।

କେନ୍ଦ୍ର ସରକାରର କୌଣସି ସଂସ୍ଥାରେ ଦିନ ମଜୁରିଆ ଭାବରେ ଜଣେ ଲୋକ ବଢେଇ କାମ କରୁଥିଲା । ଆଉ ଜଣେ ଗୁର୍ଖାଲୋକ 'ବାହାଦୁର' ଭାବରେ ୱାଚମ୍ୟାନ ଅର୍ଥାତ୍ ଜଗୁଆଳି କାମ କରୁଥିଲା । ଦୈନିକ ମଜୁରିଆ ଭାବରେ କେତେ ବର୍ଷ କାମ କଲାପରେ ସେହି ସଂସ୍ଥାରେ ଥିବା ଗୋଟିଏ ଡାକ୍ତରଖାନାରେ 'ବେହେରା' ଚାକିରି ସୃଷ୍ଟି ହେଲା । ବଢେଇକାମ କରୁ ଥିବା ଲୋକଟି ସ୍ଥାୟୀ ଚାକିରିରେ ମୁକରିର ହେବାପାଇଁ ବେହେରା ଚାକିରି ପାଇଁ ଦରଖାସ୍ତ କଲା । ବେହେରା ଚାକିରୀ ପାଇଁ ସର୍ବନିମ୍ନ ଶିକ୍ଷାଗତ ଯୋଗ୍ୟତା ଅଷ୍ଟମଶ୍ରେଣୀ ପର୍ଯ୍ୟନ୍ତ ପାଠପଢିଥିବା ଦରକାର । ଗୁର୍ଖା 'ବାହାଦୁର'ଟି ଅଶିକ୍ଷିତ ହେଲେ ମଧ୍ୟ କେଉଁଠାରୁ ଯୋଗାଡ଼ କରି ଅଷ୍ଟମ ଶ୍ରେଣୀ ସାର୍ଟିଫିକେଟ ଆଣି 'ବେହେରା' ଚାକିରି ପାଇଁ ଦରଖାସ୍ତ କଲା । ବଢେଇଭାବରେ କାମ କରୁଥିବା ଓଡ଼ିଆ ଅଶିକ୍ଷିତ ଲୋକଟି ଅଷ୍ଟମ ଶ୍ରେଣୀ ପାଠର ସାର୍ଟିଫିକେଟ ଯୋଗାଡ କରି ନପାରି 'ବେହେରା' ଚାକିରି ପାଇଁ ଅଯୋଗ୍ୟ ବୋଲି ବିବେଚିତ ହେଲା । ବେହେରା ଚାକିରିରେ ପାଠର ଆବଶ୍ୟକତା ପ୍ରକୃତରେ ସେପରି ଗୁରୁତ୍ୱପୂର୍ଣ୍ଣ ନୁହେଁ । ଡାକ୍ତର, କମ୍ପାଉଣ୍ଡର ଓ ରୋଗୀଙ୍କୁ ଟିକେ ସାହାଯ୍ୟ କରିବା ସେଠାରେ ଅସଲକାମ । ବାହାଦୁର ବେହେରା ଚାକିରିରେ ସ୍ଥାୟୀ ଭାବରେ ମୁକରିର ହୋଇଗଲା । ତାକୁ ଆଉ ରାତିସାରା ହ୍ୱିସିଲ ମାରି ଠେଙ୍ଗାଧରି ଅନିଦ୍ରା ହୋଇ ବୁଲିବାକୁ ପଡ଼ିଲାନି ।

କୁଶଳୀ ବଢେଇଟି ମନମାରି ରହିଲା । କିଛିଦିନ ଭିତରେ ରାତି ଜଗୁଆଳି ଅର୍ଥାତ୍ 'ବାହାଦୁର' କାମ କରିବାକୁ ଏକ ସ୍ଥାୟୀଚାକିରି ସେହି ସଂସ୍ଥାରେ ସୃଷ୍ଟି ହେଲା । ଏଥିପାଇଁ ଶିକ୍ଷାଗତ ଯୋଗ୍ୟତାର ଆବଶ୍ୟକତା ନାହିଁ । ରାତିରେ ଠେଙ୍ଗା ଠକ ଠକ କରି ଚୋର ଉଦ୍ଦେଶ୍ୟରେ ହ୍ୱିସିଲ ମାରିବା ପାଇଁ ପାଠ କ'ଣ ବା ପ୍ରକୃତରେ ଦରକାର ? ଯା' ହେଉ ସୁଖର କଥା ବଢେଇ ମଜୁରିଆର 'ବାହାଦୂର' ଚାକିରିଟି ଉପରିସ୍ଥ କର୍ମକର୍ତ୍ତାଙ୍କ ଦୟାରୁ ହୋଇଗଲା । ଏବେ ଉଭୟ ଦିନ ମଜୁରିଆରୁ ସ୍ଥାୟୀ ମାସିକିଆ ଦରମା ପାଉଛନ୍ତି ।

କିନ୍ତୁ ଅସଲ କଥାଟି ହେଲା ଉଭୟଙ୍କର ପାରମ୍ପରିକ କୌଳିକ ବୃତ୍ତି ଲୋପ ହୋଇଗଲା । ଗୁର୍ଖାମାନେ ସାହସୀ ଏବଂ ଭାରତବର୍ଷର ସବୁଆଡେ ଏମାନେ ଜଗୁଆଳି । ତେଣୁ ରାତିରେ ଏକଲା ଚୋର ଡାକୁଙ୍କର ମୁକାବିଲା କରିବାକୁ ସେମାନେ ଉପଯୁକ୍ତ । ସେଥିପାଇଁ ଗୁର୍ଖାମାନଙ୍କୁବାହାଦୁର ବୋଲି ଡକାଯାଏ । ଓଡ଼ିଆମାନେ ସାଧାରଣତଃ ଡରୁଆ । ବିଶେଷକରି ରାତିର ନିର୍ଜନତା ଓ ଅସହାୟତାରେ ସେମାନେ ଏକଲା ଚୋରର ମୁକାବିଲା କରିବା ପୋଷାଏ ନାହିଁ । ଅପର ପକ୍ଷରେ ବଢେଇ କାମ ପାଇଁ ଆଜିକାଲି ଲୋକର ଏତେ ଅଭାବ । ସେ ଚାହିଁଲେ ଦିନକୁ ପଚିଶ ତିରିଶ ଟଙ୍କା ସହଜରେ ରୋଜଗାର କରି ପାରନ୍ତା । ସେ ବୃତ୍ତି ଛାଡି ଏବେ ସେ ହୁଣ୍ଡାକାମ କରୁଛି ।

କିନ୍ତୁ ସରକାରୀ କଳରେ ସବୁ ବେନିୟମ କାମ ମଧ ନିୟମକୁ ଛାଡ଼ି ହୋଇପାରେନାହିଁ ।

(ତା୦୬.୦୫.୧୯୮୫ରିଖ)





Digitized by srujanika@gmail.com

# ରାଜଧାନୀର ରାଜପଥରେ

ସେଦିନ ବଜାରରେ ଦାନ୍ତକାଠି ଆଉ କଦଳୀ କିଣୁଥିଲି । ରାଜରାସ୍ତା ଓରଫ ରାଜପଥ ରାଜ୍ୟପାଳଙ୍କ ରାଜଭବନଠାରୁ ଅଗ୍ନି ନିର୍ବାପନ କେନ୍ଦ୍ର ପର୍ଯ୍ୟନ୍ତ ଯେଉଁ ଚଉଡା ରାସ୍ତା ରହିଛି ସେହି ରାସ୍ତାରେ ମୁଁ ଦାନ୍ତକାଠି ଓ କଦଳୀ ମୂଲଉଥିଲି ।

ଏ ରାସ୍ତା ଏବେ ଏକତରଫା ରାସ୍ତା ହୋଇଛି । ପୁରୁଣା ଚଉଡା ରାସ୍ତା ଆହୁରି ଚଉଡା ହୋଇ ମଝିରେ ଗଛ, ବୃକ୍ଷ, ଘାସର ଲମ୍ବା ଲମ୍ବା ଦ୍ୱୀପପୁଞ୍ଜ ସବୁ ତିଆରି ହୋଇଛି । ଚମତ୍କାର ଯୋଜନା । ପଇସା ଖର୍ଚ୍ଚ ହେଉପଛେ, ଦୁର୍ନୀତି ହେଉପଛେ ରାସ୍ତା ବଡ଼ ଚକମକ୍ ହୋଇଯାଇଛି । ଏଇଠି କିନ୍ତୁ ଡେଲି ମାର୍କେଟ ରହିଛି ଏବଂ ରହିଥିବା ଯାଏ ସନ୍ଧ୍ୟାବେଳେ ଭିଡ ହେବା ସ୍ୱାଭାବିକ ।

ଦାନ୍ତକାଠି ଅଭାବ । କାରଣ ଧାନକଟା ବେଳେ ସେଥିରେ ବେଶୀ ପଇସା ଦିଟା ମିଳେ ବୋଲି ଦାନ୍ତକାଠି ବିକିବାକୁ ଆସୁଥିବା ଲୋକେ ସେ ମାସଟା ଗାଁରେ ଧାନକଟା ମଜୁରୀରେ ଚଳିଯାନ୍ତି । ତେଣୁ ବିଡ଼ା ଦଶ ପଇସା ଯାଗାରେ ପନ୍ଦର ପଇସା । ଦି ବିଡା ଦାନ୍ତ କାଠି ହାତରେ ଧରି କଦଳୀବାଲା ପାଖକୁ ଆସିଲି ।

ଟ୍ରାଫିକ୍ ପୋଲିସ କନେଷ୍ଟବଲ ମଧ କଦଳୀବାଲା ପାଖରେ ଠିଆ ହୋଇ ଦାମ ପଚାରୁଥିଲା । ହଠାତ୍ ନଇଁପଡି ଟ୍ରାଫିକ ବାବୁ ଗୋଟାଏ ଫେଣାରୁ ଦୁଇଟି କଦଳୀ ଛିଡାଇ ଆଣି ଚୋପାଛଡାଇ ଗୋଟିଏ ପରେ ଗୋଟିଏ ଖାଇବାକୁ ଲାଗିଲେ ।

ମୁଁ ପଚାରିଲି କ'ଣ ସାମ୍ପଲ ଚାଖୁଛନ୍ତି ।

''ହଁ ଆଜ୍ଞ ମିଠାବୋଲି କହିଲା ଯେ ଚାଖି ଦେଖୁଛି '' ପୋଲିସ ବାବୁ ଉତ୍ତର ଦେଲେ ।

କଦଳୀବାଲାକୁ ପଚାରଲି କ'ଣ ନଉଚ ଡଜନ ''

''ଆଜ୍ଞା ଅଢେଇଟଙ୍କା''

ଦି ଟଙ୍କାରେ ହବନି ?''

''କେତେ ନେବେ ? ''

''ଏଇ ଦି ଡଜନ ଖଣ୍ଡେ ନେଇଥାନ୍ତି '' ମୁଁ ଉତ୍ତର ଦେଲି ।

''ହଉ ଆଜ୍ଞା ନିଅନ୍ତୁ ଦୁଇ ଚାରଣା ଲଗେଇ ଦେବି '' କଦଳୀବାଲା ଉତ୍ତର ଦେଲା ।

ପୋଲିସବାବୁ କଦଳୀ ବାଲାକୁ ହୁକୁମ ଦେଲେ ।

'ଦୋ ବାଛିକରି ସେ ଫେଣାଟାରୁ ଅଧଡଜନ ।

କଦଳୀବାଲା ଗୋଟିଏ ଭଲ ଫେଣାରୁ ଛ'ଟି କଦଳୀ ଛିଡାଇ ପୋଲିସ ବାବୁଙ୍କୁ ବଢାଇଦେଲା । ଟ୍ରାଫିକବାବୁ ଗୋଟିଏ ପଚିଶି ପଇସି 'ସୁଇକିଟିଏ' ତଳକୁ ପକେଇ ଦେଇ ମୁହଁ ଫେରାଇ ଚାଲିଲେ ।

କଦଳୀବାଲା ମୁହଁରେ ନିରବ ବିରକ୍ତିର ଭାବ । ମୁଁ କହିଲି, ମୁଁ ତ ଦି ଡଜନ କଦଳୀ ନେବି । ମତେ ଆଠଟି କଦଳୀ ମିଳିବ ନା ଚାଖିବାକୁ ?''

କଦଳୀବାଲା କହିଲା ବାବୁ; ଏଠିପରା ବସି ବିକିବାକୁ ଦବନି ସେ ଟ୍ରାଫିକବାବୁ'' ।



Digitized by srujanika@gmail.com

ମୁଁ ପଚାରିଲି 'ଟ୍ରାଫିକବାବୁର ୮ଟି କଦଳୀକୁ ଦାମ ୨୫ ପଇସା । ଆଉ ମୋର ଡଜନ ଦିଟଙ୍କା ଚାରଣା ।ଏତ ବଡ଼ ଅନ୍ୟାୟ କଥା ?

କହନା  ବାବୁ ଏ ପୋଲିସବାଲାଙ୍କ ଜୁଲମ କଥା । ହଉ ନିଅ ବାବୁ ତମେ ଦିଟଙ୍କା ଦିଅ ଡଜନ । ଏତକ କହି ସେ ଦି ପେଣା କଦଳୀ ତା' ନାକ ଉପରକୁ ଟେକି ଆଙ୍ଗୁଠି ଚଳାଇ ଗଣିବାକୁ ଲାଗିଲା ।

ମୁଁ ମୁହଁ ବୁଲାଇ ପୋଲିସ  ବାଲାକୁ ଖୋଜୁଥିଲି । ଦେଖିଲି ଟ୍ରାଫିକବାବୁ ଚିନାବାଦମବାଲା ବସ୍ତାରେ ହାତ ପୁରାଇ ନିଜ ପକେଟ ଭର୍ତ୍ତି କରୁଛନ୍ତି ।

ମୋର ଇଚ୍ଛା ହେଉଥିଲା  ପୋଲିସ ବାଲା ପକେଟରେ ହାତ ପୁରାଇ ଚିନାବାଦାମ ଛଡାଇ ଖାଇବାକୁ । କାରଣ ମୁଁ ଚିନାବାଦାମ ଭାରି ଭଲପାଏ ।

(ତା୧୦.୦୫.୧୯୮୩ରିଖ)





Digitized by srujanika@gmail.com

# କ୍ଲୀନ ଗ୍ୟାସ

ମଣିଷଟା ପରିସ୍ଥିତିର ଦାସ । ପ୍ରଥମେ ଯେତେବେଳେ ମଣିଷ ଆଦିମ ଅବସ୍ଥାରେ ଥିଲା ସେତେବେଳେ ରୋଷେଇ କରି ଖାଦ୍ୟ ଖାଇବା ଶିଖିନଥିଲା । ନିଆଁର ବ୍ୟବହାର ଶିଖିଲା ପରେ କଞ୍ଚାମାଂସ ଓ ଅନ୍ୟାନ୍ୟ ଉଦ୍ଭିଦ ଜାତୀୟ ଖାଦ୍ୟକୁ ପୋଡି ସେକି ଖାଇବା ଅଭ୍ୟାସ କଲା । ତା' ପରେ ପାତ୍ରରେ ରଖି ରାନ୍ଧିବା ଅଭ୍ୟାସ ହୋଇଗଲା ପରେ ଆଜି ଆସି ପହଞ୍ଚିଛି ସୁଆଦିଆ ଖାଦ୍ୟ ଖାଇବା ପାଖରେ ।

କାଠ କୋଇଲା ଓ ବିଜୁଳି ଜାଳେଣୀ ପରେ ଗ୍ୟାସ ଜାଳେଣୀ ଗୃହିଣୀମାନଙ୍କ ପାଇଁ କେତେ ସୁବିଧା ହୋଇଯାଇଛି । ଗୋଟିଏ ମିନିଟରେ ଚା କପେ ଦିନର ବା ରାତିର ଯେ କୌଣସି ମୁହୂର୍ତ୍ତରେ ମିଳିଯିବ । ମାଂସ ପନ୍ଦର ମିନିଟରେ ରାନ୍ଧି ହୋଇଯିବ, ଗ୍ୟାସ ଆଉ ପ୍ରେସର କୁକୁର ହେଲେ । ହାତରେ କଳା ଲାଗିବାର ନାହିଁ । ବାସନ ସଫା ରହିବ । ଚାକର ନହେଲେ ଅସୁବିଧା ନାହିଁ । କିନ୍ତୁ ଏବେ ସେ ସୁବିଧା ଜାଳେଣୀ ପାଇଁ କେତେ ଅସୁବିଧା ଉପୁଜିଲାଣି ।

କ୍ଲୀନଗ୍ୟାସ ଅର୍ଥାତ ସଫା ଗ୍ୟାସରେ ରୋଷେଇ କରିବା ପାଇଁ ପ୍ରଭାବ ଦରକାର । ଠିକ୍ ସମୟରେ ଗ୍ୟାସ ମଳୁନାହିଁ । ଗ୍ୟାସ ପାଇବାକୁ ହେଲେ ଇଣ୍ଡିଯାନ ଅୟଲ କରପୋରେସନ କିମ୍ବା ହିନ୍ଦୁସ୍ଥାନ ପେଟ୍ରୋଲିୟମ କମ୍ପାନୀ କିମ୍ବା ସେମିତି ସବୁ କମ୍ପାନୀର ବଡ ଅଫିସରଙ୍କ ସହିତ ଘନିଷ୍ଠ ସଂମ୍ପର୍କ ରହିଥିବା ଦରକାର । ନଚେତ ତୁମେ ଜଣେ ଭିଆଇପି ହୋଇଥିଲେ ଭଲ । ଭିଆଇପିମାନେ ମୁଖ୍ୟମନ୍ତ୍ରୀ କିମ୍ବା ପୂର୍ବତନ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ଆଇଏଏସ କି ଆଇପିଏସ ଅଫିସର ନଚେତ ଟାଣୁଆ ଏମଏଲଏ(ଶାସକ ଦଳର ନହୋଇ ବିରୋଧୀ ଦଳର ହେଲେ ମଧ ଚଳିବ) କିମ୍ବା ଅନ୍ତତଃ କହି ବୋଲି ପାରିବା ସାମ୍ବାଦିକ ହେବା ଦରକାର ।

ସାଧାରଣ ନାଗରିକ ହେଲେ ମଲା । ମାସେ ଆଗରୁ ସିଲିଣ୍ଡର ବୁକ୍ କଲେ ମଧ ମିଳିବନି । ଏଗାରଥର ଫୋନ କଲେ କିମ୍ବା ଦଶଥର ସେଠାକୁ ଦଉଡିଲେ ବି କ୍ଲିନ୍ ଗ୍ୟାସ ମିଳିବା ମୁସ୍କିଲି ।

କିନ୍ତୁ ଗ୍ୟାସ ଯୋଗାଣକାରୀ ସଂସ୍ଥାର ଅଧିକାରୀମାନେ ଏବଂ କେନ୍ଦ୍ରର ମନ୍ତ୍ରୀ ମଧ ଘୋଷଣା କରି କହିଛନ୍ତି ଏବେ ଦେଶରେ ଜାଳେଣୀ ଗ୍ୟାସର ଅଭାବ ନାହିଁ । ପ୍ରତି ଖାଉଟୀକୁ ଦ୍ୱିତୀୟ ସିଲିଣ୍ଡର ମଧ ଦିଆଗଲାଣି ।

କିନ୍ତୁ ଗ୍ୟାସ କମ୍ପାନୀକୁ ଯାଆନ୍ତୁ ଦେଖିବେ ଘରଣୀ ମାନଙ୍କର କି ଭିଡ । ବାବୁମାନେ ମଟର ଗାଡି ନେଇ, ଅଫିସରୁ ସିଏଲ ନେଇ , କିମ୍ବା ପ୍ରେଷ୍ଟିଜିଭ ମାରିଲାଇନ ଦେଇ କ୍ଲୀନଗ୍ୟାସ ପାଇଁ କି କାକୁତି ମିନତି କରୁଛନ୍ତି । ଗ୍ୟାସ ବୁକ୍ କରିବାର ପନ୍ଦର ଦିନରୁ ମାସେ ଭିତରେ ମଧ ଗ୍ୟାସ ସ୍ୱାଭାବିକ ରୀତିରେ ପାଇବା ଅସମ୍ଭବ । ଫୋନ୍ କଲେ କହିବେ 'ଆଜି ନୁହେଁ କାଲି' ନଇଲେ 'ତିନିଦିନ ପରେ ଗ୍ୟାସ ମିଳିବ ।'



Digitized by srujanika@gmail.com

ତିନିଦିନପରେ ପୁଣି ଫୋନ କଲେ କହିବେ, ଆଉ ଦିଦିନ ଲାଗିବ । ଆପଣଙ୍କ ନମ୍ବର ଆସିନି ।'

ଆପଣ ଯଦି କହିବେ ସିଲିଣ୍ଡରଟା ଆପଣଙ୍କ ପାଖକୁ ପଠାଇଲେ ଆଜି ଗ୍ୟାସ ଦେବେ କି ?' ତେବେ ଉତ୍ତରଦାତା ଦୟାକରି କହିବେ 'ହଉ କାଲି ପଠାନ୍ତୁ ।'

ତହିଁଆର ଦିନ ଆପଣ ଭୁବନେଶ୍ୱରର ଚଢାରିକ୍ସା ଭଡା ଖର୍ଚ୍ଚ କରି ସିଲିଣ୍ଡରଟା ନେଇ ପହଞ୍ଚିଲେ । ଅଧଘଣ୍ଟାଏ ସେଠାରେ ଆଞ୍ଜା ଆପଣ କହିଲା ପରେ ଆପଣଙ୍କୁ କୁହାଯିବ 'ଆପଣ କାଲି ଆସନ୍ତୁ' କିମ୍ବା 'ଆପଣ ସିଲିଣ୍ଡରଟା ଫେରାଇ ନେଇ ଯାଆନ୍ତୁ, କାଲି ଆପଣଙ୍କ ଗ୍ୟାସ ଯିବ ।' ଯେମିତିକି ଗ୍ୟାସ ବ୍ୟବସାୟୀ ହାତରେ ଆମର ଜୀବନ ନାଟିକା ?

(ତା୨୩.୦୪.୧୯୮୩ରିଖ)





Digitized by srujanika@gmail.com

# ମିଆଁ-ବିବି ଅରାଜି....

ଅନେକବର୍ଷ  ପରେ ଏବେ ମାମୁଁଘରକୁ ଯାଇଥିଲି । ମାମୁଁ ଘର ପୁରୁଣା ସାମନ୍ତବାଦ ଢାଞ୍ଚାର ପରିବାର । ଏବେ ଅବଶ୍ୟ ଆଉ ପୂର୍ବର ସେ ପ୍ରଭାବ କିମ୍ବା ବିଭବ ନାହିଁ । କର୍ପୁର ଉଡିଯାଇ କନା ମଧ୍ଯ ଜୀର୍ଣ୍ଣ ହୋଇଗଲାଣି ।

ମୋ ଅଜାଙ୍କର ବାପାଙ୍କର ଜଣେ ଅନ୍ତର ଭାଇଥିଲେ । ଅନ୍ତର ଭାଇ ବୋଇଲେ ଠାକୁର ଅଜାଙ୍କର (ଅଜାଙ୍କର ବାପା) ଜଣେ ରକ୍ଷିତା ସ୍ତ୍ରୀଙ୍କ ଠାରୁ ଜନ୍ମିତ ପୁତ୍ର । ହିସାବରେ ସେ ମଧ୍ଯ ଅଜା । ତାଙ୍କ ନାଁ ଥିଲା ଚନ୍ଦନ ।ଆମେ ଅର୍ଥାତ ମୁଁ ଓ ମୋରମାମୁଁ ପୁଅ ଭାଇମାନେ ପିଲାଦିନୁ ତାଙ୍କୁ ଚନ୍ଦନ ଅଜା ବୋଲି ଡାକିଆସିଛୁ ।

ଏଥର ଗଲାବେଳକୁ ଦେଖିଲି ଚନ୍ଦନ ଅଜା ମରିଗଲେଣି । ଚନ୍ଦନ ଅଜାଙ୍କ ସ୍ତ୍ରୀ ବାଳ ପାଚିକରି ବୁଢୀ ହେଲେ ବି ମଜବୁତ ଅଛି । ସେ ଆଇରଘର ସଠିପୁର । ତାଙ୍କୁ ସମସ୍ତେ ସେଥିପାଇଁ ସଠିପୁରିଆଣୀ ବୋଲି  ଡାକନ୍ତି । ତା ନାଁ ସଠିପୁରିଆଣି ଏବଂ ତା ନାଁଟା ପ୍ରକୃତରେ କ'ଣ କେହି ଅନୁସନ୍ଧାନ କରିବା ଆବଶ୍ୟକ ପଡିନି ।

କଥା ପଦୁ ପଦୁ ଚନ୍ଦନ ଅଜା ଓ ସଠିପୁରିଆଣି ଆଇ ମଧ୍ୟରେ ଥିବା ବିଭିନ୍ନ ପ୍ରକାରର ଦାମ୍ପତ୍ୟ କଳହ କଥା ପଡିଥିଲା । ଗୋଟିଏ ତକରାଳର କଥା ଏଠି କହୁଛି ।

ଗୁରୁବାର ଦିନ ସକାଳୁ ସକାଳୁ ଦୁଆର ଘରେ ପହଁରାପାଣି ପଡେ ଓ  ଝୁଣ୍ଟକନା ଲଗେଇ ଗୋବର ପାଣିରେ ଘର କାନ୍ଥ ଓ ଦୁଆର ଲିପାପୋଛା ହୁଏ । ଆଜିକାଲିର ଅନେକ ପିଲାଏ(ମହିଳାଙ୍କ ସମେତ) ପହଁରାପାଣି ଓ ଝୁଣ୍ଟକନା କ'ଣ ବୁଝିପାରିବେନି । (ବୁଝିନପାରିଲେ ଗାଁରେ ରହୁଥିବା ବଅସ ହୋଇଥିବା ଲୋକଙ୍କୁ ପଚାରି ବୁଝନ୍ତୁ) ଥରେ ବୁଧବାର ରାତିରେ ଶୋଇଲା ବେଳେ ଚନ୍ଦନ ଅଜା ଓ ସଠିପୁରିଆଣି ଆଇର କଜିଆ ଲାଗିଲା । ଶେଷରେ ଶୋଇଲା ପୂର୍ବରୁ କଥା ଛିଡିଲା ଯେ ତହିଁଆରଦିନ ସକାଳୁଯିଏ ଆଗେ ଉଠିବ ସେ ଗୋବର ପାଣି ପକେଇବ ଓ ଝୁଣ୍ଟକନା ଲଗାଇବ । ଗୁରୁବାର ସକାଳ ହେଲା । ଚନ୍ଦନ ଅଜା ସଠିପୁରିଆଣିଙ୍କୁ ଉଠେଇ କହିଲା 'ତୁ ଉଠ୍' । ସଠିପୁରିଆଣି କହିଲା 'ତୁ ଯୋଗନିଖିଆ ଆଗେ ଉଠୁନୁ ?' ଚନ୍ଦନ ଅଜା ଧମକେଇ କହିଲା 'ହଇଲୋ ବଜାତ୍ ମାଇକିନିଆ । ଘର ନିପାପୋଛା ମୋ ହାତରେ କରେଇବୁ । ଉଠୁବୁନା । ଦୁହେଁ ଶୋଇ ରହିଲେ । ଦିନ ଦଶଟା ବାଜିଲା । କବାଟ ଖୋଲୁନି । ଘରେ ଅନ୍ୟମାନେ ଡାକିଲେ । ଚନ୍ଦନ ଅଜା ସଠିପୁରିଆଣି ଘାଲେଇ ଶୋଇଛନ୍ତି । କେହି  ଜବାବ ଦେଉ ନାହାଁନ୍ତି । ସେ ଅଂଚଳରେ ବୋଡା ସାପ ବହୁତ । ସମସ୍ତେ ଭାବିଲେଯେ ଦି ଜଣ ଯାକ ବୋଡା ସାପ କାମୁଡାରେ ଶେଷ ବୋଧେ । ଶାବଳ ନେଇ କବାଟ ତଡା ହେଲା ବେଳକୁ ଭିତରୁ ଦୁହିଁଙ୍କର ଠେଲା ପେଲାର କଜିଆଗୋଳ ଶୁଭିଲା । ଉଭୟ ପରସ୍ପରକୁ କହୁଛନ୍ତି ଆଗେ ଉଠି କବାଟ ଖୋଲିବାକୁ । କିନ୍ତୁ କାମ କରିବା ଭୟରେ କେହି ଉଠୁ ନାହାଁନ୍ତି । ଅନ୍ୟମାନେ ପାଟି କଲାରୁ କବାଟ ଖୋଲିଲା ।

(ତା୧୧.୦୪.୧୯୮୩ରିଖ)





Digitized by srujanika@gmail.com

# ତାର ଦେଖି ମୋର ଡେଇଁଲା ଡାହାଣ ଆଖି

ଏବେ ଜୟନ୍ତୀର ଜୟନ୍ତୀ ପାଳିତ ହେବା ଆରମ୍ଭ ହେଲାଣି । ଜୟନ୍ତୀ ସବୁଘରେ ପ୍ରାୟ ପାଳିତ ହୁଏ । ଏଥିରେ ନୂଆକଥା କିଛି ନାହିଁ । ଘରେ ପିଲାଟିଏ ହେଲେ ଷଠୀଘର, ଏକୋଇଶିଆ ଓ ଜନ୍ମଦିନ ଆଦି ମା' ବାପା ସ୍ନେହରେ କରନ୍ତି । ପିଠାପଣା ହୁଏ । ସତ୍ୟନାରାୟଣ ପାଲାହୁଏ । ଶିରିଣି ବଣ୍ଟା ହୁଏ ।

ଏବେ ଶିକ୍ଷିତ ଧୋବଧାଉଳିଆଙ୍କ ଘରେ ପଶ୍ଚିମୀ ଢାଞ୍ଚାରେ 'ବାର୍ଥଡେ ସେଲିବ୍ରେଟ' ହେଉଛି । ଏହି ଜନ୍ମ ଦିନ ପାଳନରେ ଓଡିଆ ପିଠା ପରିବର୍ତ୍ତେ ପଶ୍ଚିମୀ 'କେକ୍' ଉପରେ ବୟସ ଅନୁସାରେ ସେତିକି ସଂଖ୍ୟାର ମହମବତୀ ଜଳାହୋଇ କେକ୍ କଟା  ଯାଉଛି । ପିଲାର ସାଙ୍ଗସାଥୀ, ପିଲାର ବାପା ମା' ଓ ପରିବାରର ଅନ୍ୟ ଲୋକେ ଓ ପିଲାର ସାଙ୍ଗସାଥୀଙ୍କ ବାପା ମା' ନିମନ୍ତ୍ରିତ ହୋଇ ଜନ୍ମଦିନ ପାଇଁ ଗୀତ ଗାଇ ତାଳିମାରି ଏହି ଜୟନ୍ତୀ ପାଳନ ଉତ୍ସବରେ ସାମିଲ ହୁଅନ୍ତି । ପିଲାମାନେ  ବଡ ହୋଇଗଲେ ବାର୍ଥ-ଡେ ସେଲିବ୍ରେଟ କରିବା କାର୍ଯ୍ୟକ୍ରମ ଟିକେ ଢିଲା ପଡିଯାଏ ।

ଗାଁରେ ଜନ୍ମଦିନ ପାଇଁ ବ୍ରାହ୍ମଣକୁ ନଡିଆ, କଦଳୀ, କ୍ଷୀର ଆଦି ଦେଇ କିଛି ଦକ୍ଷିଣା ଦେଲେ ସେ ଗ୍ରାମ ଦେବତୀ କିମ୍ବା ମହାଦେବଙ୍କୁ ଗାଧେଇ ପୂଜା କରି ଆଣି ପଞ୍ଚାମୃତ ଦିଅନ୍ତି । ମା'ମାନେ ସନ୍ଧ୍ୟାବେଳକୁ ଚକୁଳି ପିଠା ଲେଉଟାନ୍ତି । ସକାଳେ ଅବଶ୍ୟ ପିଲାକୁ ଗାଧୋଇ ପାଧୋଇ ନୂଆ ପୋଷାକ ସହିତ ଚନ୍ଦନ ପିନ୍ଧାଇ ବଡ ଗୁରୁଜନମାନଙ୍କ ପାଖରେ ମୁଣ୍ଡିଆ ମାରିବାକୁ କୁହାଯାଏ ।

ଏବେ ଏହି ଜୟନ୍ତୀ ପାଳନ ଉତ୍ସବ ବଡ ବଡ ପାକଳା ଓ ପୋଖତ ଲୋକଙ୍କ ପାଇଁ ପରିବାର ବାହାରେ ଆୟୋଜିତ ହେଉଛି । ଏକଥାଟିବି ବିଶେଷ ନୂଆ ନୁହେଁ । ଯୋଗଜନ୍ମା ମହାପୁରୁଷମାନଙ୍କର ଜନ୍ମଦିନ ସବୁଦିନେ ପାଳିତ ହେଉଥିଲା । ପୁରୁଣାର କୃଷ୍ଣ ଜନ୍ମ, ରାଧାଷ୍ଟମୀ ଆଦି ସେହି ନ୍ୟାୟରେ ଲୋକେ ପାଳନ୍ତି । ଲେନିନଙ୍କ ଜନ୍ମଦିନ କମ୍ୟୁନିଷ୍ଟମାନେ ପାଳନ୍ତି । ମହାତ୍ମାଗାନ୍ଧୀଙ୍କ ଜନ୍ମଦିନ ଆମ ଦେଶର ଏକ ମହାନ ଦିବସ ଭାବରେ ଅନ୍ତତଃ ସରକାରୀ ଖାତାରେ ଗଣାଯାଏ । ନେହେରୁଙ୍କ ଜନ୍ମଦଦିନ ବାଳ ଦିବସ , ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଜନ୍ମଦିନ ମଧ୍ୟ ଗୁରୁଦିବସ ଭାବରେ ପାଳିତ ହୁଏ ।

ଆମ ଓଡିଶାରେ ଉତ୍କଳମଣି ଗୋପବନ୍ଧୁ ଦାସ ଓ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଜୟନ୍ତୀ ପାଳିତ ହୋଇ ଆସୁଥିଲା । ଏମିତି ଆଉ କେତେକ ମହାପୁରୁଷମାନେ ଯେଉଁମାନେ ନିଜ ପାଇଁ କିଛି କରି ଯାଇନାହାନ୍ତି ସେମାନଙ୍କ ଜୟନ୍ତୀ ମଧ୍ୟ ଆଗ୍ରହୀ ଲୋକେ ପାଳନ କରୁଥିଲେ ।

ଏବେ କିନ୍ତୁ ଜୀଅନ୍ତା ଚଲତା ଫିରତା ଲୋକଙ୍କର ଜୟନ୍ତୀ କଲିକତାଠାରୁ ଆରମ୍ଭ କରି ଓଡିଶାର ପୁରପଲ୍ଲୀରେ ପାଳନ କରାଗଲାଣି । ଏହି ଜୟନ୍ତୀପାଳନ ସମ୍ବାଦ ବିଭିନ୍ନ ଖବରକାଗଜମାନଙ୍କରେ ପ୍ରତିଦିନ ପ୍ରକାଶିତ ଓ ପ୍ରଚାରିତ ହେଉଛି । ଏହି ଖବରକାଗଜମାନଙ୍କରେ ନିଜ ନାମ ଓ କାମ ସ୍ଥାନପାଇବା ପାଇଁ ଅନେକ ଉଦ୍ୟୋକ୍ତା ଏସବୁ ଜୟନ୍ତୀ ପାଳନ କମିଟିରେ ସଭ୍ୟହୋଇ ନିଜର ନାମତାଲିକା ପ୍ରକାଶ କରାଇପାରୁଛନ୍ତି । ଚାରିଆଡେ ଜୟନ୍ତୀ ପାଳନ କରିବାକୁ ନିବେଦନ ମଧ୍ୟ ଛପାଯାଉଛି ।

ଆସ୍ତେ ଆସ୍ତେ ଏହି ରୋଗ ସଂକ୍ରାମକ ହେଲାଣି । କେହି ଜଣେ ସାମାନ୍ୟ ଡେଙ୍ଗା ଉଚ୍ଚା ଲୋକଙ୍କର ସ୍ତାବକ, ପ୍ରଶଂସକ, ସମର୍ଥକ, ଶୁଭେଚ୍ଛୁ ଓ 'ଚାମଚା'ମାନେ ଏପରି ଜୟନ୍ତୀପାଳନ କାମରେ



Digitized by srujanika@gmail.com

ଲାଗିଯାଉଛନ୍ତି । ପାଇକାରୀ ଦରରେ ଏହି ଜୟନ୍ତୀ ବ୍ୟବସାୟ ଆରମ୍ଭ ହେଲାଣି ।

ମୋ ବାପା ଜଣେ ଗାଉଁଲି କୃଷକ । କିନ୍ତୁ ଗାଁରେ ତାଙ୍କୁ ମଧ କେତେକ ଲୋକ ମାନନ୍ତି । ମୁଁ ବାପାଙ୍କୁ କହିଛି ଯେ ସେ ଧାନ ବିକ୍ରିକରି କିଛିଟଙ୍କା ଦିଅନ୍ତୁ । ଗାଁ ଟୋକାମାନଙ୍କୁ ଖାଇବା ପିଇବା ପାଇଁ ଦେଲେ ସେମାନେ କଟକ ଭୁବନେଶ୍ୱରରୁ ମୁଖ୍ୟଅତିଥି, ମୁଖ୍ୟବକ୍ତା, ସମ୍ମାନିତ ଅତିଥି ଆଦି ଯୋଗାଡକରି ଆମ ଗାଁରେମୋ ବାପାଙ୍କର ଜୟନ୍ତୀ ଉତ୍ସବ କରିବେ । ଖବରକାଗଜରେ ବାହାରିଲେ ମୋ ବାପାଙ୍କୁତ ଓଡିଶାରେ କେତେ ଲୋକ ଜାଣିଯିବେ !

(ତା୧୧.୦୨.୧୯୮୩ରିଖ)





Digitized by srujanika@gmail.com

# ''ବାର୍ଷିକ ଅଧିବେଶନ'' ସଂଗଠନ

ଯେଉଁମାନେ ସମ୍ବାଦପତ୍ର ଚଳାଉଛନ୍ତି ସେମାନେ ପ୍ରତିଦିନ ଗୁଡିଏ ଅପ୍ରିୟ କଥା ଓ କାର୍ଯ୍ୟର ସମ୍ମୁଖୀନ ହେଉଛନ୍ତି । ସେଥିମଧ୍ୟରୁ ଗୋଟିଏ ହେଲା ବାର୍ଷିକ ଅଧିବେଶନ । ଅନୁଷ୍ଠାନ ଗୁଡିକର ବାର୍ଷିକ ଅଧିବେଶନ ବସିବାର ଭବିଷ୍ୟତ ସମ୍ବାଦ ଏବଂ ବସିସାରିଲେ ଅଧିବେଶନର ବିବରଣୀ ମୂଳକ ଲମ୍ବା ସମ୍ବାଦ ପ୍ରକାଶ ପାଇଁ ଚାପର କିମ୍ବା ଅନୁରୋଧର ମୁକାବିଲା କରିବା ।

ଅନେକ ଅନୁଷ୍ଠାନ ରହିଛି (ରେଜେଷ୍ଟ୍ରୀକୃତ କିମ୍ବା ଅଣରେଜେଷ୍ଟ୍ରୀକୃତ) ଯାହାର କେବଳ ବାର୍ଷିକ ଅଧିବେଶନ ଉତ୍ସବ 'ମହା ସମାରୋହରେ' ପାଳିତ ହୁଏ । ଅନେକ ସମୟରେ ଉପଯୁକ୍ତ ସଂଗଠକ ଅଭାବରୁ, ଅର୍ଥାଭାବରୁ ଅନୁଷ୍ଠାନରେ ଯୋଗଦେବାକୁ ନାମଯାଦା ଅତିଥି ନମିଳିବାରୁ କିମ୍ବା ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କ ମଧ୍ୟରେ ମତଭେଦ ଓ କଳିକଜିଆ ଘଟିଥିବାରୁ ଏହି ବାର୍ଷିକ ଅଧିବେଶନ ତିନି ଚାରିବର୍ଷ ପର୍ଯ୍ୟନ୍ତ ମଧ୍ୟ ହୋଇପାରେ ନାହିଁ ।

ବାର୍ଷିକ ଅଧିବେଶନ ଅନୁଷ୍ଠାନର ବର୍ଷସାରା କିଛି କାମ ନଥାଏ । ରାଜନୈତିକ ଲୋକ ବିଶେଷ କରି ମନ୍ତ୍ରୀ (ନ ମିଳିଲେ ଏମଏଲଏ, ଏମପି, ବ୍ଲକ ଚେୟାରମ୍ୟାନକୁ ନେଇ କାମ ଚଳାଇବାକୁ ହୁଏ), ବଡ ଅଫିସର (ବିଭାଗୀୟ ସେକ୍ରେଟେରୀ ବା ଡାଇରେକ୍ଟର- ବିଶେଷ କରି ସାଂସ୍କୃତିକ ବିଭାଗର) ଉଚ୍ଚ ପାହ୍ୟାର ଇଞ୍ଜିନିଅରଙ୍କୁ ଅତିଥି କରି ଆଣିବା ପାଇଁ ସମ୍ମତି ଖୋଜାଯାଏ । ମୁଖ୍ୟମନ୍ତ୍ରୀ ମିଳିଲେ ଆଉ କଥା ନାହିଁ । ନହେଲେ ଉଚ୍ଚ ପାହ୍ୟାର କ୍ଷମତାଶାଳୀ ମନ୍ତ୍ରୀ ହେଲ ଭଲ । ଯଦି କେହି ମିଳୁ ନାହାଁନ୍ତି ତେବେ ସମ୍ବାଦ ପତ୍ରକୁ ପଠାଉଥିବା ସମ୍ବାଦରେ ଅମୁକ ମନ୍ତ୍ରୀ କିମ୍ବା ସମୁକ ଅଧିକାରୀଙ୍କୁ ଅତିଥି ହୋଇ ଆସିବାକୁ ଅନୁରୋଧ କରାଯାଇଛି ବୋଲି ଲେଖିଦିଆଯାଏ ।

ଅତିଥି ହୋଇ ଆସିବାକୁ ଯଦି ମନ୍ତ୍ରୀ କିମ୍ବା ବଡ ପାହ୍ୟା ଅଫିସରଙ୍କର ସମ୍ମତି ମିଳେ ତାହାହେଲେ ସଂପୃକ୍ତ ବିଭାଗର ସ୍ଥାନୀୟ ତଳ ପାହ୍ୟାର ଅଫିସରଙ୍କୁ ଅନୁରୋଧ କିମ୍ବା ପ୍ରଭାବିତ କରି ବାର୍ଷିକ ଅଧିବେଶନ କିମ୍ବା ସମ୍ମିଳନୀ ପାଇଁ ଯୋଗାଡ ଆରମ୍ଭ କରାଯାଏ । ଅସଲ ହେଲା ସମ୍ବଳ । ଏସବୁ କାମ ଭଲ ପଇସା ସଂଗ୍ରହ ନହେଲେ ହେବ କିପରି ?

କେତେକ ସମ୍ବାଦପତ୍ର ପ୍ରତିନିଧିମାନଙ୍କର ମଧ୍ୟ ଅତିଥି ହୋଇ ବକ୍ତୃତା ଦେବା ଏବଂ ମନ୍ତ୍ରୀ ତଥା ଉଚ୍ଚ ପାହ୍ୟା ଅଫିସରଙ୍କ ସହିତ ଟିକେ ଘଷିହେବାର ଦୁର୍ବଳତାର ସୁଯୋଗ ମଧ୍ୟ ଏହି 'ବାର୍ଷିକ ଅଧିବେଶନ' ସଂଗଠନର ଉଦ୍ୟୋକ୍ତାମାନେ ନିଅନ୍ତି । ଏଥିରେ ସାମ୍ବାଦିକମାନେ କୃତକୃତ୍ୟ ହେବା ସଂଗେ ସଂଗେ ସଂପୃକ୍ତ ସମ୍ବାଦପତ୍ରରେ ବଡ ବଡ ଅକ୍ଷରରେ ଲମ୍ବା ବିବରଣୀମାନ ପ୍ରକାଶିତ ହେବାର ସୁବିଧା ଥାଏ ।

ଅମୁକ ଦିନ ଅମୁକ ସ୍ଥାନରେ ଅମୁକ ଅନୁଷ୍ଠାନର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ଏବଂ ସମୁକ ବାବୁ ସଭାପତି, ସମୁକ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ସମୁକ ଅଧ୍ୟାପକ ମୁଖ୍ୟ ବକ୍ତା, ସମୁକ ଶାସନ ସଚିବ ଉଦଘାଟକ ଭାବେର ଯୋଗ ଦେଇଥିଲେ ଏବଂ ସେମାନଙ୍କ ଭାଷଣରେ ଯାହା ସବୁ ସାର ଓ ଅସାର କଥା କହିଥିଲେ ସବୁଯାକ ଲେଖି ଉଦ୍ୟୋକ୍ତାମାନେ ଆଣି ସମ୍ବାଦପତ୍ର ସଂପାଦକ କିମ୍ବା ବାର୍ତ୍ତା ସମ୍ପାଦକଙ୍କ



Digitized by srujanika@gmail.com

ଟେବୁଲରେ ଥୋଇ ' ଆଜ୍ଞା, ଏଇଟା ଯେମିତି ଆଜି ବାହାରିବ' କହି ଅନୁନୟ ବିନୟ ହୋଇ ବିଭିନ୍ନ ପରୋକ୍ଷ ଚାପ ସୃଷ୍ଟି କରିବାକୁ ଚେଷ୍ଟା କରିବେ ।

ଏହି ଅନୁଷ୍ଠାନମାନେ ବର୍ଷସାରା ଆଉ କିଛି କରନ୍ତି ନାହିଁ । ବାର୍ଷିକ ଅଧିବେଶନ ସଭା କରାଇବା ଏବଂ ସେଥିପାଇଁ ସରକାରୀ ସାହାଯ୍ୟ ଆଦାୟ କରିବା ଏମାନଙ୍କର କାମ । ମନ୍ତ୍ରୀ ଓ ଅଫିସରଙ୍କୁ ଏହି ବାର୍ଷିକ ଅଧିବେଶନ ଉତ୍ସବକୁ ଅତିଥି କରି ନେଇ ସମ୍ବାଦପତ୍ର ଓ ରେଡିଓରେ ଖବର ପ୍ରଚାର କରାଇ ନେଲେ ସାଧାରଣ ଲୋକଙ୍କ ପାଖରେ ଏହି ଉଦ୍ୟୋକ୍ତାମାନେ ଉପର ମହଲରେ ହାତ ଅଛି କହି 'କାମ କରାଇ ଦେବା'ର ପ୍ରତିଶ୍ରୁତି ଦେଇ ପେଟପାଟଣା ମଧ ଚଳାଇ ନିଅନ୍ତି ।

ସମସ୍ତେ ଜାଣନ୍ତି ଏ ସବୁ ଅନୁଷ୍ଠାନର ପତିଆରା ସଂପର୍କରେ । ତଥାପି ବଡ ବଡ ଲୋକମାନେ ଅର୍ଥାତ ସମାଜର ବଡପଣ୍ଡାମାନେ ଏହିସବୁ ବାର୍ଷିକ ଅଧିବେଶନ ଅନୁଷ୍ଠାନରେ ଅତିଥି ହେବାକୁ ବେଶ ଆଗ୍ରହୀ ।

(ତା୨୧.୦୨.୧୯୮୦ରିଖ)





Digitized by srujanika@gmail.com

# ଆଲୋପାଥ୍ ବନାମ ହୋମିଓପାଥ୍

ପାଶ୍ଚାତ୍ୟ ଶିକ୍ଷାରେ ଡାକ୍ତରମାନେ ହୋମିଓପାଥିରେ ବିଶ୍ୱାସ କରନ୍ତି ନାହିଁ ସାଧାରଣତଃ । ସେମାନେ ହେମିଓପାଥିକୁ ବିଜ୍ଞାନ ସମ୍ମତ ଡାକ୍ତରୀବିଦ୍ୟା ବୋଲି ମାନନ୍ତି ନାହିଁ । କିନ୍ତୁ ସେହି ଶିକ୍ଷାରୁ ଉଦ୍‌ଭବ ଏବଂସେହି ପାଶ୍ଚାତ୍ୟ ଜଗତର ଉନ୍ନତ ଦେଶ ଜର୍ମାନୀର ହ୍ୟାନିମାନ୍ ହିଁ ହୋମିଓପାଥ୍ ଚିକିତ୍ସାର ଜନ୍ମଦାତା ।

ଏବେ ଦିନେ କଟକ ବଡ ଡାକ୍ତରଖାନାର ଜଣେ ଡାକ୍ତରଙ୍କ ସହିତ ବହୁବର୍ଷ ପରେ ଦେଖା ହେଲା । ଡାକ୍ତରଟିକେ ଅବସନ୍ନ ଓ ଅନ୍ୟ ମନସ୍କ ଥିଲାପରି ଜଣାପଡିଲା । କାରଣ ପଚାରିବାରୁ କହିଲେ ଦେହ ଭଲ ରହୁନି କେତେ ବର୍ଷ ହେଲା । ଆଶ୍ଚର୍ଯ୍ୟ କଥା ।ବଡ ଡାକ୍ତରଖାନାର ଡାକ୍ତର ଏପରିକି ରୋଗରେ ପଡିଛନ୍ତି ଯେ, କେତେବର୍ଷ ହେଲା ଅସୁସ୍ଥ । ଡାକ୍ତରଙ୍କ 'ଆଟୋଫ' ହୋଇଛି ବୋଲି ଜାଣିଲି । ଏହି ଇଂରାଜୀ ଶବ୍ଦର ଆକ୍ଷରିକ ଅର୍ଥ କିମ୍ବା ପ୍ରତିଶବ୍ଦ କ'ଣ ହେବ ମୁଁ ନଜାଣିଥିଲେ ହେଁ ଏହାର ଅର୍ଥ ହେଲା ଘୁଣ ଖାଇବା କିମ୍ବା ପୋରହିଆ ହେବା । ରୋଗ କ'ଣ ବୁଝିବାରୁ ଜଣାପଡିଲା ଯେ ତାଙ୍କର ଶିରାଗୁଡିକ ଦୁର୍ବଳ ହୋଇଯାଉଥିବାରୁ ମାଂସପେଶୀଗୁଡାକ ଶୁଖିଯାଇଛି । ପ୍ରଥମେ ଗୋଟିଏ ଗୋଡ ଓ ଏବେ ଦ୍ୱିତୀୟ ଗୋଡଟି ସରୁ ହୋଇଗଲାଣି । ଏଥିପାଇଁ କୌଣସି ନିଦାନ ପାଶ୍ଚାତ୍ୟ 'ଆଲୋପାଥି' ଚିକିତ୍ସା କ୍ଷେତ୍ରରେ ନାହିଁ ବୋଲି ଡାକ୍ତର ଜଣକ କହିଲେ ।

ତେବେ ଚିକିତ୍ସା କ'ଣ କରୁଛନ୍ତି ବୋଲି କହିଲେ 'ଏବେ ଅଳ୍ପ କେତେଦିନ ହେଲା ହୋମିଓପାଥି ଔଷଧ ଖାଉଛି ।' ହୋମିଓପାଥ୍ ଡାକ୍ତର କିଏ ବୋଲି ବୁଝିବାରୁ ଜାଣିଲି ଯେ ସେହି ଡାକ୍ତରଖାନାର ଆଉ ଜଣେ ଡାକ୍ତର ଏହି ରୋଗରେ ପଡି ନିଜେ ହୋମିଓପାଥ୍ ବହି ପଢି ନିଜର ଚିକିତ୍ସା କରି ଭଲ ଅଛନ୍ତି । ସେ ନିଜେ ଅନ୍ୟମାନଙ୍କର ଆଲୋପାଥ୍ ଚିକିତ୍ସା କରନ୍ତି । କିନ୍ତୁ ନିଜ ରୋଗପାଇଁ ଆଲୋପାଥିର କୌଣସି ସାହାଯ୍ୟ ନପାଇବାରୁ ନିଜ ପାଇଁ ନିଜେ ହୋମିଓପାଥ୍ ଚିକିତ୍ସା ଆରମ୍ଭ କରିଛନ୍ତି ଓ ଆରୋଗ୍ୟ ହୋଇଛନ୍ତି ।

ପୂର୍ବୋକ୍ତ ଡାକ୍ତର ଜଣକ ନିକଟରେ କର୍ଣ୍ଣାଟକ ଯିବେ ହୋମିଓପାଥ୍ ଚିକିତ୍ସାର ଏକ ସ୍ୱତନ୍ତ୍ର କେନ୍ଦ୍ରରେ ପରାମର୍ଶ କରିବା ପାଇଁ । ମୁଁ ତାଙ୍କୁ କେରଳରେ ଏକ ଭଲ ଆୟୁର୍ବେଦିକ ଚିକିତ୍ସା ଅନୁଷ୍ଠାନକୁ ମଧ ଯିବାକୁ ପରାମର୍ଶ ଦେବାରୁ ସେ କହିଲେ ଯେ ସେ ନିଜେ ହେମିଓପାଥ୍ ନକରି ଆୟୁର୍ବେଦ ଚିକିତ୍ସା କରିବା କଥା ଭାବୁଛନ୍ତି । କିନ୍ତୁ ସେପରି କବିରାଜ କେଉଁଠାରେ ପାଇବେ ସେ କଥା ଚିନ୍ତା କରୁଛନ୍ତି । କେରଳ ଆୟୁର୍ବେଦ ଚିକିତ୍ସା କ୍ଷେତ୍ରରେ ଏପରି କବିରାଜଙ୍କ ସନ୍ଧାନ ମିଳିପାରେ ବୋଲି ମୁଁ କହିବାରୁ ସେଠାକୁ ଡାକ୍ତର ଯିବେ ବୋଲି ଆଗ୍ରହ ପ୍ରକାଶ କଲେ ।

ଶଲ୍ୟ ଚିକିତ୍ସାଛଡା ଆଲୋପାଥିରେ ଗ୍ୟାରେଣ୍ଟି ଦିଆ ଚିକିତ୍ସା କିଛି ନାହିଁ ବୋଲି କେତେକ ଡାକ୍ତର ସ୍ୱୀକାର କରନ୍ତି । କିନ୍ତୁ ହୋମିଓପାଥିକୁ ନିମ୍ନ ଦୃଷ୍ଟିରେ ଦେଖିବାର ଏକ ଦୃଷ୍ଟିଭଙ୍ଗୀ ରହିଛି । ତେଣୁ 'ଯାହାର ନାହିଁ ଅନ୍ୟଗତି ସେ କରେ ହୋମିଓପାଥ୍ ଉପହାସ କରାଯାଏ । କିନ୍ତୁ କେବଳ ଭାରତରେ ନୁହେଁ ସମଗ୍ର ପୃଥିବୀରେ ହୋମିଓପାଥ୍ ଏବଂ ଆୟୁର୍ବେଦ ଚିକିତ୍ସାପ୍ରତି ଦୃଷ୍ଟିଭଙ୍ଗୀ ବଦଳୁଛି ବୋଲି ଜଣାପଡିଛି ।

(ତା୨୪.୦୩.୧୯୮୭ରିଖ)





Digitized by srujanika@gmail.com

# ମୁଖ୍ୟମନ୍ତ୍ରୀଙ୍କ ଶାଢୀକିଣା

କଥାଟି ସତ ଯଦିଓ କାହାଣୀ ଭଳି ଲାଗିବ ।

ଜଣେ ମୁଖ୍ୟମନ୍ତ୍ରୀ ଥିଲେ । ସେ ବହୁ ଆଡେ ନିଜ ରାଜ୍ୟ ଭିତରେ ହେଲିକୋପ୍‌ଟରରେ ଯା'ଆସ କରନ୍ତି । ଦିନେ ସେ ମୟୁରଭଞ୍ଜ ଜିଲ୍ଲାକୁ ଗସ୍ତରେ ଯାଇଥିଲେ । ମୟୁରଭଞ୍ଜର ଏକ ଛୋଟ ସହର ଉଦଳା । ମୁଖ୍ୟମନ୍ତ୍ରୀ ଉଦଳା ଯାଇଥିଲେ । ସେଠାର ଡାକବଙ୍ଗଳା ପାଖରେ ଜଣେ ଲୁଗାବକାଳୀ ନିଜର ଗଣ୍ଠିଲିଟି ଧରି ଏପଟ ସେପଟ ହେଉଥିଲା । ମୁଖ୍ୟମନ୍ତ୍ରୀ ପଚାରି ବୁଝିଲେ ' ସେ କିଏ ?' କିଏ ଜଣେ କହିଲେ ଆଜ୍ଞା ସେ ଲୁଗା ଫେରି କରେ । ପ୍ରଶ୍ନ ହେଲା କି ଲୁଗା ? ଉତ୍ତର ! ଏଇ ଆଜ୍ଞା ମଠା, ସିଲ୍‌କ, ଟସର ଶାଢୀ । ସୂତା ଶାଢୀ ମଧ୍ୟ ଆଣେ । ନିର୍ଦ୍ଦେଶ ହେଲା ଡାକତାକୁ ।

ମୁଖ୍ୟମନ୍ତ୍ରୀ ଶାଢୀ କିଣିଲେ । ଅର୍ଥାତ ଶାଢୀସବୁ ବାଛିଲେ । ଦାମ ହେବ ପ୍ରାୟ ତିନି ହଜାର ଟଙ୍କା । ମୁଖ୍ୟମନ୍ତ୍ରୀ କହିଲେ ଟଙ୍କା ଏଇନେ ନାହିଁ । ଭୁବନେଶ୍ୱର ଯାଇ ନେଇ ଆସିବ ।

ଲୁଗା ବିକାଳୀ ଭାବିଲା ଯେ ଏତେ ବଡ ଗରାଖଟାଏ ମିଳିଲେ । ତା'ଠୁ ବାକୀ ନେଲେ । ଏଇଟା କେତେ ବଡ ଗୌରବ କଥା । ବାରିପଦା ଆସି ବହୁତ ଆଡେ ଏକଥା କହି ବୁଲିଲା । ମୁଖ୍ୟମନ୍ତ୍ରୀଙ୍କ ନିଜ ଦଳ ଲୋକଙ୍କୁ ବେଶୀ କହିଲା ଲୁଗା ବିକାଳୀ ।

କିଛି ଦିନ ପରେ ପଇସା ପାଇଁ ଉଦଳାର ଲୁଗା ବିକାଳୀ ଭୁବନେଶ୍ୱର ଆସିଲା । ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚିବାକୁ ତା'କୁ ବହୁତ ଦିନ ଲାଗିଗଲା । ମୋଟ ପାଣ୍ଠିର ଶତକଡା ୯୦ ଭାଗ ମୂଲ୍ୟର ଶାଢୀତ ମୁଖ୍ୟମନ୍ତ୍ରୀ ନେଇ ଆସିଥିଲେ । ତେଣୁ ବେପାର ପ୍ରାୟ ବନ୍ଦ ହୋଇ ଯାଇଥିଲା । ହାତରେ ପଇସାନାହିଁ । ଭୁବନେଶ୍ୱରରେ ଚଳିବା ମୁଷ୍କିଲ । ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚିଲା ପରେ ତା'କୁ ନିର୍ଦ୍ଦେଶ ମିଳିଲା ଯେ ସେ କଟକ ଯାଇ ଜଣେ ବଡପଣ୍ଡାଙ୍କ ଠାରୁ ସେ ଟଙ୍କାଟା ନେଇ ଯିବ । ଲୁଗାବିକାଳୀ କଟକର ସାହି ବୁଲି ବୁଲି ବଡପଣ୍ଡାଙ୍କୁ ଠାବ କଲା । ସେ ମଧ୍ୟ ଦୁଇ ତିନିଦିନ ଦଉଡାଇଲେ । ଶେଷରେ କହିଲେ' ତୁମେ ଯାଅ ମୋଠାରୁ ଚିଠିଖଣ୍ଡିଏ ନେଇ ତମ ଜିଲ୍ଲାର କଲେକ୍ଟରଙ୍କ ପାଖକୁ । ତାଙ୍କଠାରୁ ଟଙ୍କା ନେଇ ଯିବ ।'

କଲେକ୍ଟର ଟଙ୍କା ଦେଇ ପାରିଲେନି । ବହୁତ ଦଉଡା ଧପଡା କରି କିଛି ଫଳ ନହେଲାରୁ ଶାସକ ଦଳର ଜଣେ ଟରଣୀଙ୍କୁ ଧରି ପୁଣି ଭୁବନେଶ୍ୱର ଆସିଲା ଉଦଳାର ଶାଢୀ ବିକାଳୀ । ଭୁବନେଶ୍ୱରରେ ପହଞ୍ଚି ସବୁ ବୁଝିଲା ପରେ ଜଣେ ବୁଦ୍ଧିଆ ଲୋକ(ଯେ କି ମୁଖ୍ୟମନ୍ତ୍ରଙ୍କ ଗହଣରେ ବୁଲାଚଲା କରନ୍ତି) କହିଲେ 'ତୁମେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ ପାଣ୍ଠିରୁ ତିନିହଜାର ଟଙ୍କା ପାଇଁ ଦୁଃସ୍ଥ ନାଗରିକଭାବରେ ଗୋଟାଏ ଦରଖାସ୍ତ କରିଦିଅ । ତୁମେ ଗରିବ ଲୋକ । ଟଙ୍କାଟା ଯୋଉ ବାଟେ ପାଇଲେ ଗଲା । ନଇଲେ ତମର ବେପାର ଚଳିବ କେମିତି ?

ରିଲିଫ ପାଣ୍ଠିରୁ ଟଙ୍କା ମଞ୍ଜୁର ହୋଇଛି ବୋଲି ଲୁଗା ବିକାଳୀ ଶୁଣିଲା । କିନ୍ତୁ ମିଳିବ ଜିଲ୍ଲା କଲେକ୍ଟରଙ୍କ ଜରିଆରେ । ତେଣୁ ଦେଖାଗଲା ଯେ ଲୁଗା ବିକାଳୀ କଲେକ୍ଟରଙ୍କ ବାରଣ୍ଡାରେ ପଇଁତରା ମାରୁଛନ୍ତି । ଟଙ୍କା ମିଳିନଥିଲା ଯେବେ ତାଙ୍କ ସହିତ ଶେଷଦେଖା ହୋଇଥିଲା । ବେପାରତ ବନ୍ଦହୋଇ ଯାଇଥିଲା । ତେଣୁ ଉଦଳାରେ ରାସ୍ତାରେ ବୁଲିବା ହିଁ ସାର ହେଲା । ତାଙ୍କୁ ଜଣେ ଶାସକଦଳ କର୍ମୀ



Digitized by srujanika@gmail.com

ବୁଝାଉଥିଲେ ଯେ ସେ ଲୁଗା ଗଣ୍ଠିଲି କାନ୍ଧରେ ପକାଇ ବୁଲିବେ କାହିଁକି ? ବରଂ ଶାସକ ଦଳରେ ଯୋଗ ଦେଲେ ବୁଲିବା ସାଙ୍ଗରେ ରୋଜଗାର ମଧ ହେବ ।

ଲୁଗାବିକାଳୀ ପଇସା ପାଇଲେ କି ନାହିଁ କି ଶାସକ ଦଳରେ ଯୋଗଦେଲେ କିନାହିଁ ଜଣାପଡିନାହିଁ ।

**(ତା୦୮.୦୩.୧୯୮୩ରିଖ)**



# ନାୟିକାର ନାମ ରଜନୀ

'ରଜନୀ' ଏବେ ବଡ଼ ଲୋକପ୍ରିୟ । ଦୂରଦର୍ଶନର ଅନେକ କାର୍ଯ୍ୟକ୍ରମ ସୌଖୀନ କୃତ୍ରିମ ହିନ୍ଦୀ ଚିତ୍ରର ଝଲକ ମାତ୍ର । ଟାଣିଓଟାରୀ ହାସ୍ୟରସ ସୃଷ୍ଟି କରିବା, ବିଶ୍ୱାସ ଅଯୋଗ୍ୟ ପରିସ୍ଥିତି ଓ ଉଦ୍ଭଟ ଚରିତ୍ର ପ୍ରଦର୍ଶନ କରିବା ଓ ଅତି ମାତ୍ରାରେ 'ଅଭିନୟ' କରିବା ଆଦି ସବୁ ହିନ୍ଦୀ ଚିତ୍ରର ଦୋଷ ଏସବୁ ସିରିଆଲରେ ରହିଛି । କିନ୍ତୁ 'ରଜନୀ' କାର୍ଯ୍ୟକ୍ରମରେ ଅନେକଟା ଭିନ୍ନତା ରହିଛି ଯଦିଓ ରଜନୀ ଭୂମିକାରେ ଅଭିନୟ କରୁଥିବା 'ନାୟିକା' ଅନେକ କ୍ଷେତ୍ରରେ ଅବାସ୍ତବ ସଫଳତା ହାସଲ କରି ମନ ଓ ହୃଦୟକୁ ଜୟ କରୁଛନ୍ତି । ଏହି କାର୍ଯ୍ୟକ୍ରମର ବିଶେଷତ୍ୱ ହେଲା ଯେ ବାସ୍ତବ ଜୀବନର କେତେକ ସତ୍ୟକୁ ପରିସ୍ଥିତି, ଦୈନନ୍ଦିନ ଜୀବନ, ସମସ୍ୟା ଓ ଚରିତ୍ରମାନଙ୍କ ଜରିଆରେ ରୂପାୟିତ କରାଯାଇ ସାମଧାନ ପାଇଁ ସଂଗ୍ରାମର ବାତାବରଣ ସୃଷ୍ଟି କରାଯାଇଛି ।

ଦୂରଦର୍ଶନରେ 'ରଜନୀ' ଦେଖିଲେ ଭଲ ଲାଗୁଛି କିନ୍ତୁ ତେତେଜଣ ବାସ୍ତବ ଜୀବନରେ 'ରଜନୀ'ର ସଂଗ୍ରାମ ଗଢ଼ି ତୋଳି ସେହି ଏକା ସମସ୍ୟାର ସମାଧାନ ଗୁଡ଼ିକ ହାସଲ କରିପାରିବେ ? କିମ୍ବା କେତେଜଣ ଏହି ସମାଧାନର ସୂତ୍ର ଗ୍ରହଣ କରି ତାହା କାମରେ ଲଗାଇ ସଫଳ ହେବାର କାହାଣୀ ଆପଣ ଶୁଣିଲେଣି ? କେହି ଟ୍ୟାକ୍ସିବାଲାଙ୍କ ଅଧିକ ଭଡ଼ା ଦାବିରୁ 'ରଜନୀ' ପ୍ରଭୃତ ଉପାୟରେ ଫଳ ପାଇଲେଣି ? କେତେଜଣ ଭଦ୍ର ମହିଳା ମଦ୍ୟପ ସ୍ୱାମୀର ମାଡ଼ରୁ ରକ୍ଷା ପାଇବାକୁ 'ରଜନୀ' ପ୍ରଦର୍ଶିତ ପଥ ଅନୁସରଣ କରି ମହଲାବାଲାଙ୍କ ସହାୟତାରେ ନିଜ ସ୍ୱାମୀକୁ ସୁଧାରିଲେଣି ?

ଗତ ରବିବାର 'ରଜନୀ' କାର୍ଯ୍ୟକ୍ରମରେ ବମ୍ବେ ଟେଲିଫୋନ ବ୍ୟବସ୍ଥା ସମ୍ପର୍କରେ ଯାହା 'ରଜନୀ' ଦଉଡ଼ା ଧପଡ଼ା କରି କରାଇପାରିଲେ ସବୁ ଯାଗାରେ ତାହା ସମ୍ଭବ ମଧ ନୁହେଁ । ଟେଲିଫୋନ କଟିଯାଇଥିବା ଅବସ୍ଥାରେ ମଧ 'ଟ୍ରଙ୍କକଲ' ବିଲ ଆସେ । ଟେଲିଫୋନ୍ ନକରି ମଧ ହଜାର ହଜାର ଟଙ୍କାର ବିଲ ଆସେ । ବିଲ ନପଠାଇ କିମ୍ବା ବିଲ୍ ନ ପାଇଲେ ମଧ ଟେଲିଫୋନ କାଟି ଦିଆଯାଇପାରେ । 'ଆଗେ ପଇସା ଦିଅ ପରେ ଅଭିଯୋଗର ଦରଖାସ୍ତ ଦେଇପାର' ଏହା ହେଲା ଟେଲିଫୋନ ବିଭାଗର ଧମକପୂର୍ଣ୍ଣ ସତର୍କ ବାଣୀ । ମାରୱାଡ଼ି ବ୍ୟବସାୟୀର ଟେଲିଫୋନ ଖର୍ଚ୍ଚ ସମ୍ବାଦପତ୍ର ଟେଲିଫୋନ ବିଲରେ ଚଢ଼ିପାରେ । କିଏ ସାମନାରେ ବସିଛି ଯେ କାହାକୁ କହିବ ।

'ରଜନୀ' ଟେଲିଭିଜନ କ୍ୟାମେରା ସାମନାରେ ସୁଟିଂ କରି ଅଭିନୟ କରି ଭାରତର ଦୂରଦର୍ଶନ ଦର୍ଶକଙ୍କୁ ଚମତ୍କୃତ କରିପାରନ୍ତି । ନିଜ ଜୀବନରେ ସେସବୁ ପ୍ରୟୋଗ କରି ଦେଖନ୍ତୁ ଫଳ କେମିତି ମିଳୁଛି ? ତାଙ୍କୁ ତ ଏବେ ବମ୍ବେରେ ଟ୍ୟାକ୍ସି ବାଲା ଟ୍ୟାକ୍ସିରେ ବସାଇ ଦେଉ ନାହାଁନ୍ତି । 'ରଜନୀ' ଅଭିନେତ୍ରୀମାତ୍ର ହୋଇ ତାଙ୍କର ନିରାପତ୍ତା ବିପନ୍ନ । ସେ ଯଦି ପ୍ରକୃତରେ ସମସ୍ୟା ସମାଧାନ ପାଇଁ ଆନ୍ଦୋଳନ କରିବାକୁ ରାସ୍ତାକୁ ବାହାରନ୍ତେ ତେବେ ମଜ୍ଜା ଚାଖନ୍ତେ । ଚିତ୍ରର ନାୟକ-ନାୟିକା ଏବଂ ବାସ୍ତବ ଜୀବନର ନାୟକ-ନାୟିକାଙ୍କ ମଧରେ କେତେ ତଫାତ୍ ।

**(ତା୦୩.୦୯.୧୯୮୫ରିଖ)**





Digitized by srujanika@gmail.com

# ଆପଣଙ୍କର ରୁମାଲ ହଜିଛି କି ?

ଆମ ଘରକୁ ଦିନେ ସଂଧ୍ୟାରେ ଏକ ଯୁବ ଦମ୍ପତି ସାମାଜିକ ଶିଷ୍ଟାଚାର ଅନୁରୋଧରେ ଆସିଥିଲେ । ସେମାନେ କଟକରୁ ଆସିଥିଲେ ଏବଂ ବସରେ ଫେରିଯିବା କଥା ।

ବସି ଗପ୍ପ ଗପ୍ପ ବହୁତ ଡେରି ହୋଇଗଲା । ରାତି ନ'ଟା ପରେ ଭୁବନେଶ୍ୱରରୁ କଟକ ଯିବା ପାଇଁ ଯାନବାହନର ଅସୁବିଧା ରହିଛି । ସେମାନେ ଆମ ଘରୁ ବାହାରୁ ବାହାରୁ ପାଖାପାଖି ରାତି ଦଶଟା ହୋଇଗଲା ।

ରିକ୍ସାରେ ସେମାନେ ବସ ଷ୍ଟାଣ୍ଡକୁ ଯାଇ ସେଠାରୁ କୌଣସି ବସ୍ ଧରିବେ । ଅଧଘଣ୍ଟାକ ପରେ ସେମାନେ ଫେରି ଆସିବା ଦେଖି ମୁଁ ଭାବିଲି ଯେ, ବୋଧହୁଏ ବସ୍ ପାଇଲେନି । ରାତିରେ ଆମ ଘରେ ରହିଯିବାକୁ ଫେରି ଆସିଲେ ।

କିନ୍ତୁ ସେମାନଙ୍କର ଫେରି ଆସିବାର କାରଣ ହେଲା ଯେ, ଭଦ୍ରମହିଳା ତାଙ୍କର ରୁମାଲଟି ଛାଡ଼ି ଦେଇ ଯାଇଛନ୍ତି । ରୁମାଲଟି ଫେରାଇ ନେବାକୁ ସେମାନେ ଅଧବାଟରୁ ଫେରି ଆସିଛନ୍ତି । ଭଦ୍ରଲୋକ ପୁଣି କମ୍ୟୁନିଷ୍ଟ ମତବାଦୀ ।

ରୁମାଲ ଓ ଗାମୁଛା ଇତ୍ୟାଦି ହଜାଇବା ବଡ଼ ଗୁରୁତର ଦୋଷ ବୋଲି ଆମ ସମାଜରେ ଧରାଯାଏ । ଗାମୁଛା ହଜେଇଲେ କୁଆଡ଼େ ବହୁତ ଦେହ ଖରାପ ହୁଏ । ରୁମାଲର ମଧ ସେହି ମର୍ଯ୍ୟାଦା । ଏ କଥା କୁସଂସ୍କାର କି ଠିକ୍ କଥା ମୁଁ କହି ପାରିବିନି । କିନ୍ତୁ ଏ କଥା ନିଶ୍ଚିତ ଯେ ଅନେକ ଲୋକ ଏସବୁ କଥାରେ ବିଶ୍ୱାସ ରଖନ୍ତି । ପିଲାଦିନୁ ଏହି ପ୍ରକାର ବିଷୟ ଆମର ଅସ୍ଥି ମଜ୍ଜାଗତ ହୋଇଯାଏ ।

ମୁଁ ନିଜେ ଏବେ ତିନି ମାସ ତଳେ ଖୁବ୍ ବେମାର ପଡ଼ିଥିଲି । ମୁଁ ମନେ ପକାଇବାକୁ ଚେଷ୍ଟା କରୁଥିଲି ଯେ, ମୁଁ ନିକଟରେ ଗାମୁଛା କିମ୍ବା ରୁମାଲ ହଜାଇଛି କି ? ମୁଁ ତ ଗାମୁଛା ବ୍ୟବହାର କରେ ନାହିଁ । ତଉଲିଆ ତ ମୁଁ ହଜାଇ ନାହିଁ ।

କିନ୍ତୁ ରୁମାଲ ? ରୁମାଲ ମୁଁ ବର୍ଷକ ଲାଗି ବାରଟା କିଣୁଥିଲି । ଦଶବାରଟା କିଣିବାର କାରଣ ଯେ ସେଗୁଡ଼ାକ ବାରମ୍ବାର କୁଆଡ଼େ ଚାଲିଯାଏ । ତେଣୁ କିଣିବାକୁ ପଡ଼େ । ରୁମାଲ ହଜାଇବା ତେଣୁ ମୋର ଅଭ୍ୟାସଗତ । କିନ୍ତୁ ରୁମାଲ ହଜିଲେ ଦେହ ଖରାପ ହେବ ଏ କଥା ମୋ ମୁଣ୍ଡରେ ପଶେ ନାହିଁ । ତାହା ହେଉଥିଲେ ମୁଁ ପାଣି ପକେଇ ହଜିଲା ରୁମାଲକୁ ଖୋଜୁ ଥାଆନ୍ତି ।

ଆଚ୍ଛା କେହି କହି ପାରିବେ ଯେ ଅନ୍ୟ ଲୁଗାପଟା ପିନ୍ଧି ପିନ୍ଧି ଚିରିଲା ଭଳି ରୁମାଲ କାହାରି ବ୍ୟବହାର କରି କରି ଚିରିଯାଏ ? ହେଉଥିବ କାହାରି କାହାରି । କାରଣ କେତେକ ସ୍ତ୍ରୀ ଲୋକ ରୁମାଲରେ ପଇସା ବାନ୍ଧି ଅଣ୍ଟାରେ ଗୁଂଜନ୍ତି କିମ୍ବା କାନିରେ ବାନ୍ଧନ୍ତି । ଆଜିକାଲିର ଭ୍ୟାନିଟି ବ୍ୟାଗ ନେଇ ବୁଲୁଥିବା ମହିଳାମାନଙ୍କର ସେ ଅଭ୍ୟାସ ତ ନାହିଁ ।

ଡାକ୍ତରଖାନାରେ ଯେତେ ରୋଗୀ ଅଛନ୍ତି ସେମାନଙ୍କୁ ଯାଇ ମୋର ପଚାରିବାକୁ ଇଚ୍ଛା ଯେ ସେମାନଙ୍କ ଭିତରୁ କେତେ ଜଣ ଗାମୁଛା କିମ୍ବା ରୁମାଲ ହଜେଇ ସେଠାରେ ପଡ଼ିଛନ୍ତି ।

(ତା୨୨.୦୩.୧୯୮୭ରିଖ)





Digitized by srujanika@gmail.com

# ଦୂରଦର୍ଶନ, ଶେଷ ଦର୍ଶନ ଓ ଭାଲୁ

ଟେଲିଭିଜନ ପ୍ରତି ମୋର କେଜାଣି କାହିଁକି ଟିକିଏ ମୋହ କମ । ଆମ ଘରେ ମୁଁ ଜଣେ ସଂଖ୍ୟାଲଘୁ ଗୋଷ୍ଠୀର ଲୋକ । ବେଳେବେଳେ ମୁଁ ଭାବେ ସରକାର ସବୁ ପ୍ରଦେଶରେ ଏବଂ ସାରା ଦେଶରେ ସଂଖ୍ୟାଲଘୁ ଗୋଷ୍ଠୀର ଭାଷା, ଧର୍ମ, ସଂସ୍କୃତି ଓ ଅର୍ଥନୈତିକ ସ୍ଥିତି ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେଉଛନ୍ତି । ମୋ ଭଳି ସଂଖ୍ୟାଲଘୁ ଯେତେ କମ ହେଲେ ବି ଅବଶ୍ୟ ଥିବେ । ସେମାନଙ୍କ ପ୍ରତି ସୁବିଚାର ହେବା ଉଚିତ । ତାହାହେଲେ ମୋ ପ୍ରାପ୍ୟ ମିଳିଯାଆନ୍ତା ।

ମୁଁ ଯେହେତୁ ଟେଲିଭିଜନ ଓରଫ ଡାକନାମ ଟି.ଭି ପାଖରେ ନିୟମିତ ବସେ ନାହିଁ ତେଣୁ କେଉଁଦିନ କେଉଁ ସମୟରେ କ'ଣ ସବୁ ପ୍ରୋଗ୍ରାମ ଥାଏ ସେ ବିଷୟରେ ମୋର କୌଣସି ଖବର ଥାଏନା । ଅବଶ୍ୟ ଘରେ କଥାବାର୍ତ୍ତାରୁ କେତେକ ଟିଭି ପ୍ରୋଗ୍ରାମର ପ୍ରଶଂସା ଓ ନିନ୍ଦା ଶୁଣେ । ସେଇଥିରୁ ଯାହା ଟିଭି ବିଷୟରେ ମୋର ସମ୍ୟକ ଧାରଣା । ଟିଭିର ବିଭିନ୍ନ ପ୍ରୋଗ୍ରାମ ସମ୍ପର୍କରେ ସମ୍ବାଦପତ୍ର ଓ ପତ୍ରିକାମାନଙ୍କରେ ବରଂ ଆଲୋଚନା ଓ ସମାଲୋଚନା ମୁଁ ପଢ଼େ । ଏବେ ପୁଣି ଟେଲିଭିଜନ ଓ ଭିଡ଼ିଓ ସମ୍ପର୍କିତ ସ୍ୱତନ୍ତ୍ର ପତ୍ରିକାସବୁ ପ୍ରକାଶ ପାଇଲାଣି ।

ମୁଁ ଯେ, ବିଲ୍‌କୁଲ୍ ଟେଲିଭିଜନ ପ୍ରୋଗ୍ରାମ ଦେଖେନାହିଁ ତାହା ମଧ ନୁହେଁ । କେତେକ କାର୍ଯ୍ୟକ୍ରମ ସମ୍ପର୍କରେ ସୁପାରିଶ (ଘରୁ କିମ୍ବା ସମ୍ବାଦପତ୍ରରୁ) ପାଇଲେ କିମ୍ବା କେତେବେଳେ ସାମାନ୍ୟ ସମୟ ଥିଲେ କିମ୍ବା ଅନ୍ୟ କାମ କରିବାକୁ ମୁଡ୍ ନଥିଲେ ମୁଁ ମଧ ଗୋଟାଏ ବୋକା କିମ୍ବା ଅତି ବିଜ୍ଞ ମଣିଷପରି ଟେଲିଭିଜନ ସାମ୍ନାରେ ବସିଯାଏ । ମନ ପୂରିଗଲେ କିମ୍ବା କେହି ଆଗନ୍ତୁକ ଆସିଗଲେ ଉଠି ଚାଲିଯାଏ । ଏହା ମୋର ପ୍ଲସ୍ ପଏଣ୍ଟ ବୋଲି ମୁଁ ଦାବି କରୁନାହିଁ । ବରଂ ମାଇନସ୍ ପଏଣ୍ଟ ।

ଏସବୁ କଥା କହିବାର କାରଣ ହେଲା ଟେଲିଭିଜନ ପ୍ରୋଗ୍ରାମର ଆକର୍ଷଣ ଶକ୍ତି କିମ୍ବା 'ଗୁରୁତ୍ୱ' ଜାଣି ସମୟ ଉଣ୍ଡି ଏବେ କେହି କାହାରି ଘରକୁ ଯିବାକଥା । ଯେଉଁସବୁ ସିରିଆଲ କିମ୍ବା ଫିଚର ଫିଲ୍ମ ପ୍ରଦର୍ଶିତ ହେଉଛି ତାର ମନମୁଗ୍ଧକାରୀ ଶକ୍ତି ସହିତ କେହି ଲଢ଼ିବାକୁ ଚେଷ୍ଟା କରିବା ଉଚିତ ନୁହେଁ । ଏପରିକି ଏହି ଗୁରୁତ୍ୱପୂର୍ଣ୍ଣ ସମୟମାନଙ୍କରେ ସେପରି କିଛି ଅତୀବ ଗୁରୁତ୍ୱପୂର୍ଣ୍ଣ ବିଷୟ (ଯାହା ତତ୍‌କ୍ଷଣାତ୍ ନଜଣାଇଲେ ଚଳିବ ନାହିଁ) ନଥିଲେ କାହାରି ଘରକୁ ଫୋନ କରିବା ମଧ ଉଚିତ ନୁହେଁ । ମୋ ନିଜ ଅଭିଜ୍ଞତାରୁ କହୁଛି ।

ମୋର ଜଣେ ନିକଟ ସମ୍ପର୍କୀୟଙ୍କ ଘରକୁ ଏପରି ଅବେଳରେ ମୁଁ କେତେଥର ଫୋନ୍ କରି ତରବରିଆ ଉତ୍ତର ପାଇଛି ଏବଂ ଟେଲିଭିଜନ ସହିତ ଅଜାଣତରେ ଲଢ଼ି ପକେଇ ହାରିଯାଇଛି । ମୁଁ ଫୋନ୍ କଲେ ସମ୍ପର୍କୀୟାଙ୍କ ଝିଅ ସାଧାରଣତଃ ଆଗେ ଉଠାଏ । ମୁଁ କହେ 'କିଏ ମୀନା କିରେ' ? 'ହଁ ମଉସା' ମୀନା ଉତ୍ତର ଦିଏ ।

ମୋର ତ ଆଉ ଟିଭି ପ୍ରୋଗ୍ରାମ ସମ୍ପର୍କରେ ମୋଟେ ହୋସ୍ ନଥାଏ । ମୁଁ ତ କ'ଣ ଗୋଟାଏ କହି କଥାଟା ଲମ୍ବେଇବି ? ଝିଅଟା ସାଙ୍ଗରେ ଆଉ ବିଶେଷ କ'ଣ କଥାବାର୍ତ୍ତା ଅଛି । ତେଣୁ ମୁଁ କହିବି 'କ'ଣ ସବୁ ଆଜି ବ୍ରେକ୍‌ଫାଷ୍ଟ ହେଇଚି' ?



Digitized by srujanika@gmail.com

ମତେ କଟସର୍ଟ କରି ଝିଅ କହିବ 'ଉପମା ଖାଇ ସାରିଲୁଣି । ସରିଗଲାଣି...ବୋଉକୁ ଦେବି ?' ପ୍ରଥମେ ମୁଁ ଭାବେ ଯେ, ଝିଅଟାର କ'ଣ ଆଉ ମୋ ସହିତ ବକିବାକୁ ଅଛି ଯେ ! ବୋଉ ଆସି ଧରନ୍ତି । ପ୍ରଥମ ବାକ୍ୟ ମୋର ଶୁଣି ଛୋଟିଆ-ସବୁଠାରୁ ଛୋଟିଆ ଉତ୍ତର ଦେଇ ସେ କହନ୍ତି 'ଆପଣ ଟେଲିଭିଜନ ଦେଖୁନାହାଁନ୍ତି ?... ଭଲ ଫିଲ୍ମଟାଏ ଅଛି । ...ମୁଁ ପରେ ଫୋନ୍ କରିବି...'

ମୁଁ ତତ୍‌କ୍ଷଣାତ୍ ବୁଝିପାରେ ଯେ ମୀନା କାହିଁକି 'ବୋଉକୁ ଦେବି' ବୋଲି ଧଡକିନା କହିଲା । ମୀନାକୁ ଭାଲୁଟାଏ ଧରିଲା କିମ୍ବା ଭାଲୁଟା ମୀନାକୁ ଧରିଲା । ମୀନା ବୋଉକୁ ଭାଲୁଟାକୁ ଧରେଇ ଦେବାକୁ ବ୍ୟଗ୍ର ହେବା ସ୍ୱାଭାବିକ ମୁଁ କହେ 'ହଉ ଆଜ୍ଞା' । ମନେ ମନେ ଭାବେ ମୋର କହିଁକି ହେଜ ପଶୁନି । ମୁଁ କାହିଁକି ଜାଣିପାରୁନି କିମ୍ବା ମନେ ରଖିପାରୁନି ଏଇ ଛୋଟିଆ କଥାଟା ଯେ, ଟିଭି ପ୍ରୋଗ୍ରାମବେଳେ ଅନ୍ୟସବୁ ଗୌଣ । ସିନେମା ଚିତ୍ରର କିମ୍ବା ପ୍ରୋଗ୍ରାମର ଯେଉଁ ଅଂଶଟି ଟେଲିଫୋନ୍ କଥୋପକଥନବେଳେ ଚାଲିଯାଏ ସେ କ'ଣ ଆଉ କେବେ ଫେରିବ ? ସେ ଦୃଶ୍ୟ ଦୂରଦର୍ଶନରେ ଶେଷ ଦର୍ଶନ ।

(ତା୨୦.୦୮.୧୯୮୪ରିଖ)





Digitized by srujanika@gmail.com

# ଗାଈଙ୍କ ଶାସନ

ଶାସନଟା ଚାରିଆଡ଼େ ହୁଗୁଳି ଗଲାଣି । ଏ କଥାଟାର ପ୍ରମାଣ ରାସ୍ତାରେ, ଘାଟରେ ସବୁଆଡ଼େ ଦେଖିବାକୁ ମିଳିବ । ଗୋଟିଏ ଛୋଟିଆ କଥାରୁ ଏହାର ନମୁନା ନିଅନ୍ତୁ ।

ବେଶୀ ଦୂରକୁ ଯିବା ଦରକାର ନାହିଁ । କଟକ ପର୍ଯ୍ୟନ୍ତ ନଯାଇ ଏଇ ରାଜଧାନୀ ଭୁବନେଶ୍ୱରର ଚଉଡ଼ା ରାସ୍ତାମାନଙ୍କରେ ଗାଈଙ୍କ ଆଧିପତ୍ୟ ଦେଖନ୍ତୁ । ରାସ୍ତାର ମଝିରେ ଗାଈମାନେ ଆଇ.ଏ.ଏସ. ଅଫିସର ନିଜ ବେଡରୁମ୍‌ରେ କିମ୍ବା ମନ୍ତ୍ରୀମାନେ ସର୍କିଟ ହାଉସ କି ଡାକବଙ୍ଗଳାରେ ନିଜର ପୂର୍ଣ୍ଣ ଅଧିକାର ଜାହିର କରି ଶୋଇଥିଲା ଭଳି ଚାରିଗୋଡ଼ ମେଲେଇ ଶୋଇ ରହୁଛନ୍ତି । ଗାଡ଼ି ମଟର ପ୍ରତି ଭ୍ରୂକ୍ଷେପ ନାହିଁ । ଡ୍ରାଇଭର କିମ୍ବା ବସ ଟ୍ରକ ହେଲେ କ୍ଲିନର ଓହ୍ଲାଇ ଗାଈମାନଙ୍କୁ ହାତ ବାଡ଼େଇ ନ ଉଠେଇଲେ ସେମାନେ ଉଠିବାକୁ ନାରାଜ ।

କେତେକ ସରକାରୀ ଅଫିସ ଓ ଘରୋଇ ଘରମାନଙ୍କର ଫାଟକ ପାଖରେ 'କାଓ କ୍ୟାଚର' ତିଆରି ହୋଇଛି । ଗାଈ ଗୋରୁ ଗଲେ ସେମାନଙ୍କ ଗୋଡ଼ର ଖୋଜ ସେଥିରେ ପଶିଯିବ ଓ ସେମାନେ ଯିବାକୁ ହଇରାଣ ହେବେ । କିନ୍ତୁ ଏବେ ଦେଖାଗଲାଣି ଗାଈମାନେ ସେ କାଓ କ୍ୟାଚର୍‌ର ପ୍ରଥମ ଖୋପରେ ଖୁବ୍ ସାବଧାନତାର ସହିତ ଆଗ ଦୁଇଗୋଡ଼କୁ ଖପେଇଦେଇ ଗୋଡ଼ ଖସିବା ଆଗରୁ କୁଦାମାରି ଡେଇଁଯାଇ ଭିତରକୁ ପଶି ଯାଉଛନ୍ତି । ଜୀବନ ସଂଗ୍ରାମରେ ତିଷ୍ଠିବା ପାଇଁ ଟିକିଏ ଘାସ ଓ ପତ୍ର (ସହରରେ ଗାଈଗୋରୁ କାଗଜ, ଲୁଗାପଟା ମଧ୍ୟ ଖାଆନ୍ତି) ଖାଇବା ପାଇଁ ଏ ଚାଲାଖି । ଯାହା ହେଲେ ବି ସେମାନଙ୍କର ବଂଚିବାର ତ ଅଧିକାର ଅଛି ?

ଏ ଗାଈ ସବୁ କାହାର ? ସହରରେ ଗାଈ ଦୁଧ ଦେବା ବନ୍ଦ କଲେ ତା'କୁ ବାହାରକୁ ଛାଡ଼ି ଦିଆଯାଏ । ଯେଉଁମାନେ ଏସବୁ ଗାଈଗୋରୁଙ୍କ ମାଲିକ କ୍ଷୀର ନଦେଉଥିବା ଗାଈ ବାଛୁରୀଙ୍କୁ ପଦାରେ ଚରିବୁଲି ଖାଇବାକୁ ଛାଡ଼ିଦିଅନ୍ତି, ଗାଈ ଗର୍ଭବତୀ ହୋଇ କ୍ଷୀରଦେବା ଅବସ୍ଥା ଆସିଲେ ପୁଣି ଘରକୁ ଫେରାଇ ଆଣନ୍ତି । ସହରୀ ଗାଈ ମାଲିକମାନଙ୍କର ଏହା ଚରିତ୍ର । ତେଣୁ ଏହି ଅଦରକାରୀ ଗାଈମାନେ ରାଜଧାନୀର ସବୁ ଅଂଚଳରେ ବୁଲୁଛନ୍ତି କିମ୍ବା ରାସ୍ତା ମଝିରେ ଆସ୍ଥାନ ଜମାଇ ଶୋଉଛନ୍ତି । ସେମାନଙ୍କର ଦୋଷ କ'ଣ ? ଅନେକ ଗାଈ ମଟର ଧକ୍କାରେ ମରୁଛନ୍ତି ମଧ୍ୟ ।

''ପଶୁଙ୍କ ପ୍ରତି ନିଷ୍ଠୁରତା ନିରାକରଣ'' ଆଇନ ଏ ଦେଶରେ ପ୍ରଚଳିତ ଅଛି । ତା'ଛଡ଼ା ରାସ୍ତାରେ ବୁଲା ଗାଈଗୋରୁମାନଙ୍କୁ ଗିରଫ କରି କାଇନ ହାଉସରେ ରଖି ମାଲିକମାନଙ୍କ ଠାରୁ ଜୋରିମାନା ଆଦାୟ କରିବାର ଆଇନ ରହିଛି । ସହରରେ ତତ୍ତ୍ୱାବଧାରକ ମ୍ୟୁନିସିପାଲିଟି କର୍ତ୍ତୃପକ୍ଷଙ୍କର ଆଇନଗତ ଅଧିକାର ଏ କ୍ଷେତ୍ରରେ ଅଛି । ଆଇ.ଏ.ଏସ. ଅଫିସର, ମ୍ୟୁନିସିପାଲିଟି ଅଧିକାରୀ, ମନ୍ତ୍ରୀ ଓ ଏମ.ଏଲ.ଏ.ମାନେ ରାସ୍ତାରେ ନିଜ ଗାଡ଼ିରେ ଯାଉଥିଲା ବେଳେ ଏ ଗାଈମାନଙ୍କୁ ନିଶ୍ଚୟ ଭେଟୁଥିବେ । କିନ୍ତୁ ଏ ଛୋଟ କଥାଟା କାହା ମୁଣ୍ଡକୁ ଜୁଟୁଛି ? ବଡ଼ବାବୁମାନଙ୍କ ଘରର କୋଟ କୁକୁର ବେମାର ହେଲେ ଭେଟେରିନାରୀ ଡାଇରେକ୍ଟର ଡକାହୋଇ ଆସିପାରିବେ । କିନ୍ତୁ ଏ ବୁଲା ଗାଈଙ୍କ ସମ୍ପର୍କରେ ମୁଣ୍ଡ ଖେଳାଇବ କିଏ ?

ଏ ବିଷୟ ଆଲୋଚନା ବେଳେ ଜଣେ ବନ୍ଧୁ କହିଲେ, ''ଏ ଦେଶରେ ଗାଈଙ୍କର ଶାସନ ଚାଲିଛି । ତେଣୁ ଶାସକର ଗାଈମାନେ ରାସ୍ତାରେ ଗାଈମାନଙ୍କ ପ୍ରତି ସହାନୁଭୂତିଶୀଳ ହେବା ସ୍ୱାଭାବିକ ।''

(ତା୦୬.୦୮.୧୯୮୫ରିଖ)





Digitized by srujanika@gmail.com

# ସୁଇଡେନର ବ୍ୟାଙ୍କ ଓ ଭାରତୀୟ ଲୋଟା

ଜଣେ ଅଧ୍ୟାପକ ଉଚ୍ଚଶିକ୍ଷା ପାଇଁ ସୁଇଡେନ ଯାଇଥିଲେ ବୃତ୍ତି ପାଇ । ସେଠାରେ ବ୍ୟାଙ୍କରେ ନିଜର ଆକାଉଣ୍ଟ ଖୋଲିଲେ । ଯେତେବେଳେ ନିଜର ଖର୍ଚ୍ଚ ପାଇଁ ଯାହା ଦରକାର ହୁଏ, ଅଧ୍ୟାପକ ମହାଶୟ ଯାଇ ଚେକ୍‌ଟିଏ ଲେଖି ବ୍ୟାଙ୍କର କ୍ୟାସ କାଉଣ୍ଟରରେ ବସିଥିବା ଯୁବତୀ କର୍ମଚାରୀଙ୍କୁ ଦିଅନ୍ତି । ଯୁବତୀ ଜଣକ ଚେକ୍‌ଟି ନେଇ ସେଥିରେ ଲେଖାଥିବାର ଅର୍ଥ ସଂଗେ ସଂଗେ ଆମ ଏ ଅଧ୍ୟାପକଙ୍କୁ ଦେଇଦିଅନ୍ତି ।

ଆମ ଅଧ୍ୟାପକଙ୍କ ମନରେ ସବୁଥର ଅର୍ଥ ଆଣିଲାବେଳେ ପ୍ରଶ୍ନ ଉଠେ ଚେକ୍ ଦେଲାବେଳେ ଭଦ୍ର ମହିଳା ବ୍ୟାଙ୍କର କାଗଜପତ୍ରରେ ତାଙ୍କ ଦସ୍ତଖତ ଯାଞ୍ଚ କରୁନାହାନ୍ତି କିମ୍ବା ତାଙ୍କ ଆକାଉଣ୍ଟରେ ଟଙ୍କା ଅଛି କି ନାହିଁ କି କେତେ ଟଙ୍କା ଅଛି ସେସବୁ ମଧ୍ୟ ଯାଞ୍ଚ ନକରି ଟଙ୍କା ଦେଇଦେଉଛନ୍ତି । ଶେଷରେ ଦିନେ ନିଜର ଉତ୍ସୁକତା ମେଣ୍ଟାଇବା ପାଇଁ ଭାରତୀୟ ଅଧ୍ୟାପକ ସେ କଥାଟି ଚେକ୍ ଦେଲାବେଳେ ପଚାରିଲେ ।

କାଉଣ୍ଟରରେ ବସିଥିବା ଭଦ୍ର ମହିଳା ବିସ୍ମୟଭରା ଆଖିରେ ଆମ ଅଧ୍ୟାପକଙ୍କୁ ଚାହିଁଲେ କେତେ ସେକେଣ୍ଡ । ତା' ପରେ ଓଲଟା ପଚାରିଲେ ''ଆମେ ଆପଣଙ୍କ ଆକାଉଣ୍ଟ ଦସ୍ତଖତ ଇତ୍ୟାଦି ଚେକ୍ କରିବୁ କାହିଁକି ? ଆପଣଙ୍କ ଆକାଉଣ୍ଟରେ ପଇସା ନଥିଲେ ଆପଣ କେମିତି ଚେକ୍ ଦାଖଲ କରିବେ ? କାହିଁକି କରିବେ ? ଆପଣଙ୍କର ଏ ବ୍ୟାଙ୍କରେ ଆକାଉଣ୍ଟ ନଥିଲେ ଆପଣ ଏଠାକୁ ଆସିବେ କାହିଁକି ? ଏଇଟା କେମିତି ହେବ ? ଇତ୍ୟାଦି ।'' ତା'ପରେ ପଚାରିଲେ ''ଆପଣ କେଉଁ ଦେଶରୁ ଆସିଛନ୍ତି ?'' ଆମ ଭଦ୍ରଲୋକ ଅପ୍ରତିଭ ହୋଇ ଟିକିଏ ଦମ୍ ନେଇ କହିଲେ, 'ଇଣ୍ଡିଆ' ।

'ଇଣ୍ଡିଆରେ କ'ଣ ଏମିତି ହୁଏ ?'

ଅଧ୍ୟାପକ ମହାଶୟ ଈଷତ୍ ହସି ଛୋଟିଆ ଦୀର୍ଘ ନିଶ୍ୱାସ ଟାଣି ଅନୁଚ୍ଚ ସ୍ୱରରେ କହିଲେ ! 'ହୁଁ...' ପୁଣି ସ୍ୱଗତୋକ୍ତି କରି ଓଡ଼ିଆରେ କହିଲେ- ''ଆମ ଦେଶରେ ଏପରି ବିଶ୍ୱାସ କଲେ ବ୍ୟାଙ୍କ ସବୁ ଫାଙ୍କା ହୋଇଯିବ । ଲାଲବତୀ ଜଳିବ ।''

ସେଦିନ ଖୁବ୍ ଭୋରରୁ ମୋ ସାନପୁଅ ଷ୍ଟେସନକୁ ଯାଇଥିଲା ମୋ ବୋଉ ସାଙ୍ଗକୁ ରିସିଭ କରିବାକୁ । ଗାଡ଼ି ତିନିଘଣ୍ଟା ଡେରିରେ ଆସିବ ଜାଣିବା ପରେ ଘରକୁ ଫେରୁଥିଲା । ବାଟରେ ରେଲୱେ ଲେଭଲ କ୍ରସିଂ ପାଖରେ ଝୋପଡ଼ିରେ ରହୁଥିବା ଲୋକଟିଏ ଅନ୍ଧାର ଥାଉ ଥାଉ ଉଠି ଆସିଥିଲା ତା'ର ସରମଭରା ନିତ୍ୟକର୍ମଟି ସାରିବାକୁ ରେଳଲାଇନ କଡ଼କୁ । ମଳତ୍ୟାଗ ଭିତରେ ସେ ତିନିଠାଆ ଉଠିଚି । ନିଜର ରସ (ଆଲୁମିନିୟମ) ଲୋଟାଟାକୁ ପ୍ରଥମ ଠାଆରେ ବସିଥିଲା ବେଳେ ପାଖରେ ରଖିଥିଲା । ତୃତୀୟ ସ୍ଥାନରେ ବସିଲା ବେଳକୁ ଲୋଟାଟାକୁ ସାଙ୍ଗରେ ଉଠାଇ ନେଇ ନାହିଁ । ତେଣୁ ଲୋଟାଟିକୁ ପଛକରି ଶେଷ ଠାଆରେ ବସିଥିଲା ଅନ୍ୟମନସ୍କ ହୋଇ । ମଳତ୍ୟାଗ କଲାବେଳେ ଆମେ ସବୁ ବାଥରୁମ ଭିତରେ କେତେ କଳ୍ପନା କରୁଥାଉ । ସେ ବି ହୁଏତ କରୁଥିବ । ଏହା ଭିତରେ ଲୋଟାଟିକୁ କିଏ ନେଇଯାଇଛି ।

ମଳତ୍ୟାଗ ସାରି ଶୌଚ ପାଇଁ ମୁହଁ ଫେରାଇଲା ବେଳକୁ ଲୋଟାଟି ଗାଏବ । ଲୋକଟି ବିକଳ ହୋଇ ଏପଟ ସେପଟ ହୋଇ ବୁଦାମୂଳ ସବୁ ହାତରେ ଓଲଟାଇ ଖୋଜୁଥିଲା ଲୋଟାକୁ । ମୋ ପୁଅ



Digitized by srujanika@gmail.com

ପଚାରିଲା କ'ଣ ଖୋଜୁଛକି ବାବୁ ? ଲୋକଟି କହିଲା, କ'ର କରିବି ବାବୁ ! ମୁଁ ଟିକିଏ ଆଡ଼ କରି ବସିଚି । ମୋ ନୋଟାଟାକୁ ନେଇ କିଏ ପଳେଇଲାଣି । ଫୁଟି ଯାଇଥିଲା । ଅଟା ଦଳିକରି ନଗେଇ ଦେଇଥିଲି । ଶଳାଟା ଫୁଟା ନୋଟାଟା ନେଇ କ'ଣ କରିବ ? ଦର ଯାହା ହେଲାଣି କିଣିଲେ ଏଇଖଣି ନ' ଦଶ ଟଙ୍କାରୁ କମ୍‌ରେ ମିଳିବନି । ମୁଁ ଭଲା ଛଅଚ୍ଛେଇ ସାରିଥାନ୍ତି ।''

ଘରେ ଆସି ସକାଳ ଚା' ଆସରରେ ପୁଅ ମୋର ଏ ଉପାଖ୍ୟାନ ବର୍ଣ୍ଣନା କରୁଥିଲା ବେଳେ ମୋର ସେ ଅଧ୍ୟାପକଙ୍କ ସୁଇଡେନର ବ୍ୟାଙ୍କ ଅଭିଜ୍ଞତା ବର୍ଣ୍ଣନା ମନେପଡୁଥିଲା । ଭାବୁଥିଲି: ମାରଓ୍ୱାଡ଼ିମାନେ ପଛେ କମ୍ବଳକୁ ଛାଡ଼ିଦେବେ, କିନ୍ତୁ ଲୋଟାଟାକୁ ବୋଧେ ଏଇଥିପାଇଁ ଏତେ ଜାବୁଡ଼ି କରି ଧରିଥାନ୍ତି ।

(ତା୧୩.୦୮.୧୯୮୪ରିଖ)





Digitized by srujanika@gmail.com

# ଝନକ୍ ଝନକ୍ ପାୟଲ ବାଜେ-ନା

ଓଡ଼ିଶା ସରକାରଙ୍କ ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ହୋଟେଲ ଶିଳ୍ପ ସବୁଠାରୁ ଅଧିକ ଉଲ୍ଲେଖଯୋଗ୍ୟ । କାରଣ ଅନେକ । ସେଥିମଧ୍ୟରୁ ପ୍ରଧାନ ହେଲା ପ୍ରାମାଣିକତା । ଆମେ ଚାହିଁଲେ ଯେକୌଣସି ସମୟରେ ଏହି ହୋଟେଲମାନଙ୍କ ମଧ୍ୟରୁ ଯେକୌଣସିଟିରେ ଯାଇ ତା'ଠାରୁ ଡ଼ିନର ଖାଇପାରିବା । ଇଂରାଜୀରେ ଗୋଟିଏ କଥା ଅଛି ଦେଖିଲେ ଯାଇ ବିଶ୍ୱାସ କରିହେବ (Seeing is believing) । ସେହିପରି ଏହି ହୋଟେଲମାନଙ୍କରେ ଖାଇଲେ ଯାଇ ଉପଲବ୍ଧ କରିହେବ (Eating is realising) ।

ଭୁବନେଶ୍ୱରରେ ଯେତେଗୁଡ଼ିଏ ନୂଆ ହୋଟେଲ୍ ବର୍ତ୍ତମାନର ସରକାରଙ୍କ ଅନୁଗ୍ରହ, ଅନୁଦାନ ଓ ଅନୁମୋଦନରେ ଖୋଲାଯାଇଛି, ସେଥିମଧ୍ୟରୁ ତିନିଗୋଟିରେ ଆମେ ଆମର ଉପଲବ୍ଧ ସହିତ ଅଭିଜ୍ଞତା ହାସଲ କରିସାରିଲୁଣି । ଗୋଟିକର କାହାଣୀ ଆଜି ବର୍ଣ୍ଣନା କରାଯାଉ ।

ଏବେ ଦିନେ ସଂଧ୍ୟାରେ ଆମେ ଏହି ହୋଟେଲମାନଙ୍କ ମଧ୍ୟରୁ ଗୋଟିଏ ବହୁ ପ୍ରଚାରିତ ଏବଂ କେତେକ ବନ୍ଧୁଙ୍କ ଦ୍ୱାରା ପ୍ରଶଂସିତ ଏକ ହୋଟେଲକୁ ଗଲୁ । ଆମେ ବର୍ଷକୁ ଥରେ ବି ହୋଟେଲ୍‌ରେ ଖାଇବାକୁ ପସନ୍ଦ କରୁନା । ଏମିତି କ'ଣ ଗୋଟାଏ ମନ ହେଲେ ଗୋଟାଏ ନୀଳଚନ୍ଦ୍ରମା ଦିବସରେ ଆମେ ବାହାରୁ । କିନ୍ତୁ ଯେତେଥର ଯାଇଛୁ ବିରକ୍ତ ମନରେ ଫେରିଛୁ ।

ସାଂପ୍ରତିକ ଶାସନର ଜଣେ ପ୍ରଖ୍ୟାତ ପ୍ରଶଂସକ ଓ ସମର୍ଥକଙ୍କ ଉଦ୍ୟମରେ ପ୍ରତିଷ୍ଠିତ ଏହି ହୋଟେଲ୍‌ର ରାଷ୍ଟୋରାଁରେ ପଶିଲାବେଳକୁ ନାକରେ ଦଲକାଏ ଗନ୍ଧ ପଶିଗଲା । କଞ୍ଚା ସୁରାର ଗନ୍ଧ ସହିତ ତଥାକଥିତ ଶୀତତାପ ନିୟନ୍ତ୍ରିତ କୋଠରୀର ସନ୍ତରା ଉସମୂଳିଆ ଗନ୍ଧ ମିଶି ରହିଥିଲା । ଟେବୁଲ ଉପରେ ପଡ଼ିଥିବା ଧଳା ଚାଦରର ସମଗ୍ର ଶରୀର ବିଭିନ୍ନ ଆକାର ଓ ରଙ୍ଗରେ ଆକ୍ରାନ୍ତ । ଗ୍ଲାସରେ ପାଣି ଦିଆଗଲା । ଗ୍ଲାସଗୁଡ଼ିକ ପରିଷ୍କାର କରିବାକୁ ସମୟ କିମ୍ବା ସୁଯୋଗ ହୋଇନାହିଁ । କିଛି ସମୟ ପରେ ଆମ ଛ'ଜଣଙ୍କ ପାଇଁ ଗୋଟିଏ 'ମେନୁ' ଦିଆଗଲା । ଆଉ ଗୋଟିଏ ମେନୁ ମାଗିବାରୁ ୱେଟର୍ ଅନେକ ସମୟ ପାଇଁ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ମେନୁଟିର ଅବସ୍ଥା ଭଲ ନୁହେଁ । ଧର୍ଷିତା ପୃଷ୍ଠାଗୁଡ଼ିକରେ ପ୍ରତିଟି ଖାଦ୍ୟ ସାମଗ୍ରୀ କଡ଼ରେ ଦାମ୍ ଟାଇପ୍ କରାଯାଇ ଅଠା ମରାଯାଇଛି । ବୋଧହୁଏ ନୂଆ ବଜେଟ୍ ପରେ ଦର ବୃଦ୍ଧି କରାଗଲା ବେଳକୁ ପୁଣି ଥରେ ମେନୁ ଛାପିବା ପାଇଁ ପଇସା ହୋଇନାହିଁ । କିମ୍ବା ଦରବୃଦ୍ଧି ଯେପରି ଘଟୁଛି ଛାପା ଦର ବାରମ୍ବାର ବଦଳାଇବାକୁ ପଡ଼ିପାରେ ଭାବି ହୋଟେଲ୍ ମାଲିକ ଏହି ପନ୍ଥା ଶ୍ରେୟଃ ବୋଲି ଗ୍ରହଣ କରିଛନ୍ତି । ଦ୍ୱିତୀୟ ମେନୁଟି ଆସିବା ଡ଼େରି ଦେଖି ଆମ ଭିତରୁ ଜଣେ କେହି କହିଲା 'ମେନୁଟାରେ ଦରବୃଦ୍ଧି ପାଇନି ବୋଧେ । ଏ ହୋଟେଲ୍‌ଟା ଚାଲୁନି ବୋଲି ଦର ନିଶ୍ଚୟ କମାଇ ଦିଆଯାଇଛି ।'' ଆଉ ଜଣେ କହିଲା ''ତଥାପି ଯାହା ଦର ରହିଛି ଫାଇଭ୍‌ଷ୍ଟାର ହୋଟେଲ୍ ଦାମ୍‌ଠୁ କମ୍ ନୁହେଁ ।''

ଦ୍ୱିତୀୟ ମେନୁଟି ଆସିଲା । ସେଥିରେ ଆଉ ଦରଗୁଡ଼ା ଟାଇପ୍ ହୋଇନି । ଦର ଲେଖାଥିବା ସ୍ଥାନଗୁଡ଼ିକ ଖାଲି ରଖାଯାଇଥିଲା । ଦରଗୁଡ଼ାକ ହାତରେ ଲେଖାଯାଇଛି । ହାତ ଲେଖାଗୁଡ଼ାକ ବଙ୍କା ଟଙ୍କା ହୋଇଥିବାରୁ ଖାଦ୍ୟର ନାମ ଠାରୁ ଦର ପର୍ଯ୍ୟନ୍ତ ତୀର ଚିହ୍ନ ଦିଆଯାଇଛି ।



Digitized by srujanika@gmail.com

ଓ୍ୱେଟର ଘୋଷଣା କଲେ ତନ୍ଦୁର, ନାନ୍ ଇତ୍ୟାଦି ମିଳିପାରିବନି । ଭୂତଳ ସ୍ତରରେ ଥିବା ରୋଷେଇ ଘରେ ବର୍ଷା ହୋଇ ଚଟାଣ ତଳୁ ପାଣି ଝରି ତନ୍ଦୁର ଚୁଲିରେ ପାଣି ପଶିଯାଇଛି । ତାଓ୍ୱା ରୁଟି ମଧ ହୋଇପାରିବନି । ପରଟା ହେବାରେ ବାଧା ଅଛି । କାରଣ ପରଟା ମଧ ସେଠାରେ କୁଆଡ଼େ ତନ୍ଦୁର ଚୁଲିରେ ତିଆରି ହୁଏ । ତେଣୁ ଭାତ କିମ୍ୱା ପଲାଉ କିମ୍ୱା ଫ୍ରାଏଡ଼ରାଇସ୍ ଖାଇବାକୁ ହେବ । ଆମ ଭିତରୁ କେହି ଭାତ ଖାଇବାକୁ ରାଜି ନୁହଁନ୍ତି ।

ବିରକ୍ତିରେ ମନଟା ଭରିଗଲା । ଦିନିକିଆ ଅୟସ କରିବାର ସୁଯୋଗ ଏପରି ନଷ୍ଟ ହୋଇଗଲା କିନ୍ତୁ ସେ ରୁଦ୍ଧ କୋଠରୀରୁ ସନ୍ତରା ଓ ମଦିରା ଗନ୍ଧ ଏହି ଅଦିନିଆ ଯାତ୍ରୀମାନଙ୍କୁ ଏତେ ଆକ୍ରାନ୍ତ କରିଥିଲା ଯେ ବାହାରକୁ ଆସି ଖୋଲାପବନ ପାଇବା ପାଇଁ ସମସ୍ତେ ବ୍ୟାକୁଳ ହେଉଥିଲେ । ଆମେ ତ୍ରାହି ପାଇଗଲୁ ।

(ତା୨୪.୦୯.୧୯୮୫ରିଖ)





Digitized by srujanika@gmail.com

# ଏମ୍.ଏଲ୍.ଏ. ହୋଇଥିଲେ

ଦିନେ ମୁଁ ଏବଂ ମୋର ଜଣେ ବନ୍ଧୁ ଜଣେ ନେଇଆଣି ଥୋଇ ପାରିବା ପ୍ରଭାବଶାଳୀ ଇଞ୍ଜିନିଅରଙ୍କ ଅଫିସକୁ ଯାଇଥିଲୁ । ମୋର ବନ୍ଧୁ ଜଣକ ଆଗରୁ ମନ୍ତ୍ରୀ ଥିଲେ । ଏବେ ଘଟଣା ପ୍ରବାହରେ ରାଜନୀତିର ସୁଅରେ ଭାସି ଯାଇ ଆଉ କୌଣସି କୂଳରେ ନାହାଁନ୍ତି । ବନ୍ଧୁ ଆଗରୁ ଟେଲିଫୋନ୍ କରି ସମ୍ପୃକ୍ତ ଇଞ୍ଜିନିଅରଙ୍କ ସହିତ ମଧ୍ୟାହ୍ନ ଭୋଜନ ଓରଫ ଲଞ୍ଚ ପରେ ଅପରାହ୍ନ ତିନିଟା ବେଳକୁ ସମୟ ନେଇଥିଲେ । ଆମେ ପ୍ରାୟ ତିନିଟା ବାଜିବାର ପାଞ୍ଚ ସାତ ମିନିଟ୍ ପରେ ପହଞ୍ଚି ବୁଝିବାରୁ ବାହାରେ ବସିଥିବା ପିଅନଟି କହିଲା ଯେ ସାହବ ଲଞ୍ଚରୁ ଫେରିନାହାନ୍ତି । ଆମେ ଦୁଇ ଜଣ ସାହବଙ୍କ କୋଠରୀ ବାହାରେ ବାରଣ୍ଡାରେ ପଦଚାରଣା କଲୁ ।

ମୋ ବନ୍ଧୁଙ୍କର ଖଦଡ଼ ଧୋତି, ପଞ୍ଜାବୀ ଏବଂ ଗମ୍ଭୀର ମୁହଁଟି ଦେଖି ପିଅନଟି ମତେ ଟିକେ ଆଡ଼େଇ ନେଇ ଫୁସ୍‌ଫୁସ୍ କରି ପଚାରିଲା, ''ଆଜ୍ଞା, ସେ ବାବୁ କ'ଣ ଏମ୍.ଏଲ୍.ଏ ?''

ମୁଁ କହିଲି: 'ଏମ୍.ଏଲ୍.ଏ. ଥିଲେ, ମନ୍ତ୍ରୀ ବି ଥିଲେ ।''

ପିଅନ: 'ଏବେ ନାହାନ୍ତି ?'

ଉତ୍ତର ଦେଲି: ନାଁ, ପୂର୍ବଥର ସେ ଠିଆ ହୋଇନଥିଲେ । ଏଥର ହାରି ଯାଇଛନ୍ତି ।'

ପିଅନ: 'ଓହୋଃ କ'ଣ କରିବି ଆଜ୍ଞା । ଏମ୍.ଏଲ୍.ଏ. ହୋଇଥିଲେ ସାହବଙ୍କ ରୁମ୍‌ରେ ବସେଇ ଦେଇଥାନ୍ତି ।

ବନ୍ଧୁ ମୋର ଉଦାସୀନ ଭାବରେ ବାରଣ୍ଡାର ଏକ ଦୀର୍ଘ ଅଂଶ ପଦଚାରଣ କରୁଥାନ୍ତି ।

ମୁଁ ପିଅନକୁ ଆଶ୍ୱାସନା ଦେଇ କହିଲି, 'ତମେ ବ୍ୟସ୍ତ ହୁଅନା । ରାଜନୀତିରେ ସେମିତି ହୁଏ । କିଏ ଜାଣେ, ଏଇ ବାବୁ ପୁଣି ଦିନେ ଏମ୍.ଏଲ୍.ଏ. ନ ହେବେ କି ମନ୍ତ୍ରୀ ନ ହେବେ ।'

'ହଁ ଆଜ୍ଞା ସେ କଥା କିଏ କହିବ ?' ପିଅନ କହିଲା ।

ପୁଣି ଟିକେ ପରେ ପିଅନ ଆସି ମତେ କହିଲା ''ଆଜ୍ଞା ପି.ଏ.ଙ୍କ ଘରେ ବସୁନାହାନ୍ତି ?''

ମୁଁ କହିଲି ''ତମେ ବ୍ୟସ୍ତ ହୁଅନା । ଠିକ ଅଛି ।''

ପିଅନଟି ଇଞ୍ଜିନିଅର ସାହବଙ୍କ କୋଠରୀକୁ ପଶି ଆମ ପାଇଁ ବସିବାର ବ୍ୟବସ୍ଥା କରି ଆସି ଡାକିଲା । ବନ୍ଧୁଙ୍କୁ କହିଲା, ''ସାର ! ଆସନ୍ତୁ ପି.ଏ.ଙ୍କ ପାଖରେ ଚଉକୀ ଅଛି ।' ଏହା କହି ସେ ବାଟ କଢ଼େଇ ନେଲା ।'

କରିତ୍‌କର୍ମା ଇଞ୍ଜିନିଅର ଆସିଲେ ସାଢ଼େ ତିନିଟା ପରେ, ପିଅନ ଆସି ଖବର ଦେଲା । ପି.ଏ. ମଧ୍ୟ କହିଲେ 'ଆଜ୍ଞା ଆସନ୍ତୁ । ସାହବ ଆସିଲେଣି ।

ଇଞ୍ଜିନିଅର ମଧ୍ୟାହ୍ନ ଭୋଜନ ପରେ ଭଲ ନିଦଟିଏ ମାରି ଆସି ଥିଲା ପରି ଜଣାଗଲା । ନିଦର ଛାପ ପୂରା ଯାଇନଥାଏ । ଆମ ବନ୍ଧୁ ଓ ମୁଁ ଆମ ଗାଁ କେନାଲରେ ପାଣି ଦେବା ପାଇଁ ଗୁହାରି କଲୁ । ଇଞ୍ଜିନିଅର ପ୍ରତିଶ୍ରୁତି ଦେଲେ: ''ଦେଖିବା; ଚେଷ୍ଟା କରିବା ।''

ଦଶ ମିନିଟ୍ ପରେ ଇଞ୍ଜିନିଅରଙ୍କ ଶୀତତାପ ନିୟନ୍ତ୍ରିତ କାଠ ପ୍ୟାନେଲ ଦିଆ କୋଠରୀର ମୋଟା କାର୍ପେଟ୍ ଉପରେ ଚାଲି ବାହାରକୁ ଆସିଲା ବେଳେ ମୋର ମନକୁ ଆସୁଥିଲା ଯେ ଆଜିକାଲି ପରିସ୍ଥିତିରେ ଏମ୍‌ଏଲ୍‌ଏ ହେବାର ଆବଶ୍ୟକତା କେତେ ବେଶି । ବନ୍ଧୁ ମୋର କ'ଣ ଭାବୁଥିଲେ କେଜାଣି କାରଣ ଇଞ୍ଜିନିଅର ଚା' ବି ଯାଚିଲେନି ।

(ତା୧୫.୧୦.୧୯୮୫ରିଖ)





Digitized by srujanika@gmail.com

# ଶାନ୍ତିସୁଧା ସ୍ୱର୍ଗରେ ମିଳିବ

ଶାନ୍ତି ଅନେକ ପ୍ରକାରର । ସବୁ ଶାନ୍ତିରେ ସୁଧା ନଥାଏ । ସୁଧା ଥାଇ ଶାନ୍ତି ବିରଳ । ଶାନ୍ତିର ସୁଧା ତେଣୁ କେବେ କେମିତି ମିଳେ ।

ଏମିତି ଗୋଟିଏ ଶାନ୍ତିସୁଧା ଆଉ ମିଳିବନି । ସେ ଆସିଥିଲା ପ୍ରାୟ ପଚାଶ ବର୍ଷ ତଳେ । ହଠାତ୍ କାହାକୁ କିଛି ନ ଜଣାଇ ଚାଲିଗଲା । ଗୋଟାଏ ନାଟକର ଶେଷ ଯବନିକା ପତନ ଯଦି ଅପ୍ରତ୍ୟାଶିତ ଭାବରେ ପଡେ, ତେବେ ଦର୍ଶକମାନଙ୍କ ମଧ୍ୟରେ ଗୋଟାଏ ଅଭାବ ରହିଯାଏ । ସେମାନେ ନାଟକଟିକୁ ଯେତେ ଉପଭୋଗ କରିଥିଲେ ମଧ ଶେଷଥର ଡ୍ରପ୍ ପଡିବା ପୂର୍ବରୁ ସେମାନେ ସମାପ୍ତର ରୂପ-ରସ ଆହରଣ କରିବାକୁ ଉଣା ଅଧିକେ ପ୍ରସ୍ତୁତ ହୋଇ ରହିଥାଆନ୍ତି । ଏହି ପ୍ରସ୍ତୁତିକୁ ନାଟ୍ୟକାର ଯେତେବେଳେ ପରିପକ୍ୱ ହେବାକୁ ଦିଅନ୍ତି ନାହିଁ, ସେତେବେଳେ ଦର୍ଶକମାନେ ଗୌଣ ହୋଇଯାଆନ୍ତି । ନାଟ୍ୟକାରର ସୃଷ୍ଟି ଦର୍ଶକଠାରୁ ଖୁବ୍ ବେଶୀ ବଡ ହୋଇଯାଏ ।

ସେଦିନ ସକାଳେ ହଠାତ୍ ଶୁଣିଲି ଯେ ଶାନ୍ତି ଅପା ଗତ ରାତିରେ ମରିଗଲେ । ହାର୍ଟଫେଲ ହୋଇଗଲା । ଶାନ୍ତି ଅପାର ହାର୍ଟଫେଲ । ତା' ହୃଦୟରେ ଯେତେ ସ୍ନେହ, ଶ୍ରଦ୍ଧା, ଆନ୍ତରିକତା ଆଉ ଆତିଥ୍ୟ ଥିଲା ବହୁତ କମ୍ ଥାଏ ଅନ୍ୟତ୍ର । ସେ ପ୍ରକାର ହୃଦୟ ଶାରୀରିକ ସ୍ତରରେ ନିସ୍ପନ୍ଦ ହୋଇଗଲା । ପ୍ରଥମେ ବିଶ୍ୱାସ ହେଲାନି । କିଏ ଜଣେ ଫୋନ୍ କରି ପଚାରିଲା ଏହି ସମ୍ବାଦ ସତ୍ୟ କି ? ମୁଁ ସମ୍ବାଦର ସତ୍ୟତାକୁ ଏତେ ଅବିଶ୍ୱାସ କରୁଥିଲି ଯେ, କହିଲି, 'ମୁଁ ଜାଣିନି । ଏମିତି ତ ହବାର ନୁହେଁ ।'

ଆଉ ଜଣେ ଫୋନ୍ କରି ଏହି ସମ୍ବାଦର ସତ୍ୟତା ଜଣାଇଲେ । ମୋର ଜୟପ୍ରକାଶଙ୍କ 'ପ୍ରଥମ ମୃତ୍ୟୁ' ସମ୍ବାଦ କଥା ମନେପଡିଲା । ମୁଁ ଶାନ୍ତି ଅପା ଘରକୁ ଶଙ୍କିତ ମନରେ ଫୋନ୍ କଲି । କିନ୍ତୁ ଇଚ୍ଛା ହେଉଥାଏ ଶାନ୍ତି ଅପା ଫୋନ୍ ଧରନ୍ତା କି । ବହୁତ ଦିନରୁ ତାଙ୍କ ଘରଆଡେ ଯାଇନି । ଅଭିମାନ କରି ସେ କୁହନ୍ତି, ''ନିଶାମଣି ବାବୁଙ୍କ ସାଙ୍ଗରେ ସିନା ତମର ଲାଗିଚି । ଆମେ କ'ଣ କରିଚୁ ? ଆମ ଘରକୁ କାହିଁକି ଆସୁନା ?''

ନିଶାମଣି ଖୁଣ୍ଟିଆଙ୍କ ସହିତ ପାରାଦୀପରେ ମୋର ଶ୍ରମିକ ସଂଘ ବ୍ୟାପାରରେ ବିବାଦୀୟ ସମ୍ପର୍କ । ନିଶାମଣି ବାବୁଙ୍କ ସହିତ ରାଜନୈତିକ ସଂଘର୍ଷର ପ୍ରତିଦ୍ୱନ୍ଦ୍ୱିତା ସତ୍ତ୍ୱେ ଶାନ୍ତିଅପା ସହିତ ଭିନେ ସମ୍ପର୍କ । ସେ ନିଶାମଣି ବାବୁଙ୍କ ସହଧର୍ମିଣୀ । ତାଙ୍କ ଆଡିଆ ହୋଇ ମୋ ସହିତ ଯୁକ୍ତି କରେ ସତ୍ୟ, କିନ୍ତୁ କେତେ ସ୍ନେହରେ ବାଢି ଖାଇବାକୁ ଦିଏ । ପାନ ଭାଙ୍ଗି କରି ହାତରେ ଗୁଞ୍ଜେ । ସେଇ ମଣିଷପଣିଆ ଯୋଗୁଁ ଶାନ୍ତିଅପା ଅନ୍ୟମାନଙ୍କଠୁ ନିଆରା ।

ଶାନ୍ତିଅପା ନିଶାମଣି ବାବୁଙ୍କ ସ୍ତ୍ରୀ ବୋଲି ବେଶୀ ବଡ ହୋଇଥିଲା ତାହା ନୁହେଁ, ତା' ନିଜର ଗୁଣ ଥିଲା । ସେଥିପାଇଁ ସାମାଜିକ ଜୀବନରେ ସେ ଅନେକ ଲୋକଙ୍କର ଆଦର ପାଉଥିଲା । କିନ୍ତୁ କେତେ ଲୋକଙ୍କୁ ସେ ଆଦରରେ ବାନ୍ଧିଥିଲା । ରାଜନୈତିକ ଜୀବନରେ ତାହା ପରି ସହଧର୍ମିଣୀ ପାଇଲେ ଯେ କେହି ଲୋକ ଉପରକୁ ଉଠିବ । କିନ୍ତୁ ଆଉ କେତେ ରାଜନୈତିକ ନେତାଙ୍କର ସହଧର୍ମିଣୀ ମୁଁ ଦେଖିଚି । ସେମାନେ ଠେଲିବା ପରିବର୍ତ୍ତେ ଟାଣନ୍ତି । ସାମାଜିକ ଓ ରାଜନୈତିକ ଜୀବନରେ ଆଉ କେତେ 'ଶାନ୍ତି' ମୁଁ ଦେଖିଛି । ସେ ଶାନ୍ତିମାନେ ଏ ଶାନ୍ତି ଅପା ପରି ନୁହନ୍ତି ।



Digitized by srujanika@gmail.com

ସାମାଜିକ କ୍ଷେତ୍ରରେ ଶାନ୍ତି ଅପା ସ୍ୱୟଂଚାଳିତ ସ୍ୱେଚ୍ଛାସେବୀ ଥିଲା । କେତେ ଅନୁଷ୍ଠାନରେ କେତେ କାମ କରୁଥିଲା । କେତେ ବନ୍ଧୁ ଅନାଥ ହେଲେ । ଶାନ୍ତି ଅପା ବେଶୀ ଦିନ ବେମାର ପଡିଥିଲେ ଜାଣିଥାନ୍ତା  କେତେ ଲୋକ ଦୁନିଆରେ ସେ ଛାଡିଗଲା, ଯେଉଁମାନେ ତା' ସ୍ନେହ ଆଦରରେ ବନ୍ଧା ଥିଲେ । ହଠାତ୍ ଯିବାରେ ଯିବା ବାଲାର ସ୍ୱର୍ଗୀୟ ଆନନ୍ଦ ଥାଇପାରେ । ଖୋଜିଲାବାଲାଙ୍କର ଦୁଃଖ କେତେ ସେ କାହୁଁ ବୁଝିବେ ?

(ତା୩୧.୦୩.୧୯୮୦ରିଖ)



# ପାଟୁଳୀ ଛେଳି ବନାମ କାଲୁଣୀ ବୁଢୀ

ଆମେ ଯେଉଁ ଘରେ ଭଡ଼ାରେ ଥିଲୁ ସେ ଘର ମାଲିକ ଓ ତାଙ୍କର ଧର୍ମପତ୍ନୀଙ୍କର ବଗିଚା କରିବାରେ ଭାରି ସଉକ । ବିଶେଷ କରି ଭଦ୍ର ମହିଳାଙ୍କର ବାଡ଼ିରେ ଫୁଲ ଫଳ ସାଙ୍ଗକୁ ପରିବା ସଉକ ବହୁତ ବେଶୀ । ସେଥିପାଇଁ ଫାଟକ ବନ୍ଦ କରିବାର ଚାହିଦା ଆମେ ସମସ୍ତେ ବେଶ ଉପଲବ୍ଧି କରୁ । ଥରେ ଦୁଇଟା ଛେଳୀ ବଡ଼ ଉପଦ୍ରବ କଲେ । ହତାର ପାଚେରୀ ବେଶ ଉଚା । ଗୋଟାଏ ଯାଗାରେ ପାଚେରୀ ପାଖକୁ ଲାଗି ପୁରୁଣା ଇଟା ପଥର ଗୁଡ଼ାଏ ଗଦାହୋଇ ଥିଲା । ଆରପଟରୁ ଛେଳି ଦୁଇଟା ପାଚେରୀ ଡେଇଁ ହତା ଭିତରେ ପଶି ଗଛପତ୍ର ଖୁଣ୍ଟିବାରେ ଲାଗନ୍ତି । ଆମେ ଦିନେ ଛେଳି ଦୁଇଟାକୁ ହତାଭିତରେ ଗୋଡାଉ ଥିଲୁ । ବଡ଼ ଛେଳିଟା ପାଚେରୀ ଡେଇଁ ପଳେଇଲା । ବହୁତ କଷ୍ଟରେ ଛୋଟିଆ ଛେଳିଟା ଧରା ହୋଇ ଗୋଟିଏ ବଡ଼ କୂଅ ଦଉଡ଼ାରେ ବନ୍ଧା ହୋଇ ମେଁ ମେଁ ବୋବେଇଲା ।

କିଛି ସମୟ ପରେ ଦେଖିଲୁ ଯେ ଗୋଟାଏ ବୁଢ଼ୀ ଦି ହାତରେ ଦି ବେକା ଘାସ ଧରିଛି । ଆଉ ତା' ହାତରୁ ଆମ ଘର ମାଲିକଙ୍କ ରୋଷେୟା ଗୋଟାଏ ଦା ଛଡ଼ାଇ ନେଇ ଧରିଛି । କଥା କ'ଣ । ବୁଝୁ ବୁଝୁ ଜଣାପଡ଼ିଲା ଯେ, ବୁଢ଼ୀଟି କେତେବେଳେ ଫାଟକ ଖୋଲି ହତାରେ ପଶି ବହୁ କଷ୍ଟରେ ତିଆରି ହୋଇଥିବା ଲନରୁ ଘାସଗୁଡ଼ିକ କାଟି ବା ଉପାଡ଼ି ତା' ଗାଈ ପାଇଁ ଖାଦ୍ୟ ସଂଗ୍ରହ କରି ନେଇଛି । ବୁଢ଼ୀକୁ ଯାହା ପଚରା ଯାଉଛି ବୁଢ଼ୀ ତା'ର ଉତ୍ତରରେ କହୁଛି କେରାଏ ନଉଚି ମୋ ଗାଇଟା ପାଇଁ । ତମର ଯଦି ଗାଈ ଅଛି ତମପାଇଁ ଘାସ କେରାଏ କାଟି ଦେଇଯିବି । ତମର ଭଲ ଘାସ ଗୁରା ବଢ଼ିଛି । ଅରମା ସଫା ହୋଇଗଲେ ଭଲ, ଇତ୍ୟାଦି । ବଡ଼ ପାଟିରେ ଯେତେଯାହା କହିଲେ ବି ସେ ନଶୁଣିଲା ପରି ତା'ଆଦୁ ତା'ଗାଈ ପାଇଁ ଘାସ କେରାଏ ନବା କଥାକୁ ଦୋହରାଉଛି । ବହୁ ପାଟିନାଟି ହେବାରୁ ବୁଢ଼ୀ କହିଲା 'ମୁଁ କାଲୁଣୀ । ତମେ ସବୁ କ'ଣ କହୁଚ ମୁଁ ବୁଝି ପାରୁନି । ଘାସ କେରାଏ ପେଇଁ କ'ଣ ମତେ ଏତେ କୋବଲଉଚ' ? ଶେଷରେ ବୁଢ଼ୀ ବିରକ୍ତ ହୋଇ ଘାସ ଗୁଡ଼ାକ ଫୋପାଡ଼ି ଦେଇ କହିଲା 'ହଉ ବାବୁ ରଖ ତମ ଘାସ । ତମ ଘାସ ଗୁଡ଼ା ଏତେ ଦାମିକା ଯେ, ମୋ ଦା'ଟାକୁ ଛଡ଼େଇ ରଖିଚ । ଦିଅ ମୋ ଦା'ଟା ଯାଏ ଘାସ କେରାଏ ଆଉ କୋଉଠୁ ନେଇକି ଯିବି । ଉଛୁର ହେଲାଣି' । ଘାସର ଗାଲିଚା ଟା ବହୁଦିନ ପାଇଁ ଖାପଛଡ଼ା ହୋଇ ରହିଲା । ଯେମିତି ବହୁ ଘଞ୍ଚ କେଶ ଥିବା ବାବୁମାନେ ହଠାତ୍ ଚନ୍ଦାମୁଣ୍ଡିଆ ହେଲେ ଦେଖା ଯାଆନ୍ତି ।

(ତା୦୫.୦୯.୧୯୮୩ରିଖ)





Digitized by srujanika@gmail.com

# ଟେବୁଲ ସାମ୍ବାଦିକ ଓ ରିପୋର୍ଟର ସାମ୍ବାଦିକ

ସେ ଜଣେ ଯୁବ ସାମ୍ବାଦିକ । କଟକ କିମ୍ବା ଭୁବନେଶ୍ୱରରେ ରହନ୍ତି । ଅବିବାହିତ । ପିଲାଦିନୁ ମାଙ୍କୁ ହରାଇଛନ୍ତି । ବୁଢ଼ାବାପା ଗାଁରେ ରହନ୍ତି । ଦୁଇବର୍ଷ ହେଲାଣି ରେସନ କାର୍ଡ ହୋଇନଥିବାରୁ ଚିନି, ଗହମ ଓ କିରୋସିନି ଇତ୍ୟାଦି ବଜାରରୁ ଖୋଲା ଦରରେ କିଣିବାକୁ ପଡୁଛି । ଖୋଲାଦର ମାନେ ଚଢ଼ାଦର । କଳାବଜାର ଦର । ତେଣୁ କାର୍ଡଟିଏ କରାଇବାକୁ ମନ ବଳାଇଲେ । କାର୍ଡ ପାଇଁ ସପ୍ଲାଇ ଅଫିସକୁ ଦଉଡିଲେ । ଦରଖାସ୍ତ ଦେଲେ । ଇନ୍‌କ୍ୱାରି ହେବ । ଇନ୍‌କ୍ୱାରି ରିପୋର୍ଟ ମିଳିଲେ ଯାଇ କାର୍ଡ ମିଳିବ । ମାସେ, ଦିମାସ, ତିନିମାସ ଗଲା । ୬ ମାସ ହେଲା । ଇନ୍‌କ୍ୱାରି ହେଲାନି ତେଣୁ କାର୍ଡ ମିଳିଲାନି । ସପ୍ଲାଇ ଅଫିସକୁ ଦୌଡ଼ି ଦୌଡ଼ି ସାଇକେଲ ଟାୟାର କେବଳ ଘୋରି ହୋଇ ନୂଆ ଟାୟାର ଦରକାର ପଡ଼ିଲା । ଦିନେ ମନ ଦୁଃଖରେ ସାମ୍ବାଦିକ ଆଉ ଜଣେ ତାଙ୍କର ସହକର୍ମୀ ସାମ୍ବାଦିକଙ୍କୁ ଏକଥା କହିଲେ । ଏ ଯୁବ ସାମ୍ବାଦିକ ଅଫିସରେ ଟେବୁଲରେ ବସି ସମ୍ବାଦ ଲେଖନ୍ତି । ସହକର୍ମୀ ସାମ୍ବାଦିକ ରିପୋର୍ଟର । ବାହାରେ ଅର୍ଥାତ୍ ସହରରେ ବୁଲି ସମ୍ବାଦ ସଂଗ୍ରହ କରି ଆଣନ୍ତି । ରିପୋର୍ଟର କହିଲେ 'ତୁମେ କଣ ସପ୍ଲାଇ ଅଫିସରେ କହିନା କି ଯେ ମୁଁ ସାମ୍ବାଦିକ ବୋଲି !' ନାଁ, ସେ କଥା ତ କହିନି । 'ଓଃ ସେଇଥିପାଇଁ ୬ ମାସ ହେଲାଣି । ଆଜି ଯିବ ମୋ ସାଙ୍ଗରେ, ଆଜି ହୋଇଯିବ ।'

ଉଭୟ ଚାଲିଲେ ସପ୍ଲାଇ ଅଫିସ୍‌କୁ । ରିପୋର୍ଟର ସାମ୍ବାଦିକ ସିଧା ପଶିଗଲେ ସିଭିଲ ସପ୍ଲାଇ ଅଫିସରଙ୍କ ଅଫିସ କୋଠରୀକୁ । ଅଫିସରଙ୍କ ଚାରିପଟେ ବହୁତ ଭିଡ଼ । ଚକିବାଲାର ଗହମ କୋଟା ଦରକାର, କାହାର ସିମେଣ୍ଟ । ଶାସକ ଦଳର କାରପଟଦାର ମଧ୍ୟ ବସିଛନ୍ତି । ରିପୋର୍ଟର ବାବୁ ପଶିଗଲେ ଲୋକଙ୍କୁ ଠେଲିଠାଲି ଟେବୁଲ ଯାଏ । ସପ୍ଲାଇ ଅଫିସରଙ୍କ ଦୃଷ୍ଟି ପଡ଼ିବା ମାତ୍ରେ ସେ ଚଉକିରୁ ଉଠି ଠିଆହୋଇ ପଡ଼ିଲେ । 'ଆରେ ନମସ୍କାର ନମସ୍କାର ଆପଣ କୁଆଡେ ଆସିଲେ !' ଟେବୁଲ ଉପରେ କଲିଂ ବେଲ ଉପରେ ଚାରି ଛ'ଥର ଜୋରରେ ମାଡ଼ ଦେଲେ ।' ଆରେ ଆଣ ଚଉକୀ ।

ଜମା ହୋଇଥିବା ଲୋକେ ବି ଆଡେଇ ହୋଇଗଲେ । ଜିଏ ବଡ଼ ଲୋକଟାଏ ହୋଇଥିବ ପରା । ନଇଲେ ସିଭିଲ ସପ୍ଲାଇ ଅଫିସର, ଯାହାଙ୍କ ପାଖରେ ତହୁଁ ବଡଲୋକ ଗୋଡ ଭାଙ୍ଗି ଠିଆ ହେଉଛନ୍ତି, ସିଏ ନିଜେ ଛିଡ଼ା ହୋଇ ରହିଛନ୍ତି ଖିଜମତ କରିବା ପାଇଁ । ଟେବୁଲ ସାମ୍ବାଦିକ କେତେଥର ସେ ଭିଡ଼ରେ ଆସି ସପ୍ଲାଇ ଅଫିସରଙ୍କ ପାଖରୁ ବିଫଳ ମନୋରଥ ହୋଇ ଫେରିଥିବେ । ଏ ରାଜକୀୟ ବ୍ୟବହାର ଦେଖି ସେ ତାଟଙ୍ଗା ।

ରିପୋର୍ଟର ସାମ୍ବାଦିକ ଆରମ୍ଭ କଲେ 'କଥାଟା କ'ଣ କି, ଏ ବାବୁ ଆମର ସବ୍-ଏଡିଟର । ଛ'ମାସ ହେଲା ରେସନ କାର୍ଡ ପାଇଁ ଦରଖାସ୍ତ କଲେଣି । ତାଙ୍କୁ କାର୍ଡ ମିଳୁନି । 'ମତେ କହିଲେ ନି କାହିଁକି ? ଆପଣ ବି ଏଇକଥା ପାଇଁ ନଆସି ଟେଲିଫୋନ୍ କରିଦେଇଥିଲେ ହୋଇ ନଥାନ୍ତା ?' ସପ୍ଲାଇ ଅଫିସର କହିଲେ । 'ହଉ ଟିକେ କରିଦିଅନ୍ତୁ ଏବେ ।' ସପ୍ଲାଇ ଇନିସ୍‌ପେକ୍ଟର ଡକା ହେଲେ । ଟେବୁଲ ସାମ୍ବାଦିକଙ୍କୁ ସସମ୍ମାନେ ନିଜ କୋଠରୀକୁ ପାଛୋଟି ନେଇଗଲେ । ବସିବାକୁ ଚଉକୀ ଦେଲେ ।



Digitized by srujanika@gmail.com

ରିପୋଟର ଓ ଟେବୁଲ ସାମ୍ବାଦିକ ଉଭୟଙ୍କ ପାଇଁ ଫାଣ୍ଟା ନମିଳିଲେ ଡବଲ ସେଭେନ୍ ମଗାଗଲା । ଟେବୁଲ ସାମ୍ବାଦିକ ମନେ ମନେ ଭାବୁଥିଲେ ଯେ, କେତେ ସେ ଏହି ଅଫିସକୁ, ଏହି ଅଫିସରଙ୍କ ଟେବୁଲ ପାଖକୁ, ଏହି ସପ୍ଲାଇ ଇନିସପେକ୍ଟରଙ୍କ ପାଖକୁ ଦଉଡିଛନ୍ତି । ଏହି ସମ୍ମାନ, ଆନ୍ତରିକତା, ଆଉ ତନାଘନା କୁଆଡେ ଥିଲା ? ରିପୋର୍ଟର ସାମ୍ବାଦିକ ଇଷତ୍ ଗର୍ବର ସହିତ ଟେବୁଲ ସାମ୍ବାଦିକଙ୍କ ଆଡକୁ ଅନାଇ ମୁରୁକି ମୁରୁକି ହସୁଥିଲେ । ମନରେ ତାଙ୍କର ଭାବ 'ଦେଖିଲ କେତେ ପାବାର ମୋର' !

ଦଶମିନିଟ୍ ପରେ କାର୍ଡ ନେଇ ସାମ୍ବାଦିକଦ୍ୱୟ ଦର୍ପର ସହିତ ବାହାରିଲେ ସପ୍ଲାଇ ଅଫିସରୁ ।





Digitized by srujanika@gmail.com

# ମନ୍ତ୍ରୀଙ୍କ ପୁଅକୁ ମାଡ଼ ଦେବା ମହାପାପ

ଆଗେ ଗୋଟାଏ କଥା ଥିଲା 'ପଣ୍ଡିତ ପୁଅ ମାଙ୍କଡ଼ ମାରିଲେ ଦୋଷ ନାହିଁ' ଅର୍ଥାତ୍ ପଣ୍ଡିତ ଓରଫ ଶିକ୍ଷକ ଓରଫ ମାଷ୍ଟରଙ୍କ ପୁଅ ପ୍ରତି ଶିକ୍ଷାଳୟରେ ଅନୁଶାସନ କଡ଼ାକଡ଼ି ଲାଗୁ ହେଉନଥିଲା । ଦ୍ୱିତୀୟ କଥା, ସେତେବେଳେ ରାମାୟଣର ବର୍ଣ୍ଣିତ ଭୂମିକା ଅନୁଯାୟୀ ମାଙ୍କଡ଼ ବିଶେଷକରି କଳାମୁହାଁ ମାଙ୍କଡ଼କୁ ମାରିବା ହିନ୍ଦୁମାନଙ୍କ ପକ୍ଷରେ ଧର୍ମାପରାଧ ଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଯେତେବେଳେ ଖାଦ୍ୟ ଶସ୍ୟ ନିଅଣ୍ଟ ପଡ଼ିଲା, ସେତେବେଳର ବ୍ରିଟିଶ ସରକାର ମାଙ୍କଡ଼ମାନେ ଖାଦ୍ୟଶସ୍ୟ ବିଶେଷକରି ପନିପରିବା ଓ ଫଳ ନଷ୍ଟ କରୁଥିବାରୁ ମାଙ୍କଡ଼ମାନଙ୍କୁ ନିପାତ କରିବାକୁ ଏକ ପୁରସ୍କାର ଘୋଷଣା କରିଥିଲେ । ମାଙ୍କଡର ମୁଣ୍ଡ ଓ ଲାଞ୍ଜ ଗୋଟିଏ ଲେଖାଏଁ ଦାଖଲ କଲେ ୧୯୪୦-୪୨ ମସିହାରେ ତିନିଟଙ୍କା ଲେଖାଏଁ ପୁରସ୍କାର ମିଳୁଥିଲା । ଗାଁ ଗଣ୍ଡାରେ ଯେଉଁ ବାଣୁଆମାନଙ୍କ ପାଖରେ ବନ୍ଧୁକ ଥିଲା ଏବଂ ମାଙ୍କଡ଼ ମାରିବାଟାକୁ ଯେଉଁମାନେ ପାପ ବୋଲି ମାନୁ ନଥିଲେ ସେତେବେଳେ ବେଶ ପଇସା ରୋଜଗାର କରିଥିଲେ ।

ଛାଡ଼ନ୍ତୁ ସେ କଥା । ଅସଲ କଥା ହେଲା ସେତେବେଳେ ଯେମିତି ମାଷ୍ଟ୍ରଙ୍କ ପୁଅକୁ 'ରେ' ବୋଲି କହି ହେଉ ନଥିଲା କିମ୍ବା 'ଦେହରେ ଟିପ ଦେଇ ହେଉନଥିଲା' ଏବେ ସେମିତି ମନ୍ତ୍ରୀଙ୍କ ପୁଅ ଦେହରେ ହାତ ଦେବା ମୁଷ୍କିଲ । ମୋ ପୁଅ ସହିତ ଜଣେ ମନ୍ତ୍ରୀଙ୍କ ପୁଅ ପଢ଼େ । ତାକୁ ଦିନେ ସ୍କୁଲରେ ଜଣେ ମାଷ୍ଟ୍ର ପଢା କରିନଥିଲା ବୋଲି ମାଡ଼ ଦେଲେ । ମନ୍ତ୍ରୀଙ୍କ ପୁଅ ଯାଇ ଘରେ ଫେରାଦ ହେଲା ।

ମାଷ୍ଟ୍ରଙ୍କର ରାଜଧାନୀରୁ ଦୂର ଯାଗାକୁ ବଦଳି ହେଲା । ଏ ମାଷ୍ଟ୍ରତ ଆଗକାଳିକା ମାଷ୍ଟ୍ରଙ୍କ ଭଳି ନୀତିବାନ କିମ୍ବା ସତ୍ୟବାନ ନୁହନ୍ତି । ହେବା ବି କଷ୍ଟକର । ତା' ହୋଇଥିଲେ ସେ ଦୂରକୁ ବରଂ ଚାଲିଯାଇଥାନ୍ତେ ।

ବିଚରା ମାଷ୍ଟ୍ର ଯାକୁ ତାକୁ ଧରି ମନ୍ତ୍ରୀଙ୍କ ବଙ୍ଗଳାକୁ ଦଉଡ଼ିଲେ । ବହୁତ ଦଉଡ଼ା ଧପଡ ପରେ ତାଙ୍କୁ ମାଫି ମିଳିଲା । ସେ ରାଜଧାନୀରେ ସେହି ସ୍କୁଲରେ ରହିଲେ । କିନ୍ତୁ ଏବେ ସେ ଶ୍ରେଣୀ ପିଲାଙ୍କର କଚେ ବାର । ସେ ଶ୍ରେଣୀ ପିଲା ପାଠ ପଢା ନକରି ଆସିଲେ ବି ମାଡ଼ର ଆଉ ପ୍ରଶ୍ନ ନାହିଁ । ମନ୍ତ୍ରୀଙ୍କ ପୁଅର ସାଙ୍ଗ ହୋଇଥିବାରୁ ସବୁ ପିଲା ବର୍ତ୍ତମାନ କ୍ଷମତାର ବାହୁଛାୟା ତଳେ ଆଶ୍ରିତ । ସେହି ମାଷ୍ଟ୍ର କେତେ ବଦଳି ଯାଇଛନ୍ତି । ତାଙ୍କର ଶିକ୍ଷକତା ହେଉ ନହେଉ କ୍ୟାପିଟାଲରେ ରହିବା ଚାହିଁ । ମନ୍ତ୍ରୀଙ୍କ ପୁଅ ଏବେ ଅନେକ ସମୟରେ ପଢ଼ାକରି କ୍ଲାସକୁ ଆସୁନି । ନଜାଣି କରି ଗୋଟିଏ ମାଷ୍ଟ୍ର ତାକୁ ମାଡ଼ ଦେଇ ଯେଉଁ ହରଡ଼ଘଣାରେ ପଡ଼ିଲେ ସେଥିରେ 'ମୁଗ ମାଡ଼ ଦେଖି କୋଳଥ ଚେପା' ନ୍ୟାୟରେ ଅନ୍ୟ ମାଷ୍ଟ୍ରମାନେ ବି ମାଡ଼କୁ ବର୍ଜନ କରିଛନ୍ତି । ଅବଶ୍ୟ ସେ ଶ୍ରେଣୀ ପଢାପଢିର ମାନ ନିଶ୍ଚୟ ତଳକୁ ଖସୁଚି । କିନ୍ତୁ କ'ଣ କରିହେବ । ମନ୍ତ୍ରୀଙ୍କ ପୁଅ ଏବେ ମୂର୍ଖ ହେଲେ କଣ ହେଲା । କିଛି ନହେଲେ ଖାନଦାନୀ ବୁନିଆଦୀ ବ୍ୟବସାୟରେ ତ ଯୋଗ ଦେବ । ସେଥିପାଇଁ କୋଉ ଯୋଗ୍ୟତା, ପରୀକ୍ଷା ବା ପବ୍ଲିକ୍ ସର୍ଭିସ କମିଶନ ବଛା ବଛିରେ ବସିବାକୁ ପଡୁଛି ? ବରଂ ମନ୍ତ୍ରୀ ହେଲେ ପବ୍ଲିକ ସର୍ଭିସ କମିଶନର ସଭ୍ୟ ହେବାକୁ ଥିବା ଆଶାୟୀ ପ୍ରାର୍ଥୀମାନେ ତା ପାଖକୁ ଦଉଡିବେ ।

(ତା୨୨.୦୯.୧୯୮୧ରିଖ)





Digitized by srujanika@gmail.com

# ରେସନ କାର୍ଡ ପାଇଁ ବୋଉ ସ୍ୱର୍ଗରୁ ଫେରିଲା

ବହୁତ ଦଉଡ଼ା ଧପଡ଼ା କରି ଚାକିରି ଖଣ୍ଡିଏ ମିଳିଲା । ତିନି ତିନିଟା ମନ୍ତ୍ରୀମଣ୍ଡଳ ଏହା ଭିତରେ ଗଲାଣି । ବି.ଏ. ପାସ୍ କରିବା ପରେ ପରେ ଗାଁରେ ନିର୍ବାଚନ ଆସିଗଲା । ସେତେବେଳେ ସମସ୍ତେ ଧାଇଁଲେ ଜନତା ଦଳ ପାଇଁ । ଯୁବକ ଜଣକ ବି ଧାଇଁଲେ । ଯା'ହଉ ଅକ୍ଳାନ୍ତ ପରିଶ୍ରମ ଫଳରେ ଜନତା ଦଳ ଜିତିଲେ । କ୍ଷମତାକୁ ଆସିଲେ । କିନ୍ତୁ ଚାକିରି କାହିଁ ?

ଦଉଡ଼ି ଦଉଡ଼ି ଗୋଡ଼ରୁ ପାଣି ମଲା । ଯାହାଙ୍କୁ ଜିତାଇଥିଲେ ସେ ଦିଲ୍ଲୀ ଚାଲିଗଲେ ଯେ ତାଙ୍କ ପତ୍ତା ପାଇବା ମୁଷ୍କିଲ୍ । ପୁଣି ଆସେମ୍ବ୍ଲିକୁ ଯିଏ ଆସିଲେ ସିଏ ମନ୍ତ୍ରୀ ବି ହେଲେ । ଭୋଟବେଳେ ଚାକିରି ନିଶ୍ଚୟ କରିଦେବେ ବୋଲି କହିଥିଲେ । ସେ ମନ୍ତ୍ରୀ ହେବେ ବୋଲି ଆଗରୁ ଜାଣିଥିଲେ । ଚାକିରି କିନ୍ତୁ ହେଲା ନାହିଁ । ଜନତା ଦଳରେ ବାଡ଼ିଆପିଟା ହୋଇ ଦଳ ଭାଙ୍ଗିଗଲା । ଏଠି ଲୋକଦଳର ସରକାର ହେଲା । ଏ ବାବୁ ବାଣ୍ଟକୁଣ୍ଟରେ ଜନତା ଦଳ ଭାଗରେ ପଡ଼ିଗଲେ । ଚାକିରି ତେଣୁ ହେବା ନୋହିଲା । ଚାକିରି ପାଇଁ ତ ଓ୍ୱାର୍କର ହୋଇଥିଲି । ଭାବିଲେ ଯୁବକ । ନଇଲେ ବି.ଏ. ପାସ କରି ଏଗୁଡ଼ାଙ୍କ ପଛରେ ଗୋଡେଇବା କ'ଣ ଦରକାର ?

ପାର୍ଲାମେଣ୍ଟ ଭାଙ୍ଗିଲା । ପୁଣି ନିର୍ବାଚନ । ପୁଣି ଦେଖିଲା ବେଳକୁ ଜନତା ଆଉ ଲୋକଦଳ କ'ଣ ମିଶିକରି ଭୋଟ ଲଢ଼ିଲେ । ବଡ଼ ଅଡୁଆରେ ପଡ଼ିବାକୁ ହେଲା । ଘରେ ବସି ରହିଲେ । ଇନ୍ଦିରା ଗାନ୍ଧୀ ଦଳ ଟୋକା ଆସି ପହଞ୍ଚିଲେ । 'ଆମେତ ଜିତିବୁ । ସେ ଭଙ୍ଗା ନାଆରେ ତମେ ବସି କୋଉଠିକି ଯିବ ।' ବାଧ ହୋଇ ଦିନରେ ଜନତା ଲୋକଦଳ, ରାତିରେ କଂଗ୍ରେସ(ଇ) ପାଇଁ କାମ କରିଲେ । ଇନ୍ଦିରା କଂଗ୍ରେସ ଜିତିଲା । ଦିଲ୍ଲୀରେ ଇନ୍ଦିରା ସରକାର ହୋଇଗଲା ପରେ ବି.ଏ. ପାସ ଓ୍ୱାର୍କର ତେଣିକି ଖୋଲାଖୋଲି ଇନ୍ଦରା କଂଗ୍ରେସ ପାଇଁ ବାହାରିବାରେ କୌଣସି ଅସୁବିଧା ରହିଲାନି । ତାପରେ ରାଜ୍ୟରେ ବି ଇନ୍ଦିରା ସରକାର ହୋଇଗଲା । ପୁରୁଣା ଓ୍ୱାର୍କରଙ୍କୁ ଧରି ବହୁତ ଥର ଭୁବନେଶ୍ୱର ଦଉଡ଼ିବା ପରେ ଅଡିଟର ଚାକିରି ଏବେ ମିଳିଲା । ତିନିଶହ ଟଙ୍କା ଖର୍ଚ୍ଚ କଲାରୁ କଟକରେ ପୋଷ୍ଟିଂ ହେଲା । ୮୦ ଟଙ୍କା ଭଡ଼ାରେ ବଖରାଏ ଚାଳଘର ବି ଯୋଗାଡ଼ ହେଲା । ରେସନ କାର୍ଡ ଖଣ୍ଡିକ ଦରକାର ।

ଅଡିଟରଙ୍କ ଭାଉ ତ ଟିକେ ଉପରେ । ଅଫିସ ବଡ଼ବାବୁଙ୍କୁ କହିବାରୁ ସେ ଯୋଗାଣ ବିଭାଗ ଅଫିସକୁ ନେଇଗଲେ । ସପ୍ଲାଇ ଇନିସ୍‌ପେକ୍ଟର କହିଲେ ଯେ ଏକାଥରେ 'ଏ' କ୍ଲାସ କାର୍ଡ କରେଇନିଅ । ପରିବାରରେ ଛ'ଜଣ ଲୋକ ଲେଖ ।

'ଏ' କ୍ଲାସ କାର୍ଡ ପାଇବା ପାଇଁ ଦରମା ବେଶୀ ହେବା ଦରକାର । 'ଓହୋ ତମ ଦରମା କିଏ ଦେଖୁଛି ? ଦରମା ତ ନୁହେଁ ଆୟ । ତମର ଦରମା ବାହାରେ କ'ଣ କିଛି ଆୟ ନାହିଁ ।' 'ପରିବାରର ଲୋକ ଛ'ଜଣ କୋଉଠୁ ଆଣିବି ଆଜ୍ଞା ?' ପଚାରିଲେ ଯୁବ ଅଡିଟର । 'କାହିଁକି ବାପା, ମା, ସ୍ତ୍ରୀ, ଦି ଭାଇ ଭଉଣୀ ଆଉ ଚାକର ଟୋକାକୁ ମିଶେଇଲେ ଛ' ସାତ ଜଣ ହୋଇଯିବେନି !' 'ବାପା ଆଜ୍ଞା ଗାଁରେ... କଥା ସରିବାକୁ ନ ଦେଇ ସପ୍ଲାଇବାବୁ କହିଲେ 'ଥାନ୍ତୁ ବାପା ଗାଁରେ କ'ଣ ହେଲା ସେଠୁ ?' 'ଆଜ୍ଞା ପିଲାଦିନୁ ବୋଉ ମରିଯାଇଛି । ମୁଁ ବି ଏଯାଏ ବାହା ହୋଇନି ।' 'ବାବୁ ଅଡିଟର ଚାକିରି କଲଣି । କେତେ ସତିଆ ଦେଖେଇ ହଉଚ କହିଲ ? ତା'ହେଲେ ତମ କାର୍ଡରେ ଗୋଟିଏ କିଲୋ ଚିନି ପାଇବ । ହବ ?'



Digitized by srujanika@gmail.com

ବାବାଜୀ ହୋଇଗଲା । ପୁରୁଣା ଜଗନ୍ନାଥ ସଡ଼କ କଡ଼ରେ ଛତିଆ ବଟ ନିକଟରେ ପିତାମ୍ବର ଏବେ ପାଉଁଶ ବିଭୂତି ବୋଳି ହୋଇ ବାବାଜୀ ହୋଇ ବସିଛି । ଲୋକ ଆସୁଛନ୍ତି । ମୁଣ୍ଡିଆ ମାରି ଆଶୀର୍ବାଦ ନେଉଛନ୍ତି । କିଛି ପଇସା ମଧ୍ୟ ଦର୍ଶନୀ ପାଇଁ ଦେଉଛନ୍ତି । ଚଲି ଯାଉଛି । ଆୟକର ବାଲା ସେଠାକୁ ଯିବାର ଅବକାଶ ହୋଇନାହିଁ ।

କିନ୍ତୁ ଯେଉଁ ତିରିଶଟି କାରିଗର ତା' ଦୋକାନରେ କାମ କରୁଥିଲେ ସେମାନେ କୋଉଠି କ'ଣ କରୁଛନ୍ତି ଜଣାନାହିଁ ।

(ତା୨୮.୧୨.୧୯୮୦ରିଖ)



# ମାଇ ପିଆଶାଳ ଓ ଅଣ୍ଡିରା ଇଞ୍ଜିନିୟର

ସେଦିନ ଗୋଟାଏ ବାହାଘର ଭୋଜିରେ ଜଣେ ଏକଜିକ୍ୟୁଟିଭ ଇଞ୍ଜିନିୟରଙ୍କ ସହିତ ଆଉ କେତେଜଣ ବସି ଗପ କରୁଥିଲୁ । ଇଂଜିନିୟର ଜଣକ ଦୁର୍ନୀତି କରନ୍ତି ନାହିଁ ବୋଲି ତାଂକର ବିଶେଷ ଖ୍ୟାତି ନାହିଁ । ଯୁଆଡେ ଗଲେ କାମ କରିବା କରାଇବା ତାଂକ ପକ୍ଷେ କଷ୍ଟ । ଅନେକ ରାଗରେ ତାଂକୁ ଚୋପାଛଡା ଇଞ୍ଜିନିୟର ବୋଲି କହନ୍ତି ।

ସେ ହାଉସିଂ ବୋର୍ଡରେ ଥିଲେ । ଏବେ ଆଉ କୁଆଡେ ଗଲେଣି । ସେହି ଇଞ୍ଜିନିୟରଙ୍କ ଉପସ୍ଥିତିରେ ଜଣେ କଣ୍ଟ୍ରାକ୍ଟର ବନ୍ଧୁ ଗୋଟିଏ ଉପାଖ୍ୟାନ ଆରମ୍ଭ କଲେ । କଥାଟି ଏମିତି ।

ହାଉସିଂ ବୋର୍ଡରେ ଜଣେ ଏକଜିକ୍ୟୁଟିଭ ଇଞ୍ଜିନିୟର ଥିଲେ । ହାଉସିଂ ବୋର୍ଡର ଗୋଟିଏ କଲୋନୀ ତିଆରି ହେଉଥିଲା । ଜଣେ କଣ୍ଟ୍ରାକ୍ଟର ସେ କଲୋନୀର କାମ ଧରିଥିଲେ ।

ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ଦିନେ କାମ ତଦାରଖ କରିବାକୁ ଗଲେ । ଦେଖିଲେ କଣ୍ଟ୍ରାକ୍ଟର ରାଜିନାମା ଅନୁସାରେ ପିଆଶାଳ କାଠ ଆଣିବା ପରିବର୍ତ୍ତେ ସବୁ ଅଜାତିଆ କାଠ କଟାଇ ଆଣି ଥାକ ମାରିଛନ୍ତି । ଇଞ୍ଜିନିୟର କଣ୍ଟ୍ରାକ୍ଟରଙ୍କୁ ଡକାଇ ପିଆଶାଳ କାଠ ଖୋଜିଲେ ।

କଣ୍ଟ୍ରାକ୍ଟର କହିଲେ ''ଆଜ୍ଞା ସାର ଏଗୁଡା ପିଆଶାଳ ଯେ ଆଜ୍ଞା' ।

ଇଞ୍ଜିନିୟର କହିଲେ ''ହଇଓ ତୁମଠାରୁ ମୁଁ କ'ଣ ପିଆଶାଳ କାଠ କିଏ ଚିହ୍ନିବା ଶିଖିବି ।''

''ନାଇ ସାର ଆପଣ ବୁଝନ୍ତୁ । ଏ ମାଇ ପିଆଶାଳ । ମୁଁ ଜଙ୍ଗଲରୁ ଚିହ୍ନଟକରି ଆଣିଛି । ଆମ ଜଙ୍ଗଲରୁ ପିଆଶାଳ ପ୍ରାୟ ସରିଆସିଲାଣି । ସମସ୍ତେ ପ୍ରାୟ ଏହି ମାଇ ପିଆଶାଳ ଆଣୁଛନ୍ତି ।'' ଉତ୍ତର ଦେଲେ କଣ୍ଟ୍ରାକ୍ଟର ।

ଇଞ୍ଜିନିୟର ଚେତାବନୀ ଦେଇ କଣ୍ଟ୍ରାକ୍ଟରଙ୍କୁ କହିଲେ ''ଏ ସବୁ, ମୁଁ ଥିବାଯାଏ ଏଠାରେ ମାଇ ପିଆଶାଳ ଚଳିବନି । ଅଣ୍ଡିରା ପିଆଶାଳ ଯୋଗାଡ କରିବାକୁ ପଡ଼ିବ ତମକୁ ।

ନଇଲେ ଏଠାକୁ ମାଇ ଏକଜିକ୍ୟୁଟିଭ ଇଞ୍ଜିନିୟର ଅଣାଇବାର ଯୋଗାଡ କର ।''

ମାଇ ପିଆଶାଳରେ କାମ ଚଳିଲା କି ନାହିଁ ଆଉ ଜଣାପଡ଼ିନାହିଁ । କିନ୍ତୁ ଅଣ୍ଡିରା ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ସେଠାରୁ ଅନ୍ୟତ୍ର ବଦଳି ହୋଇଗଲାଣି ।

କଣ୍ଟ୍ରାକ୍ଟରଙ୍କର ଉପର ମହଲରେ ଭଲହାତ ଅଛି ବୋଲି ଲୋକେ କୁହାବୋଲା ହେଉଛନ୍ତି ।

(ତା୧୮.୦୫.୧୯୮୨ରିଖ)





Digitized by srujanika@gmail.com

ବାଧ ହୋଇ ବୋଉକୁ ସ୍ୱର୍ଗରୁ ଫେରିବାକୁ ପଡ଼ିଲା । କଳ୍ପନାର ସ୍ତ୍ରୀ ଓ ଭାଇଭଉଣୀ ନୂଆ ହୋଇ ଜନ୍ମ ନେଲେ । ବାପା ତ ଗାଁରେ ଏକା ରୋଷେଇ କରି ଖାଉଥିଲେ । ତାଙ୍କ ନାଁରେ ଏଠାରେ ବି ଚାଉଳ ପଡ଼ିଲା । ଏବେ ଅଡିଟର ବାବୁ ପାଞ୍ଚ କିଲୋ ଚିନି, ପନ୍ଦର କିଲୋ ଗହମ, ସୁଜି ଦି କିଲୋ, କିରୋସିନି ପାଞ୍ଚ ଲିଟର ପାଉଛନ୍ତି । 'ଏ' କ୍ଲାସ କାର୍ଡରେ ଯାହା ମିଳିବା କଥା ।

(ତା୨୯.୦୯.୧୯୮୧ରିଖ)



# ଧାତୁବିଜ୍ଞାନୀଙ୍କ ଆଳୁଚାଷ

ଜଣେ ବିଶିଷ୍ଟ ଧାତୁବିଜ୍ଞାନୀଙ୍କର ଫୁଲବଗିଚା ଓ ରୋଷେଇ ବଗିଚା ଅର୍ଥାତ କିଚେନ ଗାର୍ଡନ ଅର୍ଥାତ ବାଡିପଟେ ପରିବାଚାଷ ପାଇଁ ବଡ ସଉକ । ନିଜର ଆନୁଷ୍ଠାନିକ ଦାୟୀତ୍ୱ ଯଥେଷ୍ଟ ବେଶୀ ଥିଲେ ମଧ ଦିନକୁ ଦି ତିନି ଘଣ୍ଟା ନିଶ୍ଚୟ ବଗିଚାରେ ସେ ଖଟିବେ ।

ଦିନେ କୌଣସି ଉପଲକ୍ଷରେ ସେ କଟକ ଯାଇଥିଲେ । କଟକରେ ଛତ୍ରବଜାରରୁ ସେ ବାଡି ବଗିଚାରେ ଆଳୁଚାଷ ପାଇଁ ବିହନ ଖୋଜିଲେ । ଛତ୍ରବଜାରରେ ତ ସବୁ ହୋଲ ସେଲ ରେଟ ଓ ନିହାତି କମ୍‌ରେ ୫ କିଲୋ କିଣିବାକୁ ହେବ । ଧାତୁବିଜ୍ଞାନୀ ରାସ୍ତାକଡରୁ ଖୋଲା ଆଳୁ ବିହନ ଦୁଇକିଲୋ ଦଶଟଙ୍କା ଦେଇ କିଣିଆଣିଲେ ।

ବାଡିରେ ଆଳୁଚାଷହେଲା । ଟ୍ୟାପରୁ ପାଣି ମଡେଇ ଦିଆଗଲା । ସାର ମଧ କିଛି କିଛି ଦିଆଗଲା । ହିଡ ଟେକାଯାଇ କୋଡାକୋଡ଼ି ମଧ ହେଲା । ଆଳୁଗଛ ମଧ ବେଶ ଝାମ୍ପୁଡା ଝାମ୍ପୁଡା ହେଲା, ମନେହେଲା ଭଲ ଫଳିବ ।

ଦିନେ ମୁଁ ଯାଇଥିଲି ଧାତୁ ବିଜ୍ଞାନୀଙ୍କ ଘରକୁ । ସେଦିନ ତାଙ୍କର ଆଳୁ ଖୋଳା ହୋଇ ଘରକୁ ଆସିଥାଏ । ଏକଦମ ଗୁଣ୍ଡି ଗୁଣ୍ଡି ଆଳୁ ଗୁଡିଏ । ବରକୋଳି ସାଇଜର ଏବଂ ତା'ଠାରୁ ସାନ ।

ଓଜନ କରାଗଲା । ଦୁଇକିଲୋ ଆଳୁ ହେଲା । ଧାତୁ ବିଜ୍ଞାନୀଙ୍କ ଗୃହୀଣୀ କହିଲେ ଯା ହେଉ ଦି କିଲୋ ବିହନ ଲାଗିଥିଲା । 'ଅନ୍ତତଃ ଦି କିଲୋ ତ ଫଳିଛି ।'

'ମୁଁ ପଚାରିଲି ଆଳୁ କିଲୋ ଦର ଏବେ କ'ଣ ହୋଇଛି ?'

ଘରର ଚାକରଟି ଉତ୍ତର ଦେଲା 'ଆଜ୍ଞା ଟଙ୍କାଏ ଚାଳିଶ ପଇସା ।'

ବିହନ ଦାମ ଦଶଟଙ୍କା ହେଲା କ'ଣହେଲା । ଦୁଇକିଲୋ ବିହନକୁ ଦୁଇକିଲୋ ଫସଲ ଆମଦାନୀ ତ ହେଲା । ତା ପରେ ଇଏତ ଧାତୁ ବିଜ୍ଞାନୀ । ଇଏ ଯଦି କୃଷି ବିଶାରଦ ହୋଇଥାନ୍ତେ ତା' ହେଲେ ବା ଦୋଷ ଧରାଯାଆନ୍ତା ।

ମନେପଡିଲା ଯେ ଆମ ଏଠାରେ ଭେଟରିନାରି ଡିପାର୍ଟମେଣ୍ଟରେ ଯେଉଁ କୁକୁଡା ଆଉ ଅଣ୍ଡା ଚାଷ ହୁଏ ସେଥିରେ ଜୀଅନ୍ତା କୁକୁଡା କିଲୋ ୧୨ଟଙ୍କାରେ ବିକ୍ରୀ ହୁଏ, କିନ୍ତୁ ଖର୍ଚ୍ଚହୁଏ ଅନ୍ତତଃ ୫୦ ଟଙ୍କା । ସେହିପରି ଅଣ୍ଡା ଗୋଟାକର ଉତ୍ପାଦନ ଖର୍ଚ୍ଚ ଅନ୍ତତଃ ପକ୍ଷେ ତିନିଟଙ୍କା ।

ଗୁଣ୍ଡିଆଳୁ କିଲୋ ବଜାରରେ ଟଙ୍କାଏରୁ ବେଶୀ ହେବ ନାହିଁ । ତଥାପି ଧାତୁବିଜ୍ଞାନୀ କୃଷି କ୍ଷେତ୍ରରେ ପ୍ରବେଶ କରି ବିହନ ଓଜନର ଆଳୁ ଫଳେଇ ପାରିଛନ୍ତି ତ । ଗତ ବର୍ଷ ରାଜ୍ୟର କୃଷି ବିଭାଗ ବହୁ ଅଞ୍ଚଳରେ ଚିନାବାଦାମ ବିହନ ଚାଷୀମାନଙ୍କୁ ଦେଇଥିଲେ । ଖୋଳିଲାବେଳକୁ ଚିନାବାଦାମ କାହିଁ ?

(ତା୨୮.୦୪.୧୯୮୩ରିଖ)





Digitized by srujanika@gmail.com

# ଆୟକର ଦାଉରେ ଦରଜୀ ବାବାଜୀ ହେଲା

ଆପଣ ହସିପାରନ୍ତି ମୁଁ ଯାହା କହିବାକୁ ଯାଉଛି ପଢି । ଆପଣ ଦୁଃଖିତ ବି ହୋଇପାରନ୍ତି । ହୁଏତ ବିଶ୍ୱାସ ବି କରି ନପାରନ୍ତି । କିନ୍ତୁ କଥାଟା ସତ୍ୟ ।

ଜଣେ ଦରଜୀ ଥିଲା । ନାମ ପିତାମ୍ବର । ସେ ଦୁଇ ଚାରିଟି ସିଲେଇ ମେସିନ୍ ପକାଇ ଦରଜୀ କାମ କରୁଥିଲା । ବଡ଼ ଲୋକ ହୋଇ ନଥିଲା । ତା ଦୋକାନରେ ଯେଉଁ କାରିଗରମାନେ କାମ କରୁଥିଲେ ସେମାନଙ୍କୁ ତାଙ୍କ ମଜୁରୀ ଦେଉଥିଲା । ସିଲେଇ ମେସିନ୍ ପାଇଁ ଯେଉଁ ଧାରକରଜ କରିଥିଲା ତା'କୁ ମଧ୍ୟ ଅଳ୍ପ ଅଳ୍ପ ଶୁଝୁଥିଲା । ତା ବାଦେ ଯାହା ବଳୁଥିଲା ସେଥିରେ ନିଜର ପରିବାର ପୋଷଣ କରୁଥିଲା । କୌଣସି ମତେ ନିଜର ଗୁଜରାଣ ଚଳେଇବା ତା'ର ମୁଖ୍ୟ କାମ ଥିଲା ।

ଜଣେ ପୋଲିସ ଅଫିସର ପିତାମ୍ବର ପାଖରେ ନିଜ ପରିବାରର ଲୁଗାପଟା ସିଲେଇ କରିବାକୁ ଆଣୁଥିଲେ । ଦିନେ କ'ଣ ତାଙ୍କ ମନକୁ ଆସିଲା, ପିତାମ୍ବରକୁ କହିଲେ ଯେ ସେ କାହିଁକି ପୋଲିସ ବିଭାଗର ପୋଷାକ ସିଲେଇ ଅର୍ଡର ନେଉନାହିଁ । ପିତାମ୍ବର କହିଲା ଯେ ପୋଲିସ ବିଭାଗରୁ ସେ ବା କେମିତି ଅର୍ଡର ପାଇବ ? ତା' ଛଡା ପୋଲିସ ବିଭାଗ ଟେଣ୍ଡର ମଗାନ୍ତି ପୋଷାକ ସିଲେଇ କରିବାକୁ । ସେ ଟେଣ୍ଡର ଯେଉଁମାନେ ଦିଅନ୍ତି ସେମାନେ ବହୁତ କମ୍ ଦରରେ କୋଟେସନ ଦିଅନ୍ତି । ଏକାବେଳକେ କମ୍ ଦିନ ଭିତରେ ସବୁ ପୋଷାକ ସିଲେଇ କରି ଦେଇସାରିଲେ ଯାଇଁ ବିଲ୍ ହେବ ଏବଂ ସେ ତା'ର ପଇସା ପାଇବ । ପିତାମ୍ବର ନିଜ କାରିଗରମାନଙ୍କୁ କେଉଁଠୁ ଆଣି ଚଳାଇବ ଏତେ ଦିନ । ଏକାବେଳକେ ଏତେ ପୋଷାକ ସିଲେଇ କରିବାକୁ ବହୁତ ଗୁଡ଼ାଏ ମେସିନ୍ ମଧ୍ୟ ଦରକାର ।

ସେ ଯା' ହେଉ, ପୋଲିସ ଅଫିସରଙ୍କ ପ୍ରେରଣା ନେଇ ପିତାମ୍ବର ଟେଣ୍ଡର ଦେଇ ସର୍ବନିମ୍ନ ଦରରେ ପୋଷାକ ସିଲେଇ ପାଇଁ ଅର୍ଡର ପାଇଲା । ଅର୍ଡର ଦେଖାଇ ସିଲେଇ ମେସିନ୍ କିଣିବାପାଇଁ ବ୍ୟାଙ୍କରୁ ଟଙ୍କା କରଜ ନେଲା । ପ୍ରାୟ କୋଡିଏଟି ମେସିନ୍‌ରେ ଧମାଧମ କାମ ଚାଲିଲା ।

ପିତାମ୍ବର ଦୋକାନ ରାସ୍ତାରେ ଦିନେ ଜଣେ ଆୟକର ଇନ୍ସପେକ୍ଟର ଯାଉଥିଲେ । ତାଙ୍କ ଆଖି କେମିତି କେଜାଣି ସେ ଦୋକାନ ଭିତରକୁ ପଡ଼ିଲା । କିନ୍ତୁ ପରେ ଜଣାପଡିଲା ଯେ ଯେଉଁମାନେ ବ୍ୟବସାୟ ସୂତ୍ରରେ ନିଜର ସିଲେଇ ଦୋକାନ ନଥାଇ ପୋଲିସ ପୋଷାକ ଟେଣ୍ଡର ପାଉଥିଲେ ସେମାନେ ଏଥର ଅର୍ଡର ନପାଇ ଇନ୍‌କମ୍ ଟିକସବାଲାଙ୍କୁ ପିତାମ୍ବର ପଛରେ ଲଗାଇ ଦେଲେ ।

ଆୟକର ଇନ୍ସପେକ୍ଟର ଆସିଲା ବେଳେ ପିତାମ୍ବର ଦୋକାନରେ ନଥିଲା । ଆୟକର ବାବୁ କାରିଗର ମାନଙ୍କୁ ସବୁ ପଚରା ଉଚରା କଲେ । ଗୋଟାଏ ମେସିନ୍‌ରେ କେତେଟା ପୋଷାକ ଦିନକୁ ସିଲେଇ ହୁଏ । କୋଡିଏଟାରେ କେତେ ପୋଷାକ / ପୋଷାକ ଗୋଟାଏ ସିଲେଇ କଲେ କେତେ ଲାଭ ଏବଂ ସବୁ ପୋଷାକରେ କେତେ ଲାଭ ? ଏ ସବୁ ହିସାବ କଲାବେଳକୁ ପିତାମ୍ବର ଉପରେ ବାର ହଜାର ଟଙ୍କାର ଆୟକର ଧାର୍ଯ୍ୟ ହୋଇ ନୋଟିସ୍ ଆସିଲା ।

ଗରିବ ଦରଜୀ ମୁଣ୍ଡରେ ଚଡକ ପଡ଼ିଲା । ସେ ପୋଷାକ ସିଲେଇ ଛାଡ଼ି ଆୟକର ଅଫିସକୁ ଦଉଡିଲା । ଯେତେ ବୁଝାଇଲା ସେ ସରକାର ଯେଉଁ ଲାଭର ହିସାବ ବାଢିଛନ୍ତି ତାହା ଭୁଲ । କିନ୍ତୁ କେହି ଶୁଣିଲେନି । ସେ ଆୟକର ଫାଙ୍କୁଛି ବୋଲି ଅଭିଯୋଗ ହେଲା ।

ଶେଷରେ ଆଉ ଉପାୟ ନପାଇ ବିରକ୍ତିରେ ମେସିନ୍ ସବୁ ବିକି ଦୋକାନ ଭାଙ୍ଗି ଦେଇ ପିତାମ୍ବର



Digitized by srujanika@gmail.com

# ସେ ଗୋବର- ଗଣେଶ ଆଉ ନାହାଁନ୍ତି

ଆମ ପିଲାଦିନେ ଗଣେଶ ପୂଜା ଅଲଗା ରକମର ଥିଲା । ଗଣେଶ ଥିଲେ ବଡ଼ । ଆଉ ସବୁ କଥା କେବଳ ତାଙ୍କରି ପାଇଁ । ଯେତେବେଳେ ବେଶୀ ଛୋଟ ପିଲା ହୋଇଥିଲି (ଅନ୍ୟମାନଙ୍କ ପାଇଁ ମଧ ପ୍ରାୟ ସେହି ଏକା କଥା ହେଉଥିଲା) ଗଣେଶ ପୂଜା ଦିନ ସକାଳ ହେବା ପୂର୍ବରୁ ବେଶ ଅନ୍ଧାର ଥିଲାବେଳୁ ମତେ ମୋ ସା'ନ୍ତ ମା ନିଦରୁ ଉଠାଇ ଦାନ୍ତ ଘଷେଇ ଚୂଡ଼ାଦହି କିମ୍ବା ପଖାଳ ଖୁଆଉଥିଲା । କାରଣ ପୂଜା ଶେଷ ହୋଇ ପ୍ରସାଦ ନ ପାଇଲା ପର୍ଯ୍ୟନ୍ତ ପାଠ ପଢୁଥିବା ପିଲାମାନେ କିଛି ଖାଇବା କଥା ନୁହେଁ । ଦିନ ୨ଟା, ୩ଟା କିମ୍ବା ଦିନେ ଦିନେ ଡେରି ହେଲେ ଚାରିଟା ବାଜିଲା ପର୍ଯ୍ୟନ୍ତ ଆମେ ଛାତ୍ରମାନେ କିଛି ଖାଉନଥିଲୁ । ଭୋକ ହେଉ ନଥିଲା ନୁହେଁ । କିନ୍ତୁ ପୂଜା କରି 'ଓଁ ନମଃ ଗଣେଶଃ ବିଘ୍ନେଶ, ଗିରିଜା ନନ୍ଦନ ପ୍ରଭୁ' ଆବୃତ୍ତି କରି ନଡ଼ିଆଟିଏ ଶିଳୁପଚା ଉପରେ ପିଟି ପୁଷ୍ପାଞ୍ଜଳି ନଦେଲେ ମନ ପୂରୁନଥିଲା । ସେତେବେଳେ କେବଳ ଛାତ୍ରମାନେ ଓ ଅନେକ ନିଷ୍ଠାପର ଶିକ୍ଷକମାନେ ମଧ ପୁଷ୍ପାଞ୍ଜଳି ଦେଲା ପର୍ଯ୍ୟନ୍ତ ଉପାସ ରହୁଥିଲେ । କେବଳ ସ୍କୁଲ ଓ କଲେଜ ମାନଙ୍କରେ ଗଣେଶ ପୂଜା ହେଉଥିଲା ।

ଏବେ କିନ୍ତୁ ଗଣେଶ ପୂଜା ଷ୍ଟାଇଲ ଅଲଗା ହୋଇଗଲାଣି । ଛାତ୍ରମାନେ ଅବଶ୍ୟ ସ୍କୁଲ କଲେଜରେ ଚାନ୍ଦା ଦେଉଛନ୍ତି । କିନ୍ତ ଅସଲ ପୂଜା ସାଜସଜ୍ଜା, ଗାଆଣବାଜଣା ସହିତ ରାସ୍ତା ଉପରେ ହେଉଛି । ଛାତ୍ର ଓ ଅଣଛାତ୍ର ଯୁବକମାନେ ବିଶେଷ କରି ସହରମାନଙ୍କରେ ଦୋକାନ ବଜାର ସାହି ବସ୍ତିରୁ ବେଶ ଚାନ୍ଦା ଉଠାଇ ଜାକଜମକରେ ପୂଜା ପେଣ୍ଡାଲ ତିଆରି କରି ରଙ୍ଗୀନ କନାରେ 'ଡେକୋରେଟର'କୁ ପଇସା ଦେଇ ଗଣେଶ ସ୍ଥାପନା କରୁଛନ୍ତି । ଆଗପରି ଗଣେଶ ପୂଜା ପରଦିନ ବିସର୍ଜନ ହେଉନାହାନ୍ତି । ଆସକ୍ତ ଭକ୍ତମାନେ ୩ ଦିନରୁ ୭ ଦିନ ପର୍ଯ୍ୟନ୍ତ ଗଣେଶଙ୍କୁ ବସାଇ ଦିନସାରା ହିନ୍ଦି ଓ ଓଡ଼ିଆ ଆଧୁନିକ ଗୀତ ମାଇକ ବଜାଇ ଶୁଣାଉଛନ୍ତି । ସନ୍ଧ୍ୟାବେଳେ ପୂଜା ପେଣ୍ଡାଲ ପାଖରେ ଆସର ଜମୁଛି । କେଉଁଠି 'ମେଲୋଡି' ହେଉଛି ରାତି ଦୁଇଟା ଯାଏ । କିମ୍ବା ମାଗଣା ସିନେମା ସୋ ମଧ ।

ଆମ ପିଲାବେଳେ ଗଣେଶ ପେଟୁଆ ହୋଇ ଗୋଟାଏ ମୂଷା ଉପରେ ବସୁଥିଲେ । ଖସାଲଡୁ ମୁଖ୍ୟ ପୂଜା ଭୋଗ ଥିଲା । ଏବେକାର ଗଣେଶ ଘୋଡ଼ା ଉପରେ ବସି ତରବାରୀ ଧରି ଲଢ଼ାଇରେ ବ୍ୟାପୃତ । ଆଉ କେଉଁଠି ଦୁଇକଡ଼ରେ ଦୁଇଜଣ କମନୀୟା ରମଣୀ । ପୁଣି ଦେଖିବେ ଗଣେଶଙ୍କୁ କାଖେଇ ଜଣେ କିଏ ସ୍ତ୍ରୀ ଲୋକ ଠିଆ ହୋଇଛନ୍ତି । କେତେ ରକମ ଭଙ୍ଗୀ ଆଉ ଠାଣିରେ ଗଣେଶ ଏବେ ଉଭା ହେଉଛନ୍ତି । ତାଙ୍କର ହାତୀ ଶୁଣ୍ଢ ନଥିଲେ ସେ ଗଣେଶ ବୋଲି ଚିହ୍ନିବା କଷ୍ଟକର ହୁଅନ୍ତା ।

ଆଉ ବର୍ଷେ ଦିବର୍ଷ ପରେ ଯଦି ଆପଣ ଦେଖିବେ ଯେ ଗଣେଶ ମଟର ସାଇକେଲ କିମ୍ବା ସ୍କୁଟରରେ ବସି କାନ୍ଧରେ ବନ୍ଧୁକ ପକେଇ ଛୁଟିଛନ୍ତି ଓ ପଛରେ ସାଲଓ୍ୱାର ପିନ୍ଧା ବାଳିକା ବନ୍ଧୁ, ତେବେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିମ୍ବା ଦେଖିବେ ଗଣେଶ ଡାଏଟିଂ କରି କିମ୍ବା ବୁଲଓ୍ୱାର୍କରେ ଏକ୍ସର ସାଇଜ କରି ପେଟ କମାଇ ଅମିତାଭ ବଚନ କିମ୍ବା ରାଜବବ୍‌ରପରି ସ୍ଲିମ ହୋଇ ଯାଇଛନ୍ତି । ହାତୀ ଖୋଜ ପ୍ୟାଣ୍ଟ କିମ୍ବା ଜିନ ଜନ୍‌ସନ ପ୍ୟାଣ୍ଟ ପିନ୍ଧି କମରରେ ଚଉଡା ବେଲ୍‌ଟ ଭିଡ଼ି ଅଣ୍ଟାରେ ପିସ୍ତଲ ଗେଞ୍ଜି ଘୋଡା ଉପରେ ବସିଛନ୍ତି, ମୁଣ୍ଡର ଲମ୍ବା ବାଳରେ କାନ ଢ଼ାଙ୍କି ହୋଇ ଯାଇଛି ।

ଗଣେଶ କିଏ ଦେବତା ଥିଲେ କି ନାହିଁ ଜଣାନାହିଁ । ସେ ଏତେ ପାଠପଢୁଆ ହେଲେ କେମିତି ? କିଏ ଦେଖିଛି ? ତେଣୁ ଆମ ମନର କଳ୍ପନା ଅନୁସାରେ ଆଜିକାଲିକା ସମୟକୁ ଯଚେଇଲାଭଳି ଚେହେରା,



Digitized by srujanika@gmail.com

ପୋଷାକ ନକରି ବାହାରିଲେ କିଏ କାହିଁକି ପଚାରିବ ? ଆଜିକାଲିକା ଗଣେଶ କଣ ସେହି ପୁରୁଣାକାଳିଆ ହାତୀ ଶୁଣ୍ଢ ଲଗେଇ ବାହାରିବାକୁ ବାଧ ? ଏବକା ରୁଲ ଅନୁସାରେ ବହୁତ କଥା ବଦଳି ଗଲାଣି । ଗଣେଶ କୋଉଠୁ ଆଉଲେକି ?

(ତା୧୦.୦୯.୧୯୮୧ରିଖ)



# କୁବେର ଭଣ୍ଡାର ପାଉଣା

କୁବେର ହିନ୍ଦୁ ମତରେ ଅର୍ଥ ଭଣ୍ଡାରର ସର୍ବୋଚ୍ଚ କର୍ତ୍ତା । ଏହି ଅର୍ଥ ଦେବତାଙ୍କୁ ଯେଉଁମାନେ ପୂଜାକରନ୍ତି ନାହିଁ କିମ୍ବା ଅବହେଳା କରନ୍ତି କିମ୍ବା ଅସମ୍ମାନ ପ୍ରଦର୍ଶନ କରନ୍ତି ସେମାନେ ଜୀବନ ସାରା ଦାରିଦ୍ର୍ୟର ଅଖା ଧୋଉଥାନ୍ତି ।

ଆଧୁନିକ ଭାରତରେ କୁବେରଙ୍କର ବିଭିନ୍ନ ସରକାରୀ ପଦବୀରେ ମୁକରିର ହେବାର ବ୍ୟବସ୍ଥା ରହିଛି । ଦିଲ୍ଲୀର ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆର ମୁଖ୍ୟ କାର୍ଯ୍ୟାଳୟର ମୁଖ୍ୟ ଦରଜାରେ କୁବେର ଏବଂ କୁବେର ପତ୍ନୀଙ୍କର (ଯାହାଙ୍କୁ ଓଡ଼ିଆରେ ଆମେ ଯଖ ଯକ୍ଷୁଣୀ କହିବା) ବିରାଟ ପଥର ମୂର୍ତ୍ତି ଠିଆ ହୋଇଛନ୍ତି । ରିଜର୍ଭ ବ୍ୟାଙ୍କର ଗଭର୍ଣ୍ଣରଙ୍କ ଠାରୁ ଆରମ୍ଭ କରି ଛୋଟ ସବ୍‌ଟ୍ରେଜେରୀ ଅଫିସର କିରାଣୀ ପର୍ଯ୍ୟନ୍ତ ଏକ କୁବେର କ୍ୟାଡରରହିଛି । ଯେପରି ଆଇ.ଏ.ଏସ., ଆଇ.ପି.ଏସ., ଓ.ଏ.ଏସ. ଇତ୍ୟାଦି । ସରକାରୀ ଟ୍ରେଜେରୀରେ ସରକାରଙ୍କର ପଇସା ଦାଖଲ ହୁଏ । ସରକାରଙ୍କଠାରୁ ପଇସା ପାଇବା ପାଇଁ ସବୁ ବିଭାଗର ସବୁ ସ୍ତରରେ ପଇସା ଖର୍ଚ୍ଚ କରିବାକୁ ହୁଏ ବୋଲି କୁହାଯାଏ । କିନ୍ତୁ ସରକାରଙ୍କୁ ପଇସା ଦେବାକୁ ହେଲେ ମଧ୍ୟ କୁବେର ଭଣ୍ଡାରର ରକ୍ଷକମାନଙ୍କୁ ତୁଷ୍ଟ ନକଲେ ଯେ ସରକାରଙ୍କର ପାଉଣା ପଇଠ କରି ହେବନାହିଁ ଏକଥା ସର୍ବବିଦିତ । ଟ୍ରେଜେରୀରେ ପଇସା ନଦେଇ କାମ କରାଇ ଆଣିବାର ପନ୍ଥା କେହି ଅଛି ବୋଲି ମନେ ହୁଏନା ।

ଯେକୌଣସି ସରକାରୀ ଅଫିସର କର୍ମଚାରୀଙ୍କ ଦରମା ପାଇବାକୁ ହେଲେ ଟ୍ରେଜେରୀ ପାଉଣା ବିନା ତାହା ସମ୍ଭବ ନୁହେଁ । ଟ୍ରେଜେରୀଟି ସାଧାରଣତଃ ଜିଲ୍ଲା ସ୍ତରରେ ଜିଲ୍ଲା ମାଜିଷ୍ଟ୍ରେଟ ଓ ସବ୍‌ଡିଭିଜନ ସ୍ତରରେ ଏସଡିଓଙ୍କ ଅଧୀନରେ କାମ କରେ । କିନ୍ତୁ ଏମାନଙ୍କ ଦରମା କିମ୍ବା ଗସ୍ତଖର୍ଚ୍ଚ ମଧ୍ୟ ଟ୍ରେଜେରୀ ପାଉଣା ନଦେଲେ ମିଳେନାହିଁ ବୋଲି କୁହାଯାଏ ।

ଟ୍ରେଜେରୀରେ ପଇସା ଦାଖଲ କରିବାକୁ ଟ୍ରେଜେରୀ ଚାଲାଣ ଫର୍ମଟିଏ ପାଇଁ ଅଧିକାଂଶ ସମୟରେ ପଇସା ଦେବାକୁ ହୁଏ । କୌଣସି ସରକାରୀ ଚେକ କିମ୍ବା ଡ୍ରାଫ୍‌ଟ ଯଦି ଟ୍ରେଜେରୀ ପାସ୍ ପାଇଁ ଯାଏ ତେବେ ସଂପୃକ୍ତ ପକ୍ଷ ଟ୍ରେଜେରୀ ପାଉଣା ନଦେଲେ ବିଭିନ୍ନ କିସମର ଅବଜେକସନ କରି ତାହା ବାରମ୍ବାର ଫେରସ୍ତ କରିଦିଆଯାଏ । ଯେପର୍ଯ୍ୟନ୍ତ ପାଉଣା ନମିଳିଛି ସେ ପର୍ଯ୍ୟନ୍ତ ଦଉଡିବାକୁ ପଡ଼େ ।

ଏହି ବ୍ୟବସ୍ଥାକୁ ଟ୍ରେଜେରୀ ଅଫିସର କିମ୍ବା ଟ୍ରେଜେରୀ ଡାଇରେକ୍ଟର କିମ୍ବା ଅର୍ଥ ବିଭାଗ ସେକ୍ରେଟାରୀ କିମ୍ବା ଅର୍ଥ ବିଭାଗ ମନ୍ତ୍ରୀ କେହି ବଦଳାଇବା ସମ୍ଭବ ହେଉନାହିଁ । ଏମାନେ ସମସ୍ତ ନିଜ ପାଉଣା ସରକାରଙ୍କୁ ଦେଲାବେଳେ କିମ୍ବା ସରକାରଙ୍କଠାରୁନିଜ ପାଉଣା ପାଇଲା ବେଳେ କୁବେର ଭଣ୍ଡାର ରକ୍ଷକମାନଙ୍କୁ ପାଉଣା ନଦେଇ କାମ ହାସଲ କରିବା କଷ୍ଟକର ।

ସମସ୍ତେ ଜାଣନ୍ତି କିନ୍ତୁ ଉପାୟ କ'ଣ ?

(ତା୧୪.୦୬.୧୯୮୩ରିଖ)





Digitized by srujanika@gmail.com

# ସାହେବ, ବିବି ଓ ଗୋଲାମ

ମହାନଗରୀ ବମ୍ବେ । ନବ ବର୍ଷର ସଂଧ୍ୟା । ମୋର ଜଣେ ସମ୍ପର୍କୀୟ ନିମନ୍ତ୍ରଣ କଲେ ସାନ୍ଧ୍ୟ ଭୋଜନ ପାଇଁ । ସମ୍ପର୍କୀୟଙ୍କ ପତ୍ନୀ, ଝିଅ ଓ ମତେ ମିଶାଇ ଚାରିଜଣ । ଆମେ ଯୋଉ ଟେବୁଲରେ ବସିଥିଲୁ, କିଛି ସମୟ ପରେ ଜଣେ ସୁଦୃଶ୍ୟ ଯୁବକ ଆସି ଏକ ପଡୋଶୀ ଟେବୁଲରେ ବସିଲେ । ସାଙ୍ଗରେ ସୁନ୍ଦରୀ ଯୁବତୀ । ନିଶ୍ଚୟ ପତ୍ନୀ ହେବେ । ହାବଭାବରୁ ଜଣାପଡୁଥିଲା ।

ନବ ବିବାହିତ ଦମ୍ପତି । ଯୁବକ ଜଣକ ଡେଙ୍ଗା । ଛଡିଭଳି ଚେହେରା । ମିଲିଟାରୀ ଢ଼ାଞ୍ଚାର ଛୋଟ ବାଳ ଓ ଲମ୍ବା ନିଶ । ପତ୍ନୀ ସୁନ୍ଦରୀ ଯଦିଓ ଯୁବକଙ୍କ ଠାରୁ ଅପେକ୍ଷାକୃତ ରଚିଶୀଳା । ବେଶପାଟି ଆଧୁନିକ ତଥାପି ଭଲଗାର ନୁହେଁ । ମଥାରେ ଓ ସିନ୍ଥାରେ ସିନ୍ଦୁର । ଜଣା ଯାଉଥିଲା ଉତ୍ତର ଭାରତରୁ ବିବାହ ପରେ ନୂଆ କରି ବମ୍ବେରେ ପହଞ୍ଚିଛନ୍ତି । ବମ୍ବେର ବେପରୁଆ କେଆର ଫ୍ରି ଛାପ ମୁହଁରେ କିମ୍ବା ଚାଲିଚଳନରେ ଏପର୍ଯ୍ୟନ୍ତ ଆସିନହିଁ ।

ଆମେ ସୁପ୍ ଖାଉଥିଲୁ । ଯୁବକ ନିଜ ପାଇଁ ହୁଇସ୍କି ସୋଡା ମଗାଇଲେ । ପତ୍ନୀଙ୍କ ପାଇଁ ଯେତେବେଳେ କଣ ଡ୍ରିଙ୍କ ମଗାଇଲେ ପତ୍ନୀ କୁଣ୍ଠିତ ଭାବରେ ତାଙ୍କୁ କହୁଥିଲେ ନ ମଗାଇବାକୁ । ଆମେ ସବୁକଥା ସେମାନଙ୍କର ସ୍ପଷ୍ଟ ଶୁଣିପାରୁନଥିଲେ ବି ମୁହଁର ଭାବ ଭଙ୍ଗୀରୁ ଜଣାପଡୁଥିଲା ଯେ ଯୁବତୀ ଜଣକ ସୁରାପାନ ପାଇଁ ଆଗ୍ରହୀ ନୁହଁନ୍ତି । ଯୁବକ ଜଣକ କହିଲେ 'ଅନ୍ତତଃ ମୋ ପାଇଁ । ପ୍ଲିଜ... ।' ପତ୍ନୀ ନବ ବିବାହିତ ସ୍ୱାମୀଙ୍କ ପାଇଁ କୁଣ୍ଠାର ସହିତ କହିଲେ 'ହଉ ତେବେ...'

ପତ୍ନୀଙ୍କ ପାଇଁ ଆସିଲା ଜିନ୍ ଓ ଲାଇମ୍ କର୍ଡିଆଲ । କୁଣ୍ଠିତ ହସ୍ତରେ ସ୍ୱାମୀଙ୍କ ଆଡକୁ ସ୍ନେହ ଭରା ଅଭିମାନ ଚାହାଣୀ ନିକ୍ଷେପି ନବପରିଣିତା କମ୍ପିତ ଅଧର ଆଡକୁ ସୁରାର ଗ୍ଲାସ ଧୀର ଗତିରେ ବଢ଼ାଉଥିଲେ । ସ୍ୱାମୀ ଉତ୍ସାହିତ କରି କହୁଥିଲେ , 'ଭଲ ଲାଗିବ, ନିଅ ।' ହୁଇସ୍କିର ପୁରୁଷ ଓ ଜିନର ରମଣୀ ପରସ୍ପର ପ୍ରତି ନବବର୍ଷର ଶୁଭେଚ୍ଛା ଜ୍ଞାପନ କରି ଗ୍ଲାସ ଦୁଇଟିକୁ ସ୍ୱାଭାବିକ ଠାଣୀରେ ଛୁଇଁଲେ ।

ଆମେ ଏ ଦୃଶ୍ୟ ଉପଭୋଗ କରୁଥାଉ । ଆମ ଟେବୁଲରେ ସେମାନେ ଆଲୋଚନାର ବିଷୟବସ୍ତୁ ।

ଅନେକ ସମୟ ପର୍ଯ୍ୟନ୍ତ ନବ ପରିଣୀତା ଜିନ୍‌ର ଗ୍ଲାସକୁ ଅଧରର ଦ୍ୱିତୀୟ ସ୍ପର୍ଶ ଦେଲେ ନାହିଁ । ବରଂ ସୁରା ସହଯୋଗୀ ପାମ୍ପଡ ଓ ପକୋଡି ଗୁଡାକୁ ଅଯାଚିତ ଭାବରେ ଖାଇବାରେ ଲାଗିଲେ । ସ୍ୱାମୀଙ୍କ ମୁହଁରେ ଓ ଆଖିରେ ଅନୁରୋଧ ପିଅ । ତୁମେ ଉପଭୋଗ କରିବ ପିଇଲା ପରେ... । ସୁନ୍ଦରୀ ତରୁଣୀ ସ୍ୱାମୀଙ୍କ ଆଖିରେ ଆଖି ମିଳାଇ ହସିଲେ । ସ୍ୱାମୀ ହସରେ ଉତ୍ତର ଦେଲେ । ତରୁଣୀ ଏଥର ଗ୍ଲାସରେ ଅଧରର ଚାପ ଦେଲେ ଓ ବଡ଼ ଢ଼ୋକଟାଏ ନେଲେ । ଗଳାରେ ଗୋଟାଏ ଚମକ ଦେଇ ସୁରାର ସରଣୀ ଭିତରକୁ ଚାଲିଗଲା । ତରୁଣୀ ହସିଲେ ପୁଣି । ସ୍ୱାମୀ ପୁଣି ହସରେ ଉତ୍ତର ଦେଲେ । ଗ୍ଲାସ ଥୋଇଲେ ପତ୍ନୀ । ଗ୍ଲାସରେ ଲିପଷ୍ଟିକ୍‌ର ଦାଗ ସୁସ୍ପଷ୍ଟ । କ୍ରମେ ତରୁଣୀଙ୍କର ପିଇବା ସହଜ ହୋଇଗଲା । ଶ୍ଳଥ ଅବସ୍ଥାର ସହଜଭଙ୍ଗୀ କ୍ରମେ ସ୍ୱାଭାବିକତାକୁ ସ୍ପର୍ଶକଲା । ମନର ବାଡ ଡେଇଁ ସୁରାର ସୌଜନ୍ୟ କ୍ଷିପ୍ରଗତିରେ ଧାଇଁଲା । ପ୍ରଥମ ଗ୍ଲାସ ସରିଗଲା । ସ୍ୱାମୀ ଦ୍ୱିତୀୟ ଗ୍ଲାସ ପାଇଁ ଅର୍ଡର ଦେଲେ ୱେଟରକୁ । ପତ୍ନୀ ବାରଣ କରୁଥିଲେ । ସ୍ୱାମୀ ଜୋର ଦେଲେ 'ଆଜି ମନା କରନା । ଉପଭୋଗ କର ।



Digitized by srujanika@gmail.com

ଅନ୍ତତଃ ମୋ ପାଇଁ ପ୍ଲିଜ ।' ପତ୍ନୀ ଓଠ କଡ଼ରେ ମୋନାଲିସା ହସରୁ ସାମାନ୍ୟ ଅଧିକ ହସି ଆଖିର ଭ୍ରୂରୁରେ ସମ୍ମତି ଜଣାଇଲେ । ଦ୍ୱିତୀୟ ଗ୍ଲାସ ଶେଷ ହେଲା ବେଳକୁ ଜୀବନ ଦୁହିଁଙ୍କର ଜମି ଆସିଥିଲା । ଉଭୟ ସହଜ ସରଳ ଭାବରେ ଗପି ପାରୁଥିଲେ । ପ୍ରଥମ ଅବସ୍ଥାର ନୀରବ ଭାବଭଙ୍ଗୀ ଛାଡି ନବ ପରିଣୀତାଙ୍କର ସ୍ୱର ଆମକୁ ପୂରା ଶୁଭିବା ଆରମ୍ଭ ହୋଇଥିଲା । ସେ ଉପଭୋଗ କରିବା ଆରମ୍ଭ କରିଥିଲେ । ଗୋଟାଏ ବଡ଼ ପ୍ଲେଟରେ ଚିକେନ ପକୋଡ଼ା ଆସି ପହଞ୍ଚିଥିଲା । ତୃତୀୟ ଗ୍ଲାସ ହୁଇସ୍କି ଓ ଜିନ୍ ମଧ୍ୟରେ ବୁଝାମଣା ଆରମ୍ଭ ହେଉଥିଲା ।

(ତା୨୩.୦୧.୧୯୮୪ରିଖ)





Digitized by srujanika@gmail.com

# ନରେନ୍ଦ୍ରଙ୍କ ପାଲରେ ଅଚିନ୍ତ ଅଚେତନ

ଚରିତ୍ରଟି କାହାଣୀର ନାୟକ । ଏହା ସତ ନୁହେଁ କି କାହାଣୀ ନୁହେଁ । ଏହା କାହାଣୀ ଏବଂ ସତ । ଏମିତି କାହାଣୀ ଅଛି ଯାହାସବୁ ସତ । କିନ୍ତୁ ସବୁ କାହାଣୀ କଣ ସତ ?

ଠକ ନରେନ୍ଦ୍ର ବହୁ ତୁଠରେ ପାଣି ପିଇଛନ୍ତି । ବହୁ ଘାଟରେ ପାରି ହୋଇଛନ୍ତି । ଚାଟୁକାରିତାରେ ବଡ ଲୋକଙ୍କୁ ଦୁର୍ବଳ କରିବା କିମ୍ବା ସେମାନଙ୍କର ଅଜାଣତରେ ସେମାନଙ୍କ ଦୁର୍ବଳତାର ସୁଯୋଗ ନେବା କୌଶଳ ନରେନ୍ଦ୍ରଙ୍କୁ ବେଶ ଜଣା । ସେ ଏମ୍‌ଏଏଲ୍‌ଏଲ୍‌ବି ପାସ୍ କରିଛନ୍ତି ବୋଲି କହନ୍ତି । ହୋଇଥିବ କେଜାଣି । କିନ୍ତୁ ତାଙ୍କ ବିଶ୍ୱବିଦ୍ୟାଳୟ ଡିଗ୍ରୀ କେହି ଦେଖିଛନ୍ତି ବୋଲି ମନେ ହୁଏ ନାହିଁ ।

ଜଣେ ସରକାରୀ ଅଫିସରଙ୍କ କନ୍ୟାଙ୍କୁ ସେ କିପରି ଯୋଗାଡ କରି ବିବାହ କଲେ ସେ ସମ୍ପର୍କରେ ସତ ମିଛ କେତେ କଥା ତାଂକ ନିନ୍ଦୁକମାନେ କହନ୍ତି । ଗାଦୀରେ ନଥିବା ଜଣେ ବୁଢ଼ା ବିଚାରପତି ଯେ କି ବିଭିନ୍ନ ସମୟରେ ବିଭିନ୍ନ ଲୋକଙ୍କୁ ପରାମର୍ଶ ଦେଇଥାନ୍ତି ତାଙ୍କ ପାଖରେ ବି ଠକ ନରେନ୍ଦ୍ର କୁଆଡେ କିଛିଦିନ ଜୁଟିଥିଲେ । ପ୍ରକୃତ ଘଟଣା କ'ଣ କେହି କହି ପାରିବନି କିନ୍ତୁ ବୁଢ଼ା ପରାମର୍ଶଦାତା ସରକାରଙ୍କ କୋଉ କମିଟି ନା କମିଶନର ସଦସ୍ୟ ଥିଲାବେଳେ ଠକ ନରେନ୍ଦ୍ର ତାଙ୍କର ସହକାରୀ ଥିଲେ ବୋଲି ଦାବି କରନ୍ତି । ତାହାହିଁ ତାଂକର ବଡ ପାସ୍‌ପୋର୍ଟ, ଯେ କୌଣସି ଭଲ ଭଦ୍ରଲୋକଙ୍କ ପାଖରେ ବିଶ୍ୱାସ ଜନ୍ମାଇବାକୁ ।

ସାହିତ୍ୟ, ସଂସ୍କୃତି, ଆଲୋଚନା ଚକ୍ର, ସାମ୍ବାଦିକତା, ସାଂସ୍କୃତିକ ଅନୁଷ୍ଠାନ କରି 'ଉତ୍ସବ' ପାଳନ କରିବା ତାଂକର ଚତୁର ଟେକ୍‌ନିକ୍ ଜୀବିକା ପାଇଁ । ମଝିରେ ଏ କ୍ଷେତ୍ରରେ ସେ 'ସ୍ୱର୍ଗ' ପର୍ଯ୍ୟନ୍ତ ଉଠିଥିଲେ । ସେଥିରୁ ଖସି ବିଜ୍ଞାପନ ଏଜେନ୍‌ସି ଖୋଲିଲେ । ଓଡ଼ିଶାରେ ଗୁଡିଏ ଦୈନିକ ଖବରକାଗଜ ବିଜ୍ଞାପନ ଆତୁର ହୋଇ ବଡ ବିକଳିଆ ଅବସ୍ଥାରେ ଥାଆନ୍ତି । ତେଣୁ ବିଜ୍ଞାପନଦାତା ପ୍ରତିଷ୍ଠାନମାନଙ୍କ ପାଖରେ ଏହି ନରେନ୍ଦ୍ରଙ୍କ ପରି ଲୋକମାନେ ପହଞ୍ଚି ବାକିଆ ରଖି ସେମାନଙ୍କର ବିଜ୍ଞାପନକୁ ଛପାଇଦେବେ ବୋଲି କହି ସେମାନଙ୍କଠୁଁ ବିଜ୍ଞାପନ ଆଣନ୍ତି । ବିକଳିଆ ଖବରକାଗଜ ମାନଙ୍କରେ ଏହି ବିଜ୍ଞାପନ ବାକିରେ ଛପାଇନିଅନ୍ତି । ବିଜ୍ଞାପନଦାତାଠାରୁ ବିଜ୍ଞାପନ ପଇସା ଆଣି ନିଜର ଖରଚ କରନ୍ତି । ଏହିପରି କେତେଗୁଡିଏ ଠକ ବିଜ୍ଞାପନ ଏଜେନ୍‌ସି କରି ବର୍ତ୍ତମାନ କଟକ ଭୁବନେଶ୍ୱରରେ ନିଜର ବ୍ୟବସାୟ ଚଳାଉଛନ୍ତି । ନରେନ୍ଦ୍ର ମଧ କିଛିକାଳ ଏ ବ୍ୟବସାୟ କରି ସେଥିରୁ ଅବ୍ୟାହତି ନେଇଗଲେ । ଯେଉଁ ସମ୍ବାଦପତ୍ର ମାନଙ୍କୁ ବିଜ୍ଞାପନ ଦିଆଇଥିଲେ ସେମାନଙ୍କ ଖାତାରେ ବାକି ଗଡୁଛି ।

ତାହା ପୂର୍ବରୁ ଠକ ନରେନ୍ଦ୍ର ଗୋଟିଏ ସମ୍ବାଦପତ୍ରର ବିଜ୍ଞାପନ ପ୍ରତିନିଧି ହିସାବରେ କେତେମାସ ଦରମା ଓ କମିଶନରେ ମଧ କାମ କରୁଥିଲେ । ସେ ସମ୍ବାଦପତ୍ରରୁ ସାଇକେଲ ଖଣ୍ଡିଏ କିଣିବା ପାଇଁ ଆଡଭାନ୍‌ସ ମଧ ନେଇଥିଲେ । ବିଜ୍ଞାପନ ତ ଆସିଲା ନାହିଁ । ଠକ ନରେନ୍ଦ୍ର ସେଠୁ ଖସିଲେ । ସେ ସମ୍ବାଦପତ୍ର ଖାତାରେ ନରେନ୍ଦ୍ରଙ୍କ ନାମରେ ପଇସା ଗଡୁଛି । ସମ୍ବାଦପତ୍ରର କେହି ସହଯୋଗୀ ରାସ୍ତାରେ



Digitized by srujanika@gmail.com

ଘାଟରେ ଦେଖାହେଲେ ଠକ ନରେନ୍ଦ୍ର ଗାଲୁ ଭୁରୁଡି ମାରନ୍ତି ।

ଗାଲୁଭୁରୁଡି ମାରିବାର କାରଣ ଅଛି । ଏବେ ନରେନ୍ଦ୍ର ଗୋଟାଏ ବଡ ମାଛକୁ ଘାଲରେ ପକେଇଛନ୍ତି । ଏ ଭଦ୍ରଲୋକ ଯୁବକ ବିଦ୍ୱାନ ବୋଲି ବିଦେଶକୁ ଯାଇଥିଲେ ଉଚ୍ଚଶିକ୍ଷା ପାଇଁ । ବଡ ଘରର ପିଲା, ଆହୁରି ବଡ ଘରେ ବାହା ହୋଇଛନ୍ତି । ବିଦେଶରୁ ଫେରି ଏକ ବିରାଟ ଶିକ୍ଷାନୁଷ୍ଠାନ ଗଢ଼ିଛନ୍ତି । ଅନେକ ନିନ୍ଦୁକ ତାଙ୍କୁ ''ଅଚିନ୍ତ ଅଚେତନ'' ବୋଲି ଡାକୁଛନ୍ତି । ଠକ ନରେନ୍ଦ୍ର ତାଂକୁ ଏକ ସାଂସ୍କୃତିକ ସଙ୍ଗଠନର ପୃଷ୍ଠପୋଷକ ଭାବେ ଫସାଇ ନିଜର ଫାଯାଦା ଉଠାଇବାରେ ସଫଳ ହୋଇଛନ୍ତି । ବିଭିନ୍ନ ଋତୁରେ 'ଉତ୍ସବ' ପାଳନ କରାଯାଉଛି । 'ଅଚିନ୍ତ ଅଚେତନ'ଙ୍କର ମଞ୍ଚ ଉପରେ ଠିଆ ହୋଇ ଭାଷଣ ଦେଇ ନିଜର ଫଟୋ ସହିତ ସମ୍ବାଦ ଛାପିବାର ଦୁର୍ବଳତା ବେଶ ଅଧିକ । ତେଣୁ ଠକ ନରେନ୍ଦ୍ରଙ୍କୁ ଏହା ଖୁବ୍ ସୁହାଇଛି । ସେ ଅଚିନ୍ତ ଅଚେତନଙ୍କୁ ମାଧମ କରି ବହୁ ପଦସ୍ଥ ଅଫିସର ଏବଂ ମନ୍ତ୍ରୀ ଆଦି ପ୍ରଭାବଶାଳୀ ଲୋକଙ୍କ ପାଖରେ ପହଞ୍ଚିବାକୁ ସୁଯୋଗ ସୃଷ୍ଟି କରି ପାରିଛନ୍ତି ।

ପୂର୍ବରୁ ସମ୍ବାଦପତ୍ର ଖାତାରେ ଗଡୁଥିବା ଆଡଭାନ୍ସ ନେଇ ଯେଉଁ ସାଇକେଲଟି କିଣିଥିଲେ, ତାହା ପୁରୁଣା ହେଲାଣି । ବଡ ଯାଗାକୁ ଗଲେ ସ୍କୁଟର କିମ୍ବା ନିହାତି ହେଲେ 'ଲୁନା'ଟା, ଦରକାର । ନରେନ୍ଦ୍ର ଏବେ ସେହି ବ୍ୟବସ୍ଥାରେ ଅଛନ୍ତି । ଅନେକ ଯା'ଙ୍କୁ ଚିହ୍ନିନାହାନ୍ତି । ଅନେକ ଅବଶ୍ୟ ଚିହ୍ନିଲେଣି । କିନ୍ତୁ ଉପାୟ କଣ ?

(ତା୦୮.୦୯.୧୯୮୪ରିଖ)

□□□



Digitized by srujanika@gmail.com



## ପ୍ରଦ୍ୟୁମ୍ନ ବଳ

ଜନ୍ମ: ୮ ନଭେମ୍ବର ୧୯୩୨
ମୃତ୍ୟୁ: ୨୧ ଡିସେମ୍ବର ୧୯୯୯

ଓଡ଼ିଶାର ରାଜନୀତି, ସାମ୍ବାଦିକତା ଓ ସମାଜସେବା କ୍ଷେତ୍ରରେ ଏକ ଅତୁଳନୀୟ, ଅଦ୍ୱିତୀୟ ବ୍ୟକ୍ତିତ୍ୱ । ଏଇ ସମସ୍ତ କ୍ଷେତ୍ରରେ ତାଙ୍କର ସାକାରାତ୍ମକ ସ୍ପର୍ଶ ଆଗାମୀ ପିଢ଼ିକୁ ଯେ ନିଶ୍ଚିତ ରୂପେ ପ୍ରେରଣା ଯୋଗାଇବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବିଶେଷଭାବେ ରାଜ୍ୟ ରଜନୀତିର ଷାଠିଏ ଓ ସତୁରୀ ଦଶକରେ ଯୁବ ଆନ୍ଦୋଳନକୁ ତାଙ୍କର ଅବଦାନ, ସେଥିରେ ତାଙ୍କର ଭୂମିକା ଓ ଅଙ୍ଗୀକାରବଦ୍ଧତା ରାଜ୍ୟ ରାଜନୀତିକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ସମାଜସେବା କାର୍ଯ୍ୟରେ କୈଶୋରରୁ ହିଁ ଅନୁପ୍ରାଣିତ ହୋଇଥିଲେ ପ୍ରଦ୍ୟୁମ୍ନ । କିନ୍ତୁ ବ୍ୟାପକ ଭାବେ ବୃହତ୍ତର ସମାଜସେବା ପାଇଁ ରାଜନୀତିରେ ଯୋଗଦେବାକୁ ମନସ୍ଥ କରି ୧୯୬୩ରେ କଂଗ୍ରେସ ଦଳରେ ଯୋଗ ଦେଲେ । ୧୯୬୭ ମସିହାରେ ରାଜ୍ୟ ଯୁବ କଂଗ୍ରେସ ସଭାପତି ମନୋନୀତ ହୋଇ ରାଜ୍ୟ କଂଗ୍ରେସ ରାଜନୀତିରେ ଚହଳ ପକାଇଦେଲେ ଏବଂ ୧୯୮୦ ମସିହା ପର୍ଯ୍ୟନ୍ତ ସେ ସକ୍ରିୟ ରାଜନୀତିରେ ଥିଲେ । କିନ୍ତୁ ରାଜନୀତିର ମାରପେଞ୍ଚରେ ବୀତସ୍ପୃହ ହୋଇ ସେଥିରୁ ଦୂରେଇ ଯାଇ ସାମ୍ବାଦିକତା ଜୀବନ ଆରମ୍ଭ କଲେ ଓ ଦୈନିକ **ପ୍ରଗତିବାଦୀ**ରେ ବଳିଷ୍ଠ, ନିର୍ଭୀକ ଲେଖନୀ ଚାଳନା ଜରିଆରେ ଆରମ୍ଭ କଲେ ସମାଜର ସମସ୍ତ ଅନ୍ୟାୟ, ଅନୀତି ବିରୁଦ୍ଧରେ ଯୁଦ୍ଧ ଯାତ୍ରା ।

ପ୍ରବଞ୍ଚନା ଓ ଛଳନାରେ ସେ ବିଶ୍ୱାସ କରୁନଥିଲେ । ଆମ ସମାଜର ମନୁବାଦୀ ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସମସ୍ତ ବଞ୍ଚିତ, ନିଷ୍ପେଷିତମାନଙ୍କୁ ନ୍ୟାୟ ଦେବା ପାଇଁ ଚିର ସଂଗ୍ରାମରେ ସେ ବିଶ୍ୱାସ ରଖୁଥିଲେ ଏବଂ ଜୀବନର ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ମଧ୍ୟ ସେଥିରୁ ସେ କ୍ଷାନ୍ତ ହୋଇନଥିଲେ ।

ସେ ଏକ ପ୍ରବାଦପୁରୁଷ । ସେ ଏକ ବିଚାରଧାରା, ଯାହାର ମୃତ୍ୟୁ ନାହିଁ ।

Digitized by srujanika@gmail.com